# ଭଞ୍ଜୀୟ କାବ୍ୟକଳା

## ଓ

# ବୈଦେହୀଶ ବିଳାସ

ଲେଖକ

ଅଧ୍ୟାପକ ଡକ୍ଟର ପ୍ରଫୁଲ୍ଲ କୁମାର ଦାଶ,

ଏମ୍. ଏ. (ଉତ୍କଳ), ପିଏଚ୍. ଡ଼ି. (ଉତ୍କଳ), ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,

ଖ୍ରୀଷ୍ଟ କଲେଜ, କଟକ-୮

ନାଲନ୍ଦା

ବିନୋଦବିହାରୀ, କଟକ-୨

# ଭଞ୍ଜୀୟ କାବ୍ୟକଳା ଓ ବୈଦେହୀଶ ବିଳାସ

ପ୍ରକାଶକ :
**ନାଳନ୍ଦା**
ବିନୋଦବିହାରୀ, କଟକ-୨

ଆତ୍ମପ୍ରକାଶ :
ମହାବିଷୁବ ସଂକ୍ରାନ୍ତି-୧୯୮୬

ମୁଦ୍ରକ :
**ରାଧାରାଣୀ ପ୍ରିଣ୍ଟର୍ସ**
କଟକ-୨

ମୂଲ୍ୟ—ବାଇଶ ଟଙ୍କା
ବୋଡ଼୍ ବନ୍ଧାଇ—ପଚିଶ ଟଙ୍କା

**BHANJEAYA KAVYAKALA**
**O**
**VAIDEHISHA VILASHA**

Published by :
**NALANDA**
Binode Behari, Cuttack-2

1st Edition
Maha Vishuva Sankranti-1986

Printed at :
**Radharani Printers**
Cuttack-2

Price—Rs. 22-00
Binding—Rs. 25 00



## କୃତି ସମର୍ପଣ

ଏହି ଗ୍ରନ୍ଥ ପ୍ରଣୟନରେ ଯାହାଙ୍କର ପ୍ରେରଣା ଓ ଆଶୀର୍ବାଦ ମୋର ମୁଖ୍ୟ କରିବଲମ୍ବ ହୋଇଛି, ଭକ୍ତ ସାହିତ୍ୟର ସୁନାମଧନ୍ୟ ଆଲୋଚକ ଓ ଗବେଷକ, ମୋର ପୂଜ୍ୟ ଗୁରୁଦେବ 'ଉତ୍କଳ ବାଚସ୍ପତି' ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ପବିତ୍ର କରକମଳରେ—

ବିନୀତ
ଲେଖକ

# ନିଜକଥା

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ପାଠ କରିବା ଖୁବ୍ କମ୍ ବୟସରୁ ମୋ ମନରେ ଆଗ୍ରହ ସୃଷ୍ଟି ହୋଇଥିଲା । ଏଥିପାଇଁ ମୁଁ ମୋର ପିତୃଦେବଙ୍କ ଠାରୁ ସବୁ ପ୍ରଥମେ ପ୍ରେରଣା ଲାଭ କରିଥିଲି । ମୋର ସ୍ୱର୍ଗତଃ ପିତୃଦେବ ଭଞ୍ଜ ସାହିତ୍ୟର ଜଣେ ପ୍ରବୀଣ ଛାତ୍ରବିଦ୍ୟାର୍ଥୀ ଥିଲେ ! ଉପେନ୍ଦ୍ର ଭଞ୍ଜଙ୍କର ସମସ୍ତ ବିଖ୍ୟାତ କୃତି ତାହାଙ୍କର ମୁଖସ୍ଥ ଥିଲା । ସେ ଭଞ୍ଜସାହିତ୍ୟର ବିଭିନ୍ନ ଅଂଶକୁ ଅତି ଚମତ୍କାର ଭାବରେ ଅର୍ଥ ଅର୍ଥାନ୍ତର କରି ବୁଝାଉ ଥିଲେ । ତାହାଙ୍କଠାରୁ ଶୁଣି ଶୁଣି ଭଞ୍ଜଙ୍କ ରଚନାର ବହୁ ଅଂଶ ମୋର କ୍ରମଶଃ ମୁଖସ୍ଥ ହୋଇଯାଇଥିଲା ।

ପରବର୍ତ୍ତୀ କାଳରେ ଭଞ୍ଜସାହିତ୍ୟକୁ ଅଧିକତର ଗଭୀର ଭାବରେ ଅଧ୍ୟୟନ ଓ ଗବେଷଣା କରିବା ମୋର ପୂଜ୍ୟ ଗୁରୁଦେବ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ଠାରୁ ପ୍ରେରଣା ଲାଭକଲି । ଶ୍ରୀଯୁକ୍ତ ବ୍ରହ୍ମାମହୋଦୟ ଯେତେବେଳେ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଆନୁକୂଲ୍ୟରେ 'ବୈଦେହୀଶ ବିଳାସ'ର ଶୁଦ୍ଧ ସମ୍ପାଦନା ଓ ଟୀକା ପ୍ରଣୟନ କରୁଥିଲେ, ମୁଁ ସେହି ସମୟରେ ଉକ୍ତ କାର୍ଯ୍ୟରେ ତାହାଙ୍କର ସହଯୋଗିତା କରିବା ସୁଯୋଗ ଲାଭ କରିଥିଲି । ସେତେବେଳେ ତାହାଙ୍କ ସହିତ ଭଞ୍ଜ ସାହିତ୍ୟ ଆଲୋଚନାରେ ମୋର ବହୁ ସମୟ ବିନିଯୁକ୍ତ ହୋଇଛି । ଏପରିକି ଦିନେ ଦିନେ ପୁରୀ ଧାଉଳିକାଠିରେ ସେ ମତେ ଭଞ୍ଜ ସାହିତ୍ୟ ବୁଝାଉଥିଲା ବେଳେ ଗୋଟିଏ ଗୋଟିଏ ରଜନୀ ଅତିବାହିତ ହୋଇଛି । ୧୯୬୭ ମସିହାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ବ୍ରହ୍ମାମହୋଦୟଙ୍କ ସହିତ ମୋର ଉକ୍ତ ସାହିତ୍ୟ ଆଲୋଚନା ଅବ୍ୟାହତ ରହିଛି । ଅଧ୍ୟାପକ ବ୍ରହ୍ମାଙ୍କର ଖୁବ୍ କମ୍ ସଂଖ୍ୟକ ଗ୍ରନ୍ଥ ଏପରି ସୌଭାଗ୍ୟର ଅଧିକାରୀ ହୋଇଛନ୍ତି ବୋଲି ମୁଁ ମନେ କରୁଛି ।

ସୁତରାଂ, ଆଜି 'ବୈଦେହୀଶ ବିଳାସ' ସମ୍ପର୍କୀୟ ଏହି ଆଲୋଚନା ଗ୍ରନ୍ଥ ଲେଖିଲା ବେଳେ ଏହା ଗୁରୁଦେବ ଶ୍ରୀଯୁକ୍ତ ବ୍ରହ୍ମାଙ୍କର ଆଶୀର୍ବାଦ ଓ ପ୍ରେରଣାପ୍ରସୂତ ବୋଲି ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ତାହାଙ୍କ ପ୍ରତି ଆନ୍ତରିକ ଭକ୍ତି ଓ କୃତଜ୍ଞତା ଜ୍ଞାପନ କରୁଛି ।

'ବୈଦେହୀଶ ବିଳାସ' କବି ଉପେନ୍ଦ୍ର ଭଞ୍ଜଙ୍କର ସର୍ବଶ୍ରେଷ୍ଠ କୃତି ରୂପେ ଓଡ଼ିଶାର ସାହିତ୍ୟକମଣ୍ଡଳୀରେ ବିଶେଷ ପ୍ରତିଷ୍ଠା ଅର୍ଜନ କରିଛି । ଏକ ଦିଗରେ ଓଡ଼ିଆ ରୀତିକାବ୍ୟର ଯଥାର୍ଥ ପ୍ରତିନିଧି ଏବଂ ଅନ୍ୟ ଦିଗରେ ଓଡ଼ିଆ ଭାଷାର ଏକ ଚମତ୍କାର ଶବ୍ଦାନୁଶାସନ ଭାବରେ ଏହାର ପ୍ରଭାବ ଓ ପ୍ରତିଷ୍ଠା ଅତୁଳନୀୟ । ଭାରତ ବର୍ଷର ଅନ୍ୟ କୌଣସି ପ୍ରାନ୍ତୀୟ ଭାଷାରେ ଏପରି ପାଣ୍ଡିତ୍ୟପୂର୍ଣ୍ଣ କୃତି କୋଉଠି ଦୁର୍ଲଭ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହି ଆଲୋଚନାରେ ଭଞ୍ଜକବିଙ୍କର ଉକ୍ତ ବିଖ୍ୟାତ କୃତି 'ବୈଦେହୀଶ ବିଳାସ' ର କେତେଗୋଟି ବିଶିଷ୍ଟ ଦିଗ ଉପରେ ଆଲୋକପାତ କରାଯାଇଛି । ଓଡ଼ିଆ ରୀତିକାବ୍ୟର ବିଭିନ୍ନ ଲକ୍ଷଣ ଓ ବୈଶିଷ୍ଟ୍ୟ ତଥା ଭଞ୍ଜଙ୍କ କାବ୍ୟକୌଶଳ ଦୃଷ୍ଟିରୁ ଏହି ବିଖ୍ୟାତ କୃତିଟିର

ମୂଲ୍ୟାଙ୍କନ କରାଯାଇଛି । କେତେକଜଣ ଭକ୍ତସାହିତ୍ୟ ରସିକ ଓ ମୋର ହିତାକାଂକ୍ଷୀ ବନ୍ଧୁଙ୍କ ପରାମର୍ଶ କ୍ରମେ ଆଲୋଚନାର ଶେଷଭାଗରେ କାବ୍ୟଟିର କେତେଗୋଟି ଛାନ୍ଦର ଶୁଦ୍ଧପାଠ ଓ ତାହାର ସରଳ ଟୀକା ପ୍ରଦାନ କଲି । ଅଷ୍ଟମ, ନବମ, ଦଶମ, ଦ୍ୱାଦଶ, ସପ୍ତଦଶ ପ୍ରଭୃତି ଅନ୍ୟ କେତେକ ଛାନ୍ଦର ଶୁଦ୍ଧପାଠ ଓ ଟୀକା ଏଥିରେ ସମାବେଶ କରାଇବା ଅଭିଳାଷ ଥିଲେ ମଧ୍ୟ ଗ୍ରନ୍ଥର କଳେବର ବୃଦ୍ଧି ଦୃଷ୍ଟିରୁ ସେଥିରୁ କ୍ଷାନ୍ତ ହେଲି ।

ମୋର ଅନ୍ୟାନ୍ୟ ବନ୍ଧୁ ହିତାକାଂକ୍ଷୀ ଗୁରୁଜନ ଏହି ଗ୍ରନ୍ଥ ପ୍ରଣୟନ ନିମିତ୍ତ ମତେ ଆବଶ୍ୟକୀୟ ପରାମର୍ଶ, ପ୍ରେରଣା ଓ ଆଶୀର୍ବାଦ ପ୍ରଦାନ କରିଛନ୍ତି । ଏହି ପରିପ୍ରେକ୍ଷୀରେ ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଡକ୍ଟର ଦେବେନ୍ଦ୍ର ମହାନ୍ତି, ଅଧ୍ୟକ୍ଷ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ ଓ ଅଧ୍ୟାପକ ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ନାୟକଙ୍କୁ ମୁଁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

'ନାଳନ୍ଦା' ପ୍ରକାଶନ ସଂସ୍ଥା ଏହି ଗ୍ରନ୍ଥର ପ୍ରକାଶନ ଭାର ବହନ କରିଥିବାରୁ ଏହି ସଂସ୍ଥାର ସ୍ୱତ୍ୱାଧିକାରୀ ସୁଯୋଗ୍ୟ ଶ୍ରୀଯୁକ୍ତ ଶୁକଦେବ ସାହୁ ଓ ଶ୍ରୀଯୁକ୍ତ ହଳଧର ସାହୁଙ୍କୁ ମଧ୍ୟ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି ।

ପରିଶେଷରେ ଅନ୍ୟ ଏକ ବିଷୟ ଉଲ୍ଲେଖ କରିବା ଆବଶ୍ୟକ ମନେକରୁଛି । ଓଡ଼ିଶାର ମୁଦ୍ରଣଶିଳ୍ପ ସମ୍ପୂର୍ଣ୍ଣ ଭାବରେ ପ୍ରମାଦଶୂନ୍ୟ ନୁହେଁ । ଏହି କାରଣରୁ ବହୁ ସତର୍କତାର ସହିତ ପ୍ରୁଫ୍ ସଂଶୋଧନ ସତ୍ତ୍ୱେ କେତେକ ତ୍ରୁଟି ରହିଗଲା । ଏଥିପାଇଁ ଲେଖକ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଭକ୍ତସାହିତ୍ୟ-ଆଲୋଚକ ଓ ଗବେଷକଗଣ ଗ୍ରନ୍ଥଟିଦ୍ୱାରା ଉପକୃତ ହେବେ ବୋଲି ଆଶାପୋଷଣ କରୁଛି ।

କଟକ,<br>ବିଷୁବ ସଂକ୍ରାନ୍ତି, ୧୯୮୬

ଅଳମତି ବିସ୍ତରେଣ<br>ବିନୀତ<br>**ଲେଖକ**



# ସୂଚିପତ୍ର

**ବିଷୟ** **ପୃଷ୍ଠା**

# କବିସମ୍ରାଟ ଉପେନ୍ଦ୍ର ଭଞ୍ଜ—
# ଜୀବନୀ ଓ ସାଧନା

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ-କୋଣାର୍କର ସୁଦକ୍ଷ ଶିଳ୍ପୀ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଗତ ପ୍ରାୟ ତିନିଶହ ବର୍ଷ ଧରି ଏ ଦେଶର ଅଗଣିତ ସାହିତ୍ୟପ୍ରାଣ ବ୍ୟକ୍ତିଙ୍କ ମନୋମନ୍ଦିରରେ ପୂଜିତ ହୋଇ ଆସୁଛନ୍ତି । ଜୀବନରେ ନାନାବିଧ ଝଡ଼ଝଞ୍ଜା ଓ ଘାତପ୍ରତିଘାତର ସମ୍ମୁଖୀନ ହୋଇ ମଧ୍ୟ ଐକାନ୍ତିକ ସାରସ୍ୱତ ସାଧନାରେ ନିଜକୁ ନିୟୋଜିତ ପୂର୍ବକ ସେ ଉତ୍କଳର ବାଣୀଭଣ୍ଡାରକୁ ଯେଉଁପରି ଭାବରେ ସମୃଦ୍ଧ କରି ଯାଇଛନ୍ତି, ତାହା ଚିନ୍ତା କଲାବେଳେ ଚିତ୍ତ ବିସ୍ମୟାଭିଭୂତ ହୋଇଯାଏ । କାବ୍ୟସାଧନା ଦୃଷ୍ଟିରୁ ସେ ଆଜି ଓଡ଼ିଶାର ସାହିତ୍ୟକମଣ୍ଡଳୀରେ ଜଣେ ବ୍ୟକ୍ତିବିଶେଷ ରୂପେ ପରିଗଣିତ ନ ହୋଇ ଏକ ମହାନ୍ 'ସାରସ୍ୱତ ଅନୁଷ୍ଠାନ' ରୂପେ ବିବେଚିତ ହେଉଛନ୍ତି । କବିଙ୍କ କାବ୍ୟରାଜି ହେଉଛି ତାହାଙ୍କ ଅଲୌକିକ ପ୍ରତିଭାର ଦ୍ୟୋତକ ।

ଯେ କୌଣସି କବିଙ୍କ ରଚନାବଳୀର ତାତ୍ତ୍ୱିକ ମୂଲ୍ୟବୋଧ ନିମିତ୍ତ, ତାହାଙ୍କ ଜୀବନୀ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କରିବା ଏକାନ୍ତ ଆବଶ୍ୟକ ମନେହୁଏ । ଜଣେ କବି କେଉଁ ପରିବେଶ ଓ ପରିସ୍ଥିତି ମଧ୍ୟରେ କାବ୍ୟସାଧନା ଆରମ୍ଭ କରିଥିଲେ, ତାହାଙ୍କର ପ୍ରେରଣାର ଉତ୍ସ କିଏ ଥିଲେ, ତାଙ୍କର ଶିକ୍ଷାଦୀକ୍ଷା ଇତ୍ୟାଦି କିଣ ଥିଲା, ଏହି ବିଷୟ ସମ୍ୟକ୍ ଭାବରେ ଜ୍ଞାତ ନ ହେଲେ, କବିଙ୍କ କାବ୍ୟସୃଷ୍ଟିର ଯଥାର୍ଥ ମର୍ମ ହୃଦୟଙ୍ଗମ କରିବା ଦିଗରେ ବାଧା ସୃଷ୍ଟି ହୁଏ । ସୁତରାଂ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସର୍ବଶ୍ରେଷ୍ଠ କାବ୍ୟ "ବୈଦେହୀଶ ବିଳାସ" ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ତାହାଙ୍କ ଜୀବନୀ ସମ୍ପର୍କରେ କିଞ୍ଚିତ୍ ଆଲୋକପାତ କରିବା ଯଥାର୍ଥ ମନେହୁଏ ।

**ଜନ୍ମ ସ୍ଥାନ ଓ ଜନ୍ମକାଳ:**

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲାର ଘୁମୁସର ରାଜ୍ୟ ଅନ୍ତର୍ଗତ କୁଳାଡ଼ଗଡ଼ରେ ବିଖ୍ୟାତ ଭଞ୍ଜରାଜବଂଶରେ ଆବିର୍ଭୂତ ହୋଇଥିଲେ । କୁଳାଡ଼ଗଡ଼

ବର୍ତ୍ତମାନ ଭଞ୍ଜନଗରର ସଦରଠାରୁ ପ୍ରାୟ ଆଠ କିଲୋମିଟରର ଦୂରରେ ଅବସ୍ଥିତ ।
କବିଙ୍କ ଜନ୍ମ ଅବ୍ଦ ନିର୍ଣ୍ଣୟ କରିବାକୁ ଯାଇ ବିଭିନ୍ନ ଆଲୋଚକ ଭିନ୍ନଭିନ୍ନ ମତ ପ୍ରକାଶ କରିଥାନ୍ତି । ତାହାଙ୍କ ଜନ୍ମ ବର୍ଷକୁ ଆଲୋଚକମାନେ ଖ୍ରୀ: ୧୬୭° ଠାରୁ ଖ୍ରୀ: ୧୬୮୮ ମଧ୍ୟରେ ସୀମାବଦ୍ଧ କରିଥିବା ଦେଖାଯାଏ । ଏ କ୍ଷେତ୍ରରେ କବିଙ୍କ ଜନ୍ମକାଳ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବୋଲି କହିବା ଯଥାର୍ଥ ହେବ ।

## କବିଙ୍କ ନିଜ ଭାଷାରେ ତାହାଙ୍କ ଆତ୍ମପରିଚୟ:

କବିସମ୍ରାଟ ଭଞ୍ଜ ତାହାଙ୍କର କେତେକ କାବ୍ୟରେ ନିଜ ସମ୍ପର୍କୀୟ କେତେକ ବିବରଣୀ ପ୍ରଦାନ କରିଯାଇଛନ୍ତି । ତନ୍ମଧ୍ୟରୁ ତାଙ୍କର ଜୀବନୀ ସମ୍ପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉପଲବ୍ଧ ହୋଇଥାଏ । ଏ ପ୍ରସଙ୍ଗରେ ନିମ୍ନ କେତୋଟି ଅଂଶ ବିଶେଷ ଅନୁଧ୍ୟାନ ଯୋଗ୍ୟ ମନେହୁଏ ।

(କ) 'ଲାବଣ୍ୟବତୀ' କାବ୍ୟରେ କବି ଲେଖିଛନ୍ତି—

"ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ
ବରହ୍ମାକୋଷରୁ ସମ୍ଭବ ।
ମନୁଷ୍ୟ ଏହି ଅଦଭୁତ
ଭଞ୍ଜାନୁଭଞ୍ଜ ନାମ ସତ ।
ବଶିଷ୍ଠ ବଶିଷ୍ଠ ପାଳକା
ଶ୍ରୀରାମେ ଦତ୍ତ ରାଜଟୀକା ।
ସେ କୁଳେ ରାଜା ଧନଞ୍ଜୟ
ସମସ୍ତ ଗୁଣର ନିଳୟ ।
ଘୁମୁସର ଅଧିକ ପଟଣେ
ଲୋକେ ବିଖ୍ୟାତ କବିଗୁଣେ ।
ତଦ୍‌ବତ ତାହାଙ୍କ ତନୁଜ
ନରେଶ ନୀଳକଣ୍ଠ ଭଞ୍ଜ ।
ତାହାଙ୍କ ଜ୍ୟେଷ୍ଠସୁତ ମୁହିଁ
ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକମନ୍ତ୍ର ପରସାଦେ
ମୋହର କବିପଣ ଉଦେ ।" (୧୬ଶ ଛାନ୍ଦ/୩୯—୪୨ ପଦ)

(ଖ) କବିର ଅନ୍ୟତମ ବିଖ୍ୟାତ କାବ୍ୟ 'ବୈଦେହୀଶ ବିଳାସ'ରେ କବି ନିଜ ସମ୍ପର୍କରେ ଲେଖିଛନ୍ତି—

"ବିରହିବଂଶେ ଉଦ୍‌ଭବ ନୃପ ଧନଞ୍ଜୟ
ବିଶିଷ୍ଟେ ଘୁମୁସର ଅଧିପ ଗୁଣାଳୟ ଯେ ।
ବେନି ଅର୍ଥେ କବି ଗଣେଶ ବେଲି ଜାଣ
ବନ୍ଦନ ତଦ୍‌ବତ ତାଙ୍କ ନନ୍ଦନ ପ୍ରମାଣ ଯେ ।
ବସୁଧାପତି ସେ ନୀଳକଣ୍ଠ ନାମେ ଖ୍ୟାତ
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ ଯେ ।
ବୀରବର ପଦ ଉପଇନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇଁ ସୀତାରାମ ଯେ ।
ବିଚିତ୍ର କବିତ୍ୱମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।"

(୫୨ ଛାନ୍ଦ/୪୭—୫୧)

ଏହି ଦୁଇଟି ଉକ୍ତିରୁ କବିଙ୍କ ସମ୍ପର୍କରେ ମିଳୁଥିବା ତଥ୍ୟଗୁଡ଼ିକ ହେଉଛି—

(୧) ବଂଶ ପରିଚୟ ।
(୨) ପିତାମହ ଧନଞ୍ଜୟ ଭଞ୍ଜ ଓ ପିତା ନୀଳକଣ୍ଠ ଭଞ୍ଜ
(୩) କବିଙ୍କ ରାମତାରକ ମନ୍ତ୍ରସିଦ୍ଧି ଓ କବିତ୍ୱ ଶକ୍ତି ଲାଭ ।

ଏହି ତିନିଗୋଟି ବିଷୟ ନିମ୍ନରେ ସମାନ୍ୟ ବିସ୍ତୃତ ଭାବରେ ଆଲୋଚିତ ହେଲା ।

## (୧) ବଂଶ ପରିଚୟ :

ଭଞ୍ଜବଂଶର ଉତ୍ପତ୍ତି ସମ୍ପର୍କରେ କେତେକ କିମ୍ବଦନ୍ତୀ ରହିଛି । ସ୍ୱର୍ଗତଃ କବି ସୂର୍ଯ୍ୟମଣି ଚମ୍ପାଉ ପଟ୍ଟନାୟକଙ୍କ ରଚିତ "ଘୁମୁସର ଭଞ୍ଜ ବଂଶାବଳୀ" ଓ ସ୍ୱର୍ଗତଃ ଗଙ୍ଗାପାଣି ମହାପାତ୍ରଙ୍କ ରଚିତ 'ଭଞ୍ଜବଂଶ ଓ ଘୁମୁସର ବିଦ୍ରୋହ' ଗ୍ରନ୍ଥରେ ଏହି ବିଷୟ ଦେଖିବାକୁ ମିଳେ । ସ୍ୱର୍ଗତଃ ସୂର୍ଯ୍ୟମଣି ଚମ୍ପାଉ ପଟ୍ଟନାୟକଙ୍କ ରଚିତ 'ଘୁମୁସର ଭଞ୍ଜ ବଂଶାବଳୀ' ଗ୍ରନ୍ଥର ପ୍ରାରମ୍ଭରେ ଉଲ୍ଲିଖିତ ହୋଇଛି—

ଶୁଣ ସଙ୍ଖ୍ୟାବାନ ଜନ    ମୋ କହିବାର ବଚନ
ଭଞ୍ଜରାଜାମାନଙ୍କ ପୂର୍ବ ଚରିତ
ତ୍ରେତାଯୁଗ ପ୍ରାନ୍ତେ ଯବେ    ବଶିଷ୍ଠ ମହର୍ଷି ମନେ
ପୁଷ୍କର ରାଜତୀର୍ଥକୁ ହେଲେ ଆଗତ
ହୋଇଅଛି ବରଷା କାଳ
କୋକ ଡାହୁକ ମରାଳ ଡାକ ତହଳ ।

ସେ ତଟରେ ମୃଗମୃଗୀ    ହୋଇ ଅଙ୍ଗେ ଅଙ୍ଗ ସଙ୍ଗୀ
ଅନଙ୍ଗ ରଙ୍ଗରେ ଦୁହେଁ ପ୍ରବର୍ତ୍ତି ଥିଲେ ।
ଋଷିଙ୍କ ଶ୍ରେଷ୍ଠ ଗରିଷ୍ଠ    ଅତ୍ୟନ୍ତ ତପୋବନଷ୍ଠ
ବେନ ନେତ୍ର ତାଙ୍କର ତହିଁରେ ପଡ଼ିଲେ
କନ୍ଦର୍ପ ତ ଅଟେ ନବାର
ପ୍ରୟୋଗ କଲା ଉନ୍ମାଦ ମୋହନ ଶର ।।

ସେ ଅଙ୍ଗରେ ଯାନ୍ତେ ବ୍ୟାପି    ହୋଇଲେ ଅତି ସନ୍ତାପି
ଧଇର୍ଯ୍ୟ ନ ରହି ବୀର୍ଯ୍ୟ ସ୍ଖଳନ ହେଲା, ।
ସ୍ନାନସାରି ସେ କୌପୀନ    କରନ୍ତେ ତହିଁ କ୍ଷାଳନ
ବନରେ ସେ ବେନ ବିନ୍ଦୁ ହୋଇ ଖସିଲା ।
ମୟୂର ମୟୂରୀ ଯେ ମତ୍ତ
ହୋଇ ସେ ଜଳ ସ୍ଥାନେ ହେଲେ ଉପଗତ ।

ତୃଷାରେ ହୋଇ ଆରତ    ମୟୂରୀ ଜଳ ସହିତ
ବେନ ରେତବିନ୍ଦୁ ତତ୍କାଳେ ସେ ପିଇଲା
ସେହିକ୍ଷଣି ସେ ମୟୂରୀ    ଗର୍ଭ ରେତବିନ୍ଦୁଧରି
ସଦ୍ୟ ସେ ବେନ ଡିମ୍ବକୁ ଜନମ କଲା
ଯେହି ତୀର୍ଥତଟେ ପକାଇ
ଅନ୍ତର ହୋଇଲା ଲବ ମାତ୍ର ନ ରହି ।

ସେ ବଶିଷ୍ଠ ଋଷିବର,		ଦେଖିଥିଲେ ନୟନର
ବେନ ଡ଼ମ୍ବକୁ ପକାଇ ଯିବାର ସେହି

ବିଚାରିଲେ ସେ ମାନସ		ଆମ୍ଭ ଖାଦ୍ୟ କରି ଗ୍ରାସ
ବେନ ଡ଼ମ୍ବ ଜାତ କରି ଗଲା ସେ କାହିଁ
ଆମ୍ଭେ ପାଳନାକୁ ନକଲେଁ
ଆମ୍ଭର ଏଥି ପାତକ ହୋଇବ ଭଲେ ।

ଏତେ ଭାଳି ତପଶ୍ରୃଷୀ		ବେନ ଡ଼ମ୍ବ କରେ ଧରି
ଆପଣା ଆଶ୍ରମେ ପରବେଶ ହୋଇଲେ

ଦିନକରର କରରେ		ରଖିଲେ ନେଇ ପହରେ
ରଜନୀରେ କସିବୃକ୍ଷ ଝୋଟେ ରଖିଲେ
ଏହି ରୂପେ ପ୍ରତି ଦିବସ
ରଜନୀରେ ବେନ ସ୍ଥାନେ ମୁନିଙ୍କ କ୍ଳେଶ

ରଖନ୍ତେ ସେ କେତେ ଦିନ		ଉତ୍ତରୁ ଏକ ନନ୍ଦନ
ଏକ ଡମ୍ବ ଫାଟିକରି ଜନମ ହେଲା

ଜାତକର୍ମମାନ ଋଷି		କଲେ ହୋଇ ଅତି ତୋଷି
ସେ ଉତ୍ତରୁ କେତେ ନିଶି ଦିବସ ଗଲା
ବାଳକୁ ବସନ ଶେଯରେ
ଶୁଆଇ କ୍ଷୀର ପାନକୁ ଦେଲେ ନିତ୍ୟରେ ।

ତହିଁରୁ ସେ ଏକ ପୋତ		ରହିଲା ସେହି ସଞ୍ଜାତ
କିଛୁ ଜନମ ନୋହିଲା ଋଷି ଭାବିଲେ

କରେ ଧରି ଏକ ଦଣ୍ଡ		ଭଞ୍ଜନ କଲେ ସେ ଅଣ୍ଡ
ତହିଁରୁ ଏକ କୁମାର ଜନ୍ମ ଲଭିଲେ
ତା ଦେଖି ମୁନିବର ମୋଦେ
ବେନ କୁମର ପାଳନା କଲେ ପ୍ରମୋଦେ ॥

ସୂର୍ଯ୍ୟ କରଣରେ ପାକ                    ହେବାରୁ ସେ ଡିମ୍ବ ଏକ
ସୁତନୁ ମଦନରଣା ନାମକୁ ଦେଲେ
ଦଣ୍ଡରେ ଏକ ଭଞ୍ଜନ                    କରନ୍ତେ ହୋନ୍ତେ ନନ୍ଦନ
ମୋହର ମୋଦକ ଭଞ୍ଜ ନାମ ବୋଇଲେ
ଏ ରୂପେ ଗଲା କେତେ କାଳ
ଛଡୋଲ ଦେଶରେ ସେ ହୋଇଲେ ଭୂପାଳ ॥ (୧)

ବଶିଷ୍ଠ ଋଷି ମୟୂର ଅଣ୍ଡାକୁ ଦଣ୍ଡଦ୍ୱାରା ଭଞ୍ଜନ କରିଥିବାରୁ ଡିମ୍ବ ମଧ୍ୟରୁ ଜାତ ବାଳକଟି ମୋଦକ (ବଶିଷ୍ଠଙ୍କୁ ମୋଦ ବା ଆନନ୍ଦ ପ୍ରଦାନକାରୀ) ଭଞ୍ଜ ନାମରେ ଖ୍ୟାତ ହେଲା ।

ସେହି ମୋଦକ ଭଞ୍ଜ ହେଉଛନ୍ତି ଭଞ୍ଜବଂଶର ପ୍ରଥମ ପୁରୁଷ । ମନେହୁଏ, ଉପେନ୍ଦ୍ର ଭଞ୍ଜ ନିଜ ପୂର୍ବପୁରୁଷଙ୍କ ସମ୍ପର୍କୀୟ ଉକ୍ତ କିମ୍ବଦନ୍ତୀ କାହା ମୁଖରୁ ଶୁଣିବାକୁ ପାଇଥିବେ । ଏହି କାରଣରୁ ସ୍ୱବଂଶ ବିଷୟ ଉଲ୍ଲେଖ କରିବାକୁ ଯାଇ "ବିରଞ୍ଚି କୋଷରୁ ସମ୍ଭବ" ବୋଲି କହିଛନ୍ତି । ଏ ପ୍ରସଙ୍ଗରେ 'ସଙ୍ଗୀତ ମୁକ୍ତାବଳୀ ନାମକ ଗ୍ରନ୍ଥର ଏକ ଶ୍ଳୋକ ଉଦ୍ଧାର କରିବା ଯଥାର୍ଥ ମନେହୁଏ । ସେଥିରେ 'ଭଞ୍ଜ-ବଂଶ'ର ନାମକରଣ ସମ୍ପର୍କରେ ଉଲ୍ଲିଖିତ ହୋଇଛି—

"ଭଞ୍ଜନାତ୍ ଶତ୍ରୁସୈନ୍ୟାନାଂ
କିମ୍ବା ଡିମ୍ବସ୍ୟ ଭଞ୍ଜନାତ୍
ତେ ଭଞ୍ଜା ଇତି ବିଖ୍ୟାତା
କ୍ଷତ୍ରିୟାଃ ସୂର୍ଯ୍ୟବଂଶଜାଃ"

ଏହି ଶ୍ଳୋକରେ 'ଭଞ୍ଜବଂଶ'ର ନାମକରଣର ଦୁଇଟି କାରଣ ସମ୍ଭାବନା କରାଯାଇଛି । ପ୍ରଥମତଃ, ଶତ୍ରୁସୈନ୍ୟମାନଙ୍କ ଗର୍ବ ଭଞ୍ଜନ କରିଥିବା ହେତୁ ସୂର୍ଯ୍ୟବଂଶୀ କ୍ଷତ୍ରିୟ (ରାଜା) ମାନେ 'ଭଞ୍ଜ' ନାମରେ ଖ୍ୟାତ ହୋଇଥିଲେ; କିମ୍ବା—ଡିମ୍ବ ଭଞ୍ଜନରୁ ଜାତ ହୋଇଥିବା ଯୋଗୁ ସେମାନେ ଏହି ନାମରେ ନାମିତ ହୋଇଥିଲେ ।

---

(୧) ଭଞ୍ଜ ବଂଶାବଳୀ— ପ୍ରଥମ ଛାନ୍ଦ, ୧—୯ ପଦ

ଏ ସମ୍ପର୍କରେ ଅଧ୍ୟାପକ ଶ୍ରୀଯୁକ୍ତ ଗୌରୀ କୁମାର ବ୍ରହ୍ମା ନିଜର ସୁଚିନ୍ତିତ ମତ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି—"ହୁଏତ ବହୁ ଶତବର୍ଷ ପୂର୍ବରୁ କୌଣସି ଏକ ଭଞ୍ଜ ବଂଶୀୟ ରାଜାଙ୍କୁ ସନ୍ତୁଷ୍ଟ କରିବାପାଇଁ ରାଜାନୁଗ୍ରହକାମୀ ପଣ୍ଡିତଙ୍କ-ଦ୍ୱାରା ସ୍ତାବକତା ପରିପୂର୍ଣ୍ଣ ଏହିଭଳି ଗଳ୍ପ ଉଦ୍ଭାବିତ ହୋଇଥିଲା । ପରେ, ତାହାକୁ ଏକ ସତ୍ୟ ଘଟଣା ରୂପେ ଚିହ୍ନିତ କରାଯାଇ ତାକୁ ଅଧିକରୁ ଅଧିକ ଗମ୍ଭୀର ସ୍ୱରରେ ପ୍ରଚାର କରାଯାଇଥିଲା । ଭାରତରେ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ଅସାଧାରଣ ଗୌରବ ଲାଭ କରିଥିଲା । ହୁଏତ ମଦନଚରଣା ନାମରେ ଜଣେ ଯୋଦ୍ଧା ନିଜ ବାହୁବଳରେ ଏକ ରାଜ୍ୟ ସ୍ଥାପନ କରିବାକୁ ସମର୍ଥ ହୋଇଥିଲେ । ପରବର୍ତ୍ତୀ କାଳରେ ପ୍ରଖ୍ୟାତ ସୂର୍ଯ୍ୟବଂଶ ସଙ୍ଗେ ତାଙ୍କୁ ସଂପୃକ୍ତ କରି ତାଙ୍କର ଗୌରବ ବଢ଼ାଇବାକୁ ସ୍ତାବକ ପଣ୍ଡିତମାନେ ଚେଷ୍ଟା କରିଥିଲେ, କିନ୍ତୁ ତହିଁର କିଛି ଯୁକ୍ତିଯୁକ୍ତ ପ୍ରମାଣ ସେମାନେ ପାଇପାରିନଥିଲେ । ବୋଧହୁଏ ସେଥିପାଇଁ ସେମାନେ କହିଥିଲେ—'ହେ ରାଜା ! ତୁମେ ଯେଉଁ ମୟୂର ଡିମ୍ବରୁ ଜନ୍ମ ଲାଭ କଲ, ତାହା ସୂର୍ଯ୍ୟ କିରଣରେ ଉତ୍ତପ୍ତ ହୋଇ ଫାଟି ଯାଇଥିଲା । ତେଣୁ ତୁମେ ସୂର୍ଯ୍ୟବଂଶୀୟ ରାଜା ରୂପେ ହିଁ ସମ୍ମାନିତ ହେବା ଉଚିତ ।" (୨)

## (୨) ପିତାମହ ଧନଞ୍ଜୟ ଭଞ୍ଜ ଓ ପିତା ନୀଳକଣ୍ଠ ଭଞ୍ଜ :

ଭଞ୍ଜବଂଶର ଇତିହାସରୁ ଜଣାଯାଏ ଯେ, ଘୁମୁସରରେ ଏହି ବଂଶର ସର୍ବ-ପ୍ରଥମ ପ୍ରତିଷ୍ଠାତା ହେଉଛନ୍ତି ରଘୁନାଥ ଭଞ୍ଜ । ସ୍ୱର୍ଗତଃ ତାରିଣୀ ଚରଣ ରଥଙ୍କ ବିବରଣୀ ଅନୁସାରେ ସେ ଖ୍ରୀ: ୮୩୨ରୁ ଖ୍ରୀ: ୮୫୨ ପର୍ଯ୍ୟନ୍ତ ସେଠାରେ ରାଜତ୍ୱ କରିଥିଲେ (୩) ଏବଂ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜ ଭଞ୍ଜବଂଶର ୫୦-ତମ ରାଜା । ତାହାଙ୍କ ରାଜତ୍ୱକାଳ ଖ୍ରୀ ୧୬୩୬ ରୁ ଖ୍ରୀ: ୧୭୦୧ ପର୍ଯ୍ୟନ୍ତ ଥିଲା । ସେ ଥିଲେ ଜଣେ ମହାନ୍ ସାହିତ୍ୟିକ ସାରସ୍ୱତପ୍ରତିଭା-ବିଭୂଷିତ ନରପତି ସେ ନିଜେ 'ରଘୁନାଥ ବିଳାସ', 'ଇଚ୍ଛାବତୀ', 'ଅନଙ୍ଗରେଖା' ଓ 'ମଦନମଞ୍ଜରୀ' ପ୍ରଭୃତି ଉଚ୍ଚକୋଟୀର କାବ୍ୟ ରଚନା ପୂର୍ବକ ଖ୍ୟାତି ଅର୍ଜ୍ଜନ କରିଛନ୍ତି ।

ପୌତ୍ର ଉପେନ୍ଦ୍ର ଭଞ୍ଜ ପିତାମହ ଧନଞ୍ଜୟ ଭଞ୍ଜଙ୍କଦ୍ୱାରା ବହୁ କ୍ଷେତ୍ରରେ ପ୍ରଭାବିତ ଓ ଉତ୍ସାହିତ ହୋଇଥିବା ଜଣାଯାଏ ।

---

(୨) ଭଞ୍ଜ ଭୂମିକା—ପୃ:୬

(୩) ଘୁମୁସର ଇତିହାସ—ପୃ:୨

## (୩) ତାରକ ମନ୍ତ୍ର ସିଦ୍ଧି :

ଉପେନ୍ଦ୍ର ଭଞ୍ଜ ରାମତାରକ ମନ୍ତ୍ରରେ ସିଦ୍ଧିଲାଭ କରିବା ଫଳରେ ଅସାଧାରଣ କବି-ପ୍ରତିଭାର ଅଧିକାରୀ ହୋଇପାରିଥିଲେ ବୋଲି ନିଜେ ସ୍ୱୀକାର କରିଛନ୍ତି । ସେ ତାଙ୍କର ବିଭିନ୍ନ କାବ୍ୟରେ ଏହି ବିଷୟ ଉଲ୍ଲେଖ କରିଛନ୍ତି । (୫)

ଧାର୍ମିକ ବିଶ୍ୱାସ-ପରିପୁଷ୍ଟ ଭାରତୀୟ ସମାଜରେ ବହୁ ବିଶିଷ୍ଟ ମହାକବିଙ୍କ ସିଦ୍ଧିଲାଭ ଓ କବିତ୍ୱ ଉଦୟ ସମ୍ପର୍କରେ ଅନେକ କିମ୍ବଦନ୍ତୀ ଶୁଣାଯାଇଥାଏ । ଏ କ୍ଷେତ୍ରରେ ସଂସ୍କୃତ ସାହିତ୍ୟର କାଳିଦାସ ଏବଂ ଓଡ଼ିଶାର କବି ସାରଳା ଦାସଙ୍କ ସମ୍ପର୍କୀୟ ବିଭିନ୍ନ କିମ୍ବଦନ୍ତୀ ହେଉଛି ଯଥାର୍ଥ ଦୃଷ୍ଟାନ୍ତ । କେବଳ ସେତିକି ନୁହେଁ, ମହାକବି ସାରଳା ଦାସ ଦେବୀ ସାରଳାଙ୍କ ଆଶୀର୍ବାଦ ଫଳରେ ବିଶାଳକାୟ ମହାଭାରତ ଲେଖିବାକୁ ସମର୍ଥ

---

(୫) (କ) ଶାରବର ପଦ ଉପଇନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇ ସୀତା ରାମ ॥
ବିଚିତ୍ର କବିତ୍ୱମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାପୁଣ ଏ ମୋ ବଡ଼ ସିଦ୍ଧି ॥
(ବୈଦେହୀଶ ବିଳାସ, ଶେଷଛାନ୍ଦ—୫୦, ୫୧ ପଦ)

(ଖ) ତାରକମନ୍ତ୍ର ପରସାଦେ
ମୋହର କବିପଣ ଉଦେ ॥
(ଲାବଣ୍ୟବତୀ—୧୭/୪୨)

(ଗ) ତାରକ ମନ୍ତ୍ର ନାମ ଯାହାର
ଜାଣ ସେହି ଉପଇନ୍ଦ୍ର ଭଞ୍ଜର ॥
(ଛାନ୍ଦ ଭୂଷଣ-୧୭/୨୦)

(ଘ) ଯେହୁ ତାରକ ପ୍ରବର୍ତ୍ତିକ ଜଗତେ
ତାରକ ସ୍ୱଭାବେ ସେହି ତ
× × × ×
ହୋଇଲା କବି ଉପଇନ୍ଦ୍ର ଭଞ୍ଜର ॥
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—୭/ଶେଷପଦ)

ହୋଇଛନ୍ତି ବୋଲି ନିଜେ ଏକାଧିକ ବାର ଉଲ୍ଲେଖ କରିଛନ୍ତି । ସେହିପରି ସଂସ୍କୃତ ସାହିତ୍ୟର କବି ଶ୍ରୀହର୍ଷ "ଚିନ୍ତାମଣିମନ୍ତ୍ର" ସିଦ୍ଧି ଫଳରେ ଅସାଧାରଣ କବିତ୍ୱ ଓ ପାଣ୍ଡିତ୍ୟର ଅଧିକାରୀ ହୋଇ 'ନୈଷଧ' ତୁଲ୍ୟ କାବ୍ୟ ରଚନା କରିବାକୁ ସମର୍ଥ ହୋଇଥିଲେ ବୋଲି ନିଜେ ଉଲ୍ଲେଖ କରିଛନ୍ତି । ଓଡ଼ିଶାର କେବଳ ଆଦିକବି ସାରଳା ଦାସ ନୁହନ୍ତି, ତାହାଙ୍କ ପରବର୍ତ୍ତୀ ବଳରାମ ଦାସ, ଅଚ୍ୟୁତାନନ୍ଦ, ଅଭିମନ୍ୟୁ, ଭୀମଭୋଇ, କବିସୂର୍ଯ୍ୟ ବଳଦେବ, ଯଦୁମଣି ପ୍ରମୁଖ ବହୁ କବି ଦୈବୀ ଆଶୀର୍ବାଦ ଲାଭ ପୂର୍ବକ କିପରି ଅସାଧାରଣ ସିଦ୍ଧିର ଅଧିକାରୀ ହୋଇପାରିଥିଲେ, ତାହା ସେମାନଙ୍କର ଗ୍ରନ୍ଥରାଜି, ତଥା ଓଡ଼ିଶାରେ ପ୍ରଚଳିତ ବିଭିନ୍ନ କିମ୍ବଦନ୍ତୀରୁ ଜଣାଯାଏ ।

ଭାରତବର୍ଷରେ ଏକଦା ମନ୍ତ୍ରସିଦ୍ଧି ଓ ଆଧ୍ୟାତ୍ମିକ ସାଧନା ବଳରେ କିପରି ବହୁ ଅସମ୍ଭବ କାର୍ଯ୍ୟ କରାଯାଇ ପାରୁଥିଲା, ତାହାର ଭୂରିଭୂରି ଦୃଷ୍ଟାନ୍ତ ରହିଛି । ଅଧୁନାତନ କାଳରେ ବୈଜ୍ଞାନିକ ଗବେଷଣାଦ୍ୱାରା ବିଭିନ୍ନ ମନ୍ତ୍ରର ପ୍ରଭାବ ପରୀକ୍ଷା କରାଯାଉଛି । ଏହି ଦୃଷ୍ଟିରୁ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ 'ରାମତାରକ ମନ୍ତ୍ର'ର ସିଦ୍ଧିଦ୍ୱାରା ଯେ, ଅସାଧାରଣ ପାଣ୍ଡିତ୍ୟ ଓ କବିତ୍ୱର ଅଧିକାରୀ ହୋଇପାରିଥିଲେ, ଏଥିରେ ଅବିଶ୍ୱାସ କରିବାର କୌଣସି ଅବକାଶ ନାହିଁ । ତେବେ 'ତାରକମନ୍ତ୍ର' ସିଦ୍ଧି ପୂର୍ବରୁ କବିଙ୍କର ଯେ, ପାଣ୍ଡିତ୍ୟ ନଥିଲା, ତାହା ମଧ୍ୟ କୁହାଯାଇ ନପାରେ । କବି ନିଜର ଏକନିଷ୍ଠ ଅଧ୍ୟବସାୟ ବଳରେ ଅସାଧାରଣ ଶାସ୍ତ୍ରଜ୍ଞାନର ଅଧିକାରୀ ହୋଇପାରି ଥିଲେ । ପରବର୍ତ୍ତୀକାଳରେ 'ତାରକମନ୍ତ୍ରସିଦ୍ଧି' ତାହାଙ୍କର ଉକ୍ତ ଶାସ୍ତ୍ରଜ୍ଞାନ ଓ କବିତ୍ୱଶକ୍ତିକୁ ବିକାଶ କରିବା ଦିଗରେ 'ଯଜ୍ଞାଗ୍ନିକୁ ଘୃତ' ତୁଲ୍ୟ ସହାୟକ ହୋଇଥିଲା ।

## କବିଙ୍କ ବାଲ୍ୟଶିକ୍ଷା :

ପ୍ରାଚୀନ ଭାରତରେ ଶାସ୍ତ୍ରଦର୍ଶୀ ପଣ୍ଡିତମାନେ ରାଜପୁତ୍ର ଓ ରାଜକନ୍ୟାମାନଙ୍କର ଗୃହଶିକ୍ଷକ ରୂପେ ନିଯୁକ୍ତ ପାଇ ସେମାନଙ୍କୁ ଶିକ୍ଷାଦାନ କରୁଥିଲେ । ଏହି ଦୃଷ୍ଟିରୁ ବିଚାର କରିବାକୁ ଗଲେ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତତ୍କାଳୀନ ରାଜପରିବାରର ପ୍ରଥା ଅନୁଯାୟୀ କୌଣସି ପଣ୍ଡିତଙ୍କଠାରୁ ବିଦ୍ୟାଶିକ୍ଷା ଆରମ୍ଭ କରିଥିବା ସ୍ୱାଭାବିକ । ପୁନଶ୍ଚ କବି ଓ ପଣ୍ଡିତମାନଙ୍କର ପୃଷ୍ଠପୋଷକ ପିତାମହ ଧନଞ୍ଜୟ ଭଞ୍ଜଙ୍କର ଏକ 'ପଣ୍ଡିତ ସଭା' ରହିଥିବା ବିଷୟ ପୂର୍ବରୁ

ଉଲ୍ଲେଖ କରାଯାଇଛି । । ବହୁ ଶାସ୍ତ୍ରଦର୍ଶୀ ପଣ୍ଡିତ ଉକ୍ତ ପଣ୍ଡିତସଭାର କଳେବର ମଣ୍ଡନ କରିଥିଲେ । ସେମାନଙ୍କ ମଧ୍ୟରେ କବି, ଆଳଙ୍କାରିକ ବୈୟାକରଣ, ନୈୟାୟିକ, କାବ୍ୟଶାସ୍ତ୍ରଜ୍ଞ, ଜ୍ୟୋତିଷୀ, ଆୟୁର୍ବେଦଶାସ୍ତ୍ରଜ୍ଞ, ତନ୍ତ୍ରବିଶାରଦ, କର୍ମକାଣ୍ଡଶାସ୍ତ୍ରପଣ୍ଡିତ ଓ ସାଙ୍ଗୀତିକ ପ୍ରଭୃତି ରହିଥିଲେ । ପୁନଶ୍ଚ ତତ୍କାଳୀନ ରୀତି ଅନୁଯାୟୀ ଭାରତର ବିଭିନ୍ନ ଅଞ୍ଚଳରୁ କବି, ପଣ୍ଡିତ ଓ ଶାସ୍ତ୍ରଜ୍ଞଗଣ ଆସି ଘୁମୁସରର ରାଜଦରବାରରେ ପଦାର୍ପଣ କରୁଥିଲେ ଏବଂ ସେଠାକାର ବିଭିନ୍ନ ପଣ୍ଡିତଙ୍କସହିତ ସେମାନଙ୍କର ଶାସ୍ତ୍ରଚର୍ଚ୍ଚା ହେଉଥିଲା । ରାଜା ଧନଞ୍ଜୟଙ୍କର ଏକାନ୍ତ ଆଦରଣୀୟ ଓ ପ୍ରତିଭାଶାଳୀ ପୌତ୍ର ଉପେନ୍ଦ୍ର ନିଶ୍ଚିତ ଭାବରେ ଉକ୍ତ ପଣ୍ଡିତସଭାରେ ଉପସ୍ଥିତ ରହି ବିଭିନ୍ନ ପଣ୍ଡିତଙ୍କର ଯୁକ୍ତି ଶ୍ରବଣ କରୁଥିଲେ । ଏହାସଙ୍ଗେ ସଙ୍ଗେ ବିଭିନ୍ନ ପଣ୍ଡିତଙ୍କ ସହାୟତାରେ ସେ ନାନାବିଧ ଶାସ୍ତ୍ର ଅଧ୍ୟୟନ ପୂର୍ବକ ବିବିଧ ଶାସ୍ତ୍ରପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ ।

କବିଙ୍କ ଶିକ୍ଷାଦୀକ୍ଷା ଓ ଅଧ୍ୟୟନର ପରିସର ସମ୍ପର୍କରେ ଆଲୋଚନା କରିବାକୁ ଗଲାବେଳେ ଅଧ୍ୟାପକ ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମାଙ୍କ ମତ ଉଦ୍ଧାର କଲେ ଯଥେଷ୍ଟ ହେବ । ଘୁମୁସରର ପଣ୍ଡିତ ସଭା କପରି ଉପେନ୍ଦ୍ର ଭଞ୍ଜଙ୍କ ଜ୍ଞାନର ବିକାଶ ଦିଗରେ ସାହାଯ୍ୟ କରିଥିଲା, ସେ ସଂପର୍କରେ ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମାମହୋଦୟ ଲେଖିଛନ୍ତି—"ପ୍ରାଚ୍ୟ ଜ୍ଞାନକୋଷର ବେଦ-ବେଦାନ୍ତ, ଷଡ୍-ଦର୍ଶନ, ଅଷ୍ଟାଦଶ ପୁରାଣ, ବିଭିନ୍ନ ମହାକାବ୍ୟ, ବ୍ୟାକରଣ କାମସୂତ୍ର, ଜ୍ୟୋତିଷ, ଆୟୁର୍ବେଦ, ସଂଗୀତଶାସ୍ତ୍ର, ଛନ୍ଦଶାସ୍ତ୍ର, ଶକୁନଶାସ୍ତ୍ର, ଅଳଙ୍କାରଶାସ୍ତ୍ର, ପ୍ରଭୃତି କ୍ଷେତ୍ରରେ ବିପୁଳ ପାଣ୍ଡିତ୍ୟ ଲାଭ ପାଇଁ ଭଞ୍ଜଙ୍କର ଆଖି ଖୋଲି ଯାଇଥିଲା । ଘୁମୁସରର 'ପଣ୍ଡିତ ପରିଷଦ୍' ତଥା ତାହାର ପରିଚାଳକ ଧନଞ୍ଜୟ ଭଞ୍ଜ ହିଁ ନୈସର୍ଗିକ ପ୍ରତିଭାଶାଳୀ ଉପେନ୍ଦ୍ରଙ୍କର ଜ୍ଞାନବିସ୍ତାରର ସର୍ବଶ୍ରେଷ୍ଠ ସହାୟକ ଥିଲେ ।" (୭)

## ରାଜ୍ୟତ୍ୟାଗ ଓ ମାଳସାହିରେ ଅବସ୍ଥାନ :

ଘୁମୁସରର ବିଖ୍ୟାତ ଭଞ୍ଜ ବଂଶରେ ଜନ୍ମଲାଭ କରି ମଧ୍ୟ ଦୀର୍ଘକାଳ ରାଜଐଶ୍ୱର୍ଯ୍ୟର ଅଧିକାରୀ ହେବା ଉପେନ୍ଦ୍ରଙ୍କ ଭାଗ୍ୟରେ ସମ୍ଭବ ହୋଇ ନ ଥିଲା ।

(୭) ଭଞ୍ଜ ଭୂମିକା (ପ୍ରଥମ ସଂସ୍କରଣ)—ପୃ-୧୫୭

ଏ ପ୍ରସଙ୍ଗରେ ଜଣାଯାଏ ଯେ; ରାଜା ଧନଞ୍ଜୟ ଭଞ୍ଜଙ୍କର ଏକାଧିକ ରାଣୀ ଥିଲେ । ତନ୍ମଧ୍ୟରୁ ଜ୍ୟେଷ୍ଠାରାଣୀ ମଣ୍ଡାଦେବୀ ଅତ୍ୟନ୍ତ ରୂପବତୀ ଥିଲେ ଏବଂ ରାଜା ତାହାଙ୍କୁ ଅନ୍ୟ ରାଣୀମାନଙ୍କ ଅପେକ୍ଷା ଅଧିକ ସ୍ନେହ କରୁଥିଲେ । ମଣ୍ଡାଦେବୀ ନିଜ ପୁତ୍ର ନୀଳକଣ୍ଠଙ୍କୁ ରାଜା କରିବା ଉଦ୍ଦେଶ୍ୟରେ ଚକ୍ରାନ୍ତ ଆରମ୍ଭ କରିଥିଲେ । ସେ ବୃଦ୍ଧରାଜା ଧନଞ୍ଜୟଙ୍କୁ ଜଣେ ଦାସୀଦ୍ୱାରା ବିଷ ଦିଆଇ ହତ୍ୟା କରାଇଥିଲେ । ଧନଞ୍ଜୟ ଭଞ୍ଜଙ୍କ ପରେ ନୀଳକଣ୍ଠ ଭଞ୍ଜ ଘୁମୁସରର ରାଜ ସିଂହାସନରେ ଅଧିଷ୍ଠିତ ହେଲେ । କିନ୍ତୁ ବିମାତା ଭ୍ରାତାମାନଙ୍କ ବିଦ୍ରୋହ ଓ ଚକ୍ରାନ୍ତ ଫଳରେ ବେଶୀ କାଳ ରାଜା ହେବା ସୁଯୋଗରୁ ବଞ୍ଚିତ ହୋଇଥିଲେ । ଏ ସମ୍ପର୍କରେ ଶ୍ରୀଯୁକ୍ତ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଲେଖିଛନ୍ତି—"ଧନଞ୍ଜୟଙ୍କ ପରେ ନୀଳକଣ୍ଠ ଭଞ୍ଜ ରାଜଗାଦି ପାଇଲେ, କିନ୍ତୁ ସୁଖଶାନ୍ତି ବୋଲି କଥା ସୁଦ୍ଧା ଆଉ ରହିଲା ନାହିଁ । ଅନବରତ ବୈମାତ୍ରିକ ଭାଇମାନଙ୍କଦ୍ୱାରା ନାନା ଉପଦ୍ରବ ସଂଘଟିତ ହେଉଥାଏ । × × ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ଘନଭଞ୍ଜ ଉପେନ୍ଦ୍ରଙ୍କ ସମସାମୟିକ ଥିଲେ । × × ସେ ନୀଳକଣ୍ଠଙ୍କୁ ନାନା ଅଶାନ୍ତି-ସଙ୍କୁଳ ଦେଖି ଚତୁର୍ଦ୍ଦିଗରେ ବିଦ୍ରୋହବହ୍ନି ପ୍ରଜ୍ଜ୍ୱଳିତ କରାଇଲେ । ସେ ଅକ୍ଳାନ୍ତ ପରିଶ୍ରମ କରି ଗଙ୍ଗାଧରଙ୍କ ପୌତ୍ର ଓ ଶତ୍ରୁଞ୍ଜୟଙ୍କ ପୁତ୍ର ରଣଭଞ୍ଜଙ୍କୁ ନୀଳକଣ୍ଠଙ୍କ ପ୍ରତିପକ୍ଷ ରୂପରେ ସିଂହାସନରେ ଶ୍ରେଷ୍ଠ ଦାୟାଦ ରୂପରେ ନାମମାତ୍ର ସ୍ଥାପିତ କରିଥିଲେ । ଏପରି ଦୁର୍ଦ୍ଦଶାଗ୍ରସ୍ତ ହୋଇ ନୀଳକଣ୍ଠ ସିଂହାସନକୁ ଅଧିକ ସମୟ ରକ୍ଷା କରିବା ନିରାପଦ ବୋଲି ମନେ କଲେ ନାହିଁ । ସପରିବାର ସେ ନବଦୁର୍ଗାଭିମୁଖେ ପଳାୟନ କଲେ । ତନ୍ମଧ୍ୟ ପ୍ରଧାନ ରାଜଧାନୀ ସମୀପବର୍ତ୍ତୀ 'ମାଳସାହି'ରେ ଅବସ୍ଥାନ କରିଥିଲେ ବୋଲି କଥିତ ଅଛି ।" (୭)

'ଘୁମୁସର ରାଜବଂଶାବଳୀରେ' ମଧ୍ୟ ଏ ସଂପର୍କରେ ଲିଖିତ ଅଛି—

"ନୂଆଗଡ଼ରେ ମାଳସାହି ଗ୍ରାମରେ
ରହିଲେ କୁଟୁମ୍ବ ଘେନି ନିର୍ଭୟରେ ।
ତାହାଙ୍କର କୁମର ଉପେନ୍ଦ୍ର ଭଞ୍ଜ
ଶୁଦ୍ଧ କବିତ୍ୱରେ ସେ କବିରାଜ ।
ତାହାଙ୍କର ଅନ୍ୱୟ (ବଂଶ) କେହି ନଥିଲେ
ସେହି ମାଳସାହି ଗ୍ରାମରେ ରହିଲେ ।" (୫ମ ଛାନ୍ଦ)

(୭) କବିସମ୍ରାଟ ଉପେନ୍ଦ୍ର ଭଞ୍ଜ (ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ)—ପୃ-୨୨

ଅର୍ଥାତ୍ ଘୁମୁସର ରାଜ୍ୟରୁ ବିତାଡ଼ିତ ହେବାପରେ ଜୀବନର ବହୁକାଳ ପିତାଙ୍କ ସହିତ ଉପେନ୍ଦ୍ର ଭଞ୍ଜ ଉକ୍ତ ମାଳିଆହିରେ ଅବସ୍ଥାନ କରିଥିଲେ । ଏହିଠାରେ ହିଁ ସେ ବହୁ କାବ୍ୟକବିତା ରଚନା କରିଥିବା କିମ୍ବଦନ୍ତୀ ରହିଛି । ଏହି ଦୃଷ୍ଟିରୁ ଓଡ଼ିଶାର ଭଞ୍ଜଭକ୍ତଗଣଙ୍କ ପାଇଁ ଘୁମୁସର ତୁଲ୍ୟ ମାଳିସାହି ମଧ୍ୟ ଅନ୍ୟତମ ସ୍ମରଣୀୟ ସ୍ଥାନ ।

## ଦାମ୍ପତ୍ୟ ଜୀବନ :

କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ ଜୀବନରେ ଦୁଇଥର ବିବାହ କରିଥିବା ଜଣାଯାଏ । ଏ ସଂପର୍କରେ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତ ପ୍ରଣିଧାନଯୋଗ୍ୟ ମନେହୁଏ । ଅଧ୍ୟାପକ ଡକ୍ଟର ମହାନ୍ତି ଲେଖିଛନ୍ତି—"ଉପେନ୍ଦ୍ର ଦାରପରିଗ୍ରହ କରିଥିଲେ ଏବଂ ଗୃହୀ ଥିଲେ । ନୟାଗଡ଼ ରାଜା ବିନାୟକ ସିଂହଙ୍କ କନ୍ୟା ଭଞ୍ଜଙ୍କର ପ୍ରଥମା ସ୍ତ୍ରୀ ଓ ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନଙ୍କ କନ୍ୟା କବିଙ୍କର ଦ୍ୱିତୀୟା ସ୍ତ୍ରୀ ଥିଲେ । ବାଣପୁର ରାଜଜେମା ସୁପଣ୍ଡିତା, ପତିପ୍ରାଣା ଓ କାବ୍ୟକୁଶଳା ଥିବାରୁ, କବିଙ୍କ ଯଥାର୍ଥ ଜୀବନରେ ତ୍ରିବର୍ଗ ସାଧନର ସହାନୁଭୂତା ଥିଲେ ।" (୮)

ଅର୍ଥାତ୍ କବି ସର୍ବପ୍ରଥମେ ନୟାଗଡ଼ ରାଜଜେମାଙ୍କୁ ବିବାହ କଲେ ; କିନ୍ତୁ ବିବାହର ଅଳ୍ପକାଳପରେ ସେ ( ନୟାଗଡ଼ ରାଜଜେମା) ଅକାଳ ମୃତ୍ୟୁମୁଖରେ ପତିତା ହେଲେ । ଏହାପରେ ଆତ୍ମୀୟ ସ୍ୱଜନଙ୍କ ଅନୁରୋଧ ଓ ପ୍ରେରଣାରେ ସେ ବାଣପୁର ରାଜଜେମାଙ୍କୁ ବିବାହ କଲେ । ଉକ୍ତ ଦ୍ୱିତୀୟା ପତ୍ନୀ ମଧ୍ୟ ଅଧିକ କାଳ ବଞ୍ଚି ରହି କବିଙ୍କୁ ଦାମ୍ପତ୍ୟ ସୁଖ ପ୍ରଦାନ କରି ପାରି ନ ଥିଲେ । ତାହାଙ୍କର ମଧ୍ୟ ଅଳ୍ପକାଳ ପରେ ମୃତ୍ୟୁ ହୋଇଥିଲା । ଫଳରେ ସୁଖମୟ ଦାମ୍ପତ୍ୟ ଜୀବନ କବିଙ୍କ ଭାଗ୍ୟରେ ଘଟି ନ ଥିଲା । କବିଙ୍କ ପାରିବାରିକ ଜୀବନ କେତେ ଦୁଃଖମୟ ଥିଲା ସେ ସମ୍ପର୍କରେ ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମା ଲେଖିଛନ୍ତି—"ଉପେନ୍ଦ୍ରଙ୍କର ପାରିବାରିକ ଜୀବନ କହିଲେ, ଏକ ଶୂନ୍ୟଗୃହ ବୋଲି ବୁଝିବାକୁ ହେବ । ବହୁକାଳ ବ୍ୟାପୀ ଧର୍ମପତ୍ନୀର ସମ୍ପର୍କଶୂନ୍ୟ ସନ୍ତାନ-ହୀନ, ଅତଏବ, ପାରିବାରିକ ମଧୁର-ବିଧୁର ଜୀବନର ହର୍ଷବିଷାଦ-ସମନ୍ୱିତ ଜୀବନଚିତ୍ର ଏ ସ୍ଥଳରେ ଅନୁପଲବ୍ଧ, ଅକଳ୍ପନୀୟ ।

(୮) ପ୍ରାଚୀ 'ଲାବଣ୍ୟବତୀ' ମୁଖବନ୍ଧ—ପୃ-୯୬ ।

ଭଞ୍ଜେ ବାଲ୍ୟକାଳରେ ପିତାମହଙ୍କ ଯତ୍ନରେ କୁଳାଗଡ଼ରେ କାଳଯାପନ କରିଥିଲେ । ପିତାମହଙ୍କ ମୃତ୍ୟୁର ପ୍ରାୟ ଦୁଇ ତିନ ବର୍ଷ ପରେ ପିତାଙ୍କ ସହିତ ଘୁମୁସରରୁ ବିତାଡ଼ିତ ହୋଇ ନୂଆଗଡ଼ ମାଳସାହିରେ କାଳଯାପନ କରିଥିଲେ । ତାଙ୍କ ଗ୍ରନ୍ଥ ଆଜି ପ୍ରମାଣ ଦିଏ, ବନବନ, ବିଡଗଣ୍ଡି ବସି ସେ ତାଙ୍କର ଅମର କାବ୍ୟକବିତା ତାଳପତ୍ର ପୋଥିରେ ଲିପିବଦ୍ଧ କରୁଥିଲେ ।" (୯)

'ରାଜ୍ୟଭ୍ରଷ୍ଟ' ଓ 'ଦୁର୍ନିକଷ୍ଟ' ଏହି ଉଭୟ ଦୁଃଖର ଅନୁଭବୀ କବି ତାହାଙ୍କ 'ରସିକ ହାରବଳୀ' କାବ୍ୟରେ ଯଥାର୍ଥରେ ଲେଖିଛନ୍ତି

'ରାଜାଙ୍କୁ ହେବାର ରାଜ୍ୟଭ୍ରଷ୍ଟ
ଯୁବାଙ୍କୁ ହେବାର ଦୁର୍ନୀକଷ୍ଟ
ବୋଲେ ଉପେନ୍ଦ୍ର ଭଞ୍ଜ ବୀରବର
ଏଥୁ ବଳି ନାହିଁ ଆନ କଷ୍ଟ ।।

## **କବିଙ୍କର ଉପାଧି :**

କବି ଉପେନ୍ଦ୍ର ଭଞ୍ଜ ତାହାଙ୍କ କାବ୍ୟବଳୀରେ ନିଜର ନାମ ସହିତ ଦୁଇଗୋଟି ଉପାଧି ସଂଯୋଗ କରିଥିବା ଦେଖାଯାଏ । ଏଥିମଧ୍ୟରୁ ଗୋଟିଏ ହେଉଛି 'ବୀରବର' ଓ ଅନ୍ୟଟି ହେଉଛି 'ମଙ୍ଗରାଜ' । କିନ୍ତୁ ଓଡ଼ିଶାର ସାହିତ୍ୟକମଣ୍ଡଳୀରେ ସେ 'କବିସମ୍ରାଟ୍' ରୂପେ ଖ୍ୟାତିଲାଭ କରିଛନ୍ତି । ଏହି ତିନିଗୋଟି ଉପାଧି କବିଙ୍କୁ କେତେବେଳେ, କେଉଁଠାରେ ମିଳିଥିଲା, ତାହାର କୌଣସି ପ୍ରାମାଣିକ ତଥ୍ୟ ଉପଲବ୍ଧ ହୁଏ ନାହିଁ । କେବଳ କିମ୍ବଦନ୍ତୀ ଉପରେ ନିର୍ଭର କରି ଅନେକ ଆଲୋଚକମାନେ ଏ ସଂପର୍କରେ ନିଜସ୍ୱ ମତ ଉଦ୍‌ଘାଟନ କରିଥାନ୍ତି । ଏ ସଂପର୍କୀୟ କେତେକ ବିଷୟ ଉଲ୍ଲେଖ କରିଗଲି ।

(କ) **'ବୀରବର' ଉପାଧି**—କବିସମ୍ରାଟ୍ ଭଞ୍ଜ ନିଜର ନାମ ସହିତ 'ବୀରବର' ପଦକୁ ବହୁସ୍ଥାନରେ ଉଲ୍ଲେଖ କରିଛନ୍ତି । 'ବୀରବର' ପଦବୀ ପ୍ରକୃତ ପକ୍ଷରେ ତାହାଙ୍କୁ କିଏ ପ୍ରଦାନ କରିଥିଲେ, ସଂପର୍କରେ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । କେତେକଙ୍କ ମତରେ ପୁରୀ ଗଜପତି ଦିବ୍ୟସିଂହ ଦେବଙ୍କଠାରୁ ସେ ଏହି ପଦବୀ ଲାଭ କରିଥିଲେ । ଭଞ୍ଜଙ୍କ ଜୀବନର ଅନ୍ୟତମ ଲେଖକ ଶ୍ରୀଯୁକ୍ତ ଦାମୋଦର

(୯) ଭଞ୍ଜଭୂମିକା—ପୃ-୩୫୪ ।

ଦାସ ଲେଖିଛନ୍ତି ଯେ, ନୟାଗଡ଼ ରାଜା ଚନ୍ଦ୍ରଶେଖର ମାନ୍ଧାତା କବିଙ୍କୁ ଏହି ଉପାଧି ପ୍ରଦାନ କରିଥିଲେ ।

କିନ୍ତୁ ଲେଖକ କିଛିବର୍ଷ ପୂର୍ବେ ନିଜର ପିତୃଦେବଙ୍କ ମୁଖରୁ ଏକ କିମ୍ବଦନ୍ତୀ ଶୁଣିବାକୁ ପାଇଥିଲେ । ତାହା ଏଠାରେ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିବା ଯଥାର୍ଥ ମନେହୁଏ ।

ମୋର ସ୍ୱର୍ଗତଃ ପିତୃଦେବ ପଣ୍ଡିତ ମାଧବ ଦାଶ ଥିଲେ ଜଣେ ବିଖ୍ୟାତ ଭଞ୍ଜସାହିତ୍ୟରସିକ ଏବଂ ଗ୍ରନ୍ଥାର୍ଥୀ । ସେ ୧୯୩୮ ମସିହାରେ ତାହାଙ୍କ ଗୁରୁଦେବ ସ୍ୱର୍ଗତଃ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା (ଅଧ୍ୟାପକ ଗୌରକୁମାର ବ୍ରହ୍ମାଙ୍କ ପିତୃଦେବ)ଙ୍କ ସହିତ ଭଞ୍ଜନଗର ନିକଟବର୍ତ୍ତୀ ଷୋଡ଼କ ନାମକ ଗ୍ରାମକୁ ଯାଇଥିଲେ । ସେହି ଗ୍ରାମରେ ବାସ କରୁଥିବା ଭଞ୍ଜବଂଶର ଜନୈକ ଦାୟାଦ ନାରାୟଣୀସେନ ଭଞ୍ଜ ଏହି ଗୁରୁଶିଷ୍ୟ ଉଭୟଙ୍କୁ ନିମନ୍ତ୍ରଣ କରିଥିଲେ । ନାରାୟଣୀ ସେନ ଭଞ୍ଜଙ୍କ ଘରେ ଗଣିଗଣି ତାଳପତ୍ର ପୋଥି ଅତି ଯତ୍ନ ସହକାରେ କାଠ ସିନ୍ଦୁକରେ ଥିବା ବିଷୟ ମୋର ପିତୃଦେବ ସ୍ୱଚକ୍ଷୁରେ ଦେଖିଥିଲେ ବୋଲି କହୁଥିଲେ । ତାହାଙ୍କ ମୁଖରୁ ମୋର ପିତୃଦେବ ଭଞ୍ଜଙ୍କ ସମ୍ପର୍କୀୟ କେତେକ କୌତୁକପୂର୍ଣ୍ଣ କିମ୍ବଦନ୍ତୀ ଶୁଣିବାକୁ ପାଇଥିଲେ । ଉକ୍ତ ସମସ୍ତ କିମ୍ବଦନ୍ତୀ ଉଲ୍ଲେଖ କଲେ ଏକ ବିଶାଳ ଗ୍ରନ୍ଥ ହେବ । ଏଥି ମଧ୍ୟରୁ 'ବୀରବର' ଉପାଧି ସମ୍ପର୍କୀୟ କିମ୍ବଦନ୍ତୀଟି ଅନ୍ୟତମ । ତାହା ହେଉଛି—ଏକଦା ଘୁମୁସର ରାଜଦରବାରରେ ଜନୈକ ବିଖ୍ୟାତ ପଣ୍ଡିତ ଆସି ଉପସ୍ଥିତ ହେଲେ । ସେତେବେଳକୁ ଉପେନ୍ଦ୍ରଭଞ୍ଜ ସାଧନାର ଦ୍ୱାରଦେଶରେ । ଉକ୍ତ ପଣ୍ଡିତ ଜଣକ ଘୁମୁସରର ପଣ୍ଡିତସଭାରେ ରସବାଦ, ଧ୍ୱନିବାଦ, ଅଳଙ୍କାରବାଦ, ରୀତିବାଦ, ବକ୍ରୋକ୍ତିବାଦ ଓ ଔଚିତ୍ୟବାଦ ସମ୍ପର୍କୀୟ କେତେକ ଜଟିଳ ପ୍ରଶ୍ନ ଉପସ୍ଥାପନା କଲେ । ସେଠାରେ ଉପସ୍ଥିତ ଥିବା ଯୁବକ କବି ଉପେନ୍ଦ୍ର ଭଞ୍ଜ ଉକ୍ତ ପଣ୍ଡିତଙ୍କ ସମସ୍ତ ପ୍ରଶ୍ନର ଅତି ଚମତ୍କାର ଉତ୍ତର ପ୍ରଦାନ ପୂର୍ବକ ସଭାସ୍ଥ ଅନ୍ୟାନ୍ୟ ପଣ୍ଡିତମାନଙ୍କୁ ମୁଗ୍ଧ କରିଦେଲେ । ପିତାମହ ଧନଞ୍ଜୟ ଭଞ୍ଜ ନିଜ ପୌତ୍ର (ନାତି)ର ଏପରି ଅସାଧାରଣ ବିଦ୍ୱତ୍ତାରେ ମୁଗ୍ଧ ହୋଇଯାଇଥିଲେ । ସେ ତତ୍‌କ୍ଷଣାତ୍ ସିଂହାସନରୁ ଓହ୍ଲାଇଯାଇ ଉପେନ୍ଦ୍ରଙ୍କ ନିକଟକୁ ଚାଲି ଯାଇଥିଲେ ଏବଂ ପିଠିରେ ହାତମାରି ଗଦ୍‌ଗଦ କଣ୍ଠରେ "ଆରେ ବାଃ, ଇଏତ ବୀରବରଟାଏ" ବୋଲି କହିଥିଲେ । ସେହିଦିନଠାରୁ ସେଠାକାର ପଣ୍ଡିତମାନଙ୍କ

ମୁଖରେ ସେ 'ଗାରବର' ନାମରେ ଘୋଷିତ ହେଲେ ଏବଂ ନିଜ ସାହିତ୍ୟସାଧନାର ସର୍ବଶ୍ରେଷ୍ଠ ପ୍ରେରଣାଦାତା ପିତାମହ ଧନଞ୍ଜୟ ଭଞ୍ଜଙ୍କ ସ୍ମୃତିକୁ ଜାଗ୍ରତ ରଖିବା ନିମିତ୍ତ ସ୍ୱକୀୟ କାବ୍ୟରାଜିରେ ମଧ୍ୟ ବହୁସ୍ଥଳରେ ଆପଣାକୁ 'ଗାରବର ଉପେନ୍ଦ୍ର' ବା 'ଭଞ୍ଜ ଗାରବର' ବୋଲି ଉଲ୍ଲେଖ କରିଛନ୍ତି । ପରବର୍ତ୍ତୀ କାଳରେ ଓଡ଼ିଶାରେ ପ୍ରଚଳିତ ପରମ୍ପରା ଅନୁଯାୟୀ ଗଜପତି ଦିବ୍ୟସିଂହ ଦେବ ଉକ୍ତ ପଦବୀକୁ ସ୍ୱୀକାର କରିଥିବା ମଧ୍ୟ ଶୁଣାଯାଇଥାଏ ।

ଏହି କିମ୍ବଦନ୍ତୀ ଯେ ସତ୍ୟ, ଏହାର କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । ତଥାପି ଓଡ଼ିଆ ଜାତି ବିଶ୍ୱାସ ଉପରେ ଆସ୍ଥା ସ୍ଥାପନ ପୂର୍ବକ ବିଭିନ୍ନ କବିଙ୍କ ସମ୍ପର୍କୀୟ କିମ୍ବଦନ୍ତୀରାଜିକୁ ସତ୍ୟର ଅନୁବର୍ତ୍ତୀ ରୂପେ ଗ୍ରହଣ କରି ନେଇଛୁ ।

(ଖ) **ମଙ୍ଗରାଜ ଉପାଧି**—କବି ସମ୍ରାଟ୍ ଭଞ୍ଜ ସ୍ୱରଚିତ 'ଭାବବତୀ', 'ଯମକରାଜ ଚଉତିଶା' ଓ 'ଚଉପଦୀ ଭୂଷଣ, ପ୍ରଭୃତି କେତେକ କାବ୍ୟରେ ନିଜକୁ 'ମଙ୍ଗରାଜ' ରୂପେ ଉଲ୍ଲେଖ କରିଛନ୍ତି । ଏହି ପଦବୀ ମଧ୍ୟ କବିଙ୍କୁ କେବେ କେଉଁଠାରେ ମିଳିଥିଲା, ଜାଣିବା କଷ୍ଟକର । ଏ ପ୍ରସଙ୍ଗରେ ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମା ଲେଖିଛନ୍ତି—'ରାଜା-ରାଜୁଡ଼ା ସମ୍ପର୍କରେ ଅନୁଭୂତିସମ୍ପନ୍ନ କେତେ ଜଣ ବିଜ୍ଞ ବ୍ୟକ୍ତିଙ୍କ ସହିତ 'ମଙ୍ଗରାଜ' ଶବ୍ଦର ଅର୍ଥ ନେଇ ଆଲୋଚନା କରିଥିଲେ । ତାହାଁରୁ ତିନୋଟି କଥା ପ୍ରକାଶ ପାଇଥିଲା । ପ୍ରଥମକଥା, ରାଜ୍ୟର ମଙ୍ଗ ବା ପ୍ରାନ୍ତ ଭାଗରେ, କୂଟନୈତିକ ସୁବିଧା ଦୃଷ୍ଟିରୁ, ଯାହାଙ୍କୁ ରାଜା ରୂପେ ରଖା ଯାଇଥିଲା, ତାଙ୍କ ପାଇଁ 'ମଙ୍ଗରାଜ' ଶବ୍ଦ ପ୍ରୟୋଗ ହୋଇଥିବା ସମ୍ଭବ । ଦ୍ୱିତୀୟ କଥା, ରାଜ୍ୟ-ରାଜ୍ୟ ମଧ୍ୟରେ ଯୁଦ୍ଧବେଳେ ଜଣେ ରାଜାଙ୍କ ପକ୍ଷରୁ ଦୂତିପନଧରି କରି ସେହି ରାଜାଙ୍କ ସୁବିଧା ହେଲା ଭଳି ସନ୍ଧି ସ୍ଥାପନାରେ ଅପରପକ୍ଷର ରାଜାଙ୍କୁ ଯେ ମଙ୍ଗେଇ ପାରୁଥିଲା ସେ ମଧ୍ୟ 'ମଙ୍ଗରାଜ' ପଦର ଯୋଗ୍ୟ ଅଧିକାରୀ । ତୃତୀୟ କଥା, କୌଣସି ଘଟଣାରେ (ରୂପକ ଭଙ୍ଗୀରେ) କେହି ଯଦି ମଙ୍ଗମୋଡ଼ି ଲକ୍ଷ୍ୟ ସିଦ୍ଧି କଲା, (ଯେପରିକି ନୌକାର ମଙ୍ଗ ମୋଡ଼ି ନାଉରୀ ଲକ୍ଷ୍ୟ ସ୍ଥଳରେ ନୌକାକୁ ପହଞ୍ଚାଇ ଦିଏ) ତେବେ, ସେ ମଧ୍ୟ ଶ୍ରେଷ୍ଠ ମଙ୍ଗୁଆଳ ହିସାବରେ 'ମଙ୍ଗରାଜ' ପଦ ପାଇପାରେ ।

× × × ×

ଏହା ଆଗରୁ କୁହାଯାଇଥିବା ଦୃଷ୍ଟାନ୍ତ କଥା ଧରାଯାଉ । ଭଞ୍ଜଙ୍କ ସମୟରେ ଓଡ଼ିଶାର ସାହିତ୍ୟ-ସାଗରରେ ଓଡ଼ିଆ ଭାଷାର ରଚନା ରୂପକ ନୌକାକୁ ନେଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା କଷ୍ଟକର ଥିଲା । ଚିଲିକା ପ୍ରଭୃତିରେ କିମ୍ବା ନଦୀମାନଙ୍କରେ ନୌକା ଚାଳନା ଯେଉଁମାନେ ଦେଖିଛନ୍ତି, ମଙ୍ଗ ମୋଡ଼ିବାର ଅସଲ ଲକ୍ଷ୍ୟ ସେମାନେ ଅନୁଭବ କରିଥିବେ । ଠିକ୍ ଯାଗାରେ ଟିକିଏ ମଙ୍ଗ ମୋଡ଼ି ଦେଲେ ନୌକା ଯାଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଯାଏ । ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ସାହିତ୍ୟ-ସାଗରରେ ଗୌରିବ ପ୍ରତିଷ୍ଠାର ଡଙ୍ଗାକୁ ନିଜର ମଙ୍ଗ ମୋଡ଼ିବାର ଶକ୍ତି ବଳରେ କପରି ନେଇ ଉଦ୍ଦେଶ୍ୟସିଦ୍ଧି ପୀଠରେ ଲଗାଇ ଦେଇଛନ୍ତି, ତାହା ଦେଖିଲେ 'ମଙ୍ଗରାଜ' ରୂପେ ପରିଚିତ ହେବାପାଇଁ ତାଙ୍କର ଶକ୍ତି ଓ ସମ୍ମାନରେ ସନ୍ଦେହ କରିହୁଏ ନାହିଁ ।" (୧୦)

## (ଗ) 'କବି ସମ୍ରାଟ' ଉପାଧି—

ଏହି ପଦବୀରେ କବି ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ସର୍ବତ୍ର ପରିଚିତ ହେଲେ ହିଁ, ଏହା କୌଣସି ରାଜାଙ୍କ ଦ୍ୱାରା ପ୍ରଦତ୍ତ ଉପାଧି ନୁହେଁ ବୋଲି ପ୍ରମାଣିତ ହୋଇ ସାରିଛି । କବି ନିଜର ଏହି ପଦବୀ କେଉଁଠାରେ ଉଲ୍ଲେଖ କରିଥିବା ଦେଖାଯାଏ ନାହିଁ । ସୁତରାଂ, ଏହା ହେଉଛି କବିଙ୍କ ପ୍ରତି ଓଡ଼ିଶାବାସୀଙ୍କର ସାଦର ଶ୍ରଦ୍ଧାଞ୍ଜଳି ଓ ଅଭିନନ୍ଦନ ମୂଳକ ପଦବୀ । ଏ ପ୍ରସଙ୍ଗରେ ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମାଙ୍କର ଏକ ସୁଚିନ୍ତିତ ମତ ଉଦ୍ଧାର କରିବା ଯଥାର୍ଥ ମନେହୁଏ—"ଉପେନ୍ଦ୍ର ଭଞ୍ଜ 'କବିସମ୍ରାଟ' ନାମରେ ପରିଚିତ । ମାତ୍ର ଏହି ଉପାଧି ତାଙ୍କୁ କିଏ, କେବେ ଓ କେଉଁଠାରେ ଦେଇଥିଲା, ଜାଣିବାର ଉପାୟ ନାହିଁ । ଏହାର ପ୍ରାଚୀନତା ସମ୍ପର୍କରେ ପ୍ରଶ୍ନ ଉଠିଲେ ମଧ୍ୟ ସନ୍ତୋଷଜନକ ଉତ୍ତର ଦେଇ ହେବ ନାହିଁ । ତେବେ, ମନେହୁଏ, ଏହା ଜନତା ଜନାର୍ଦ୍ଦନଙ୍କର ପ୍ରଦତ୍ତ ଉପାଧି । ମଧ୍ୟଯୁଗରେ ବଡ଼ ବଡ଼ କବିମାନେ 'କବିରାଜ-ଚକ୍ରବର୍ତ୍ତୀ' ରୂପେ ଅଭିହିତ ହୋଇଅଛନ୍ତି । ଭଞ୍ଜଙ୍କର କବିତାବଳୀ ରାଜଦରବାରମାନଙ୍କରେ ଏବଂ ପଣ୍ଡିତସଭାମାନଙ୍କରେ ଯେତେବେଳେ ପ୍ରବଳ ପ୍ରଭାବ ବିସ୍ତାର କଲା, ତଦ୍ ବିଦମାନେ କହିଲେ, ଏ ମଧ୍ୟ ଜଣେ କବିରାଜ-ଚକ୍ରବର୍ତ୍ତୀ ବା 'କବିସାର୍ବଭୌମ' । କ୍ରମେ 'ସମ୍ରାଟ' ଶବ୍ଦ କବିଙ୍କ ସମ୍ପର୍କରେ ପ୍ରୟୋଗ ସୀମା ଭିତରକୁ ଆସିଗଲା, କାରଣ ବିରାଟ ରାଜ୍ୟର

---

(୧୦) ଭଞ୍ଜ ଭୂମିକା—ପୃ-୫୧୩—୫୧୪ ।

ଯେ ସର୍ବୋଚ୍ଚ ଶାସକ, ସେ ସମ୍ରାଟ ରୂପେ ଖ୍ୟାତ । ତେଣୁ ଧୀରେ ଧୀରେ ଲୋକମୁଖରେ ସେ ହୋଇଗଲେ 'କବିସମ୍ରାଟ' ବା ସର୍ବାଧିକ ଶକ୍ତିଶାଳୀ କବି । "କବିସୂର୍ଯ୍ୟ" କହିଲେ ଓଡ଼ିଶାରେ ଯେପରି ବଳଦେବ ରଥଙ୍କୁ ବୁଝାଯାଆନ୍ତି, 'ଶୂଦ୍ରମୁନି' କହିଲେ ଯେପରି ଶାରଳା ଦାସ ଙ୍କୁ ବୁଝାଯାଆନ୍ତି, ଠିକ୍ ସେହିପରି, 'କବିସମ୍ରାଟ' ବୋଲିଲେ ଉପେନ୍ଦ୍ର ଭଞ୍ଜ ଙ୍କୁ ବୁଝାଯାଆନ୍ତି ।' (୧୧)

ଏତଦ୍‌ବ୍ୟତୀତ କବି ତାହାଙ୍କ 'ରସପଞ୍ଚକ'ର 'ପ' ଗୀତରେ ଗୋଟିଏ ସ୍ଥାନରେ ନିଜକୁ 'ପାଟକୁମର' (୧୨) ଓ ଅନ୍ୟ ଏକ ସ୍ଥାନରେ 'ଉପଇନ୍ଦ୍ର ଭଞ୍ଜରାଜ' ବୋଲି ମଧ୍ୟ କହିଛନ୍ତି (୧୩) । କବି ନିଜେ ରାଜା ନଥିଲେ । ସୁତରାଂ, ନିଜକୁ ଏପରି ପଦବୀରେ ଭୂଷିତ କରିବାର କୌଣସି କାରଣ ଜଣା ଯାଉନାହିଁ କିମ୍ବା ତାହାଙ୍କ ପିତା ମଧ୍ୟ ଅଧିକ କାଳ ଘୁମୁସରର ରାଜାହୋଇ ପାରି ନଥିଲେ । ତେବେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଏ ପ୍ରସଙ୍ଗରେ ଯେଉଁ ମତ ଉପସ୍ଥାପନା କରିଛନ୍ତି, ତାହା କେତେକାଂଶରେ ଯୁକ୍ତିଯୁକ୍ତ ମନେହୁଏ । ସ୍ୱର୍ଗତଃ ପଣ୍ଡିତ ଦାସ ମହୋଦୟ ଲେଖିଛନ୍ତି—"ଉପେନ୍ଦ୍ର ରାଜା ନୀଳକଣ୍ଠଙ୍କ ଜ୍ୟେଷ୍ଠପୁତ୍ର ଥିବାରୁ ସେ 'ଯୁବରାଜ', 'ପାଟକୁମର' ପଦବୀ ବ୍ୟବହାର କରୁଥିଲେ । × × 'ରସ ପଞ୍ଚକ' × ×ରେ କବି ନିଜକୁ ପାଟକୁମାର ବୋଲି ପରିଚୟ ଦେଇଛନ୍ତି । × × ପୁଣି (ରସ ପଞ୍ଚକର)-'ପ' ବୋଲିରେ × × ଉପେନ୍ଦ୍ର ନିଜକୁ ରାଜା ବୋଲି ପରିଚିତ କରାଇଛନ୍ତି । × × ଏଥିରୁ ଅନୁମାନ ହେଉଛି, ଏହି ଗୀତ ରଚନାବେଳକୁ କବିଙ୍କ ପିତାଙ୍କର କାଳ ହୋଇ ଯାଇଥିଲା ଏବଂ 'ପାଟକୁମାର' 'ରାଜା' ହେଲେ । 'ପାଟ କୁମାର' ଭଣିତା ଥିବା ଗୀତର ଅବ୍ୟବହିତ ପରେ, 'ରାଜା' ଭଣିତା ଥିବା ଗୀତଟି ଗ୍ରନ୍ଥରେ ଥିବାରୁ ମନେ ହେଉଛି, ଏହି ଦୁଇଟିର ରଚନା-କାଳ ମଧ୍ୟରେ ନୀଳକଣ୍ଠଙ୍କର ସ୍ୱର୍ଗବାସ ହୋଇଯାଇଛି । ପିତା ନିର୍ବାସନକାଳରେ

---

(୧୧) ସାଂସ୍କୃତିକ ବ୍ୟାପାର ବିଭାଗ ପ୍ରକାଶିତ 'ବୈଦେହୀଶ ବିଳାସ'ର ମୁଖବନ୍ଧ, ପୃ-୪୦ ।

(୧୨ ପାଟକୁମର ଖ୍ୟାତ ପ୍ରବନ୍ଧେ କହିଲି ସେ ।

(୧୩) ପଦେ ଉପଇନ୍ଦ୍ର ଭଞ୍ଜରାଜ ବନ୍ଧି ।

ମଧ୍ୟ ନିଜକୁ ରାଜା ବୋଲି ପରିଚିତ କରାଉଥିବାରୁ, ଉପେନ୍ଦ୍ର ନିଜକୁ ସେହି ପଦବୀରେ ପରିଚିତ କରାଇବା ସ୍ୱାଭାବିକ ।" (୧୪)

ଏହିପରି ଭାବରେ କବିଙ୍କ ବିଭିନ୍ନ ପଦବୀ ସମ୍ପର୍କରେ ନାନାବିଧ ମତ ଉପଲବ୍ଧ ହୋଇଥାଏ । ଆଲୋଚକମାନଙ୍କର ଅନୁମାନ ଓ ଯୁକ୍ତି ସ୍ଥଳବିଶେଷରେ ଅଭ୍ରାନ୍ତ ହୋଇ ନପାରେ । କିନ୍ତୁ 'କବିସମ୍ରାଟ' ପଦବୀକୁ ଛାଡିଦେଲେ ଅନ୍ୟାନ୍ୟ ସମସ୍ତ ପଦବୀରେ କବି ଯେ, ତତ୍କାଳୀନ ଜନସମାଜରେ ପରିଚିତ ହେଉଥିଲେ, ଏଥିରେ ସନ୍ଦେହ ନାହିଁ ।

## କବିଙ୍କ ଶେଷ ଜୀବନ—

କବିସମ୍ରାଟ ଭଞ୍ଜ ତାହାଙ୍କର ଜୀବନାବଧି ମଧ୍ୟରେ ଓଡ଼ିଶାର ବିଭିନ୍ନ ସ୍ଥାନ ଭ୍ରମଣ କରିବା ସଙ୍ଗେ ସଙ୍ଗେ ତତ୍କାଳୀନ ବହୁ ରାଜଦରବାରରେ ସମ୍ମାନିତ ହୋଇଥିବା ଜଣାଯାଏ । ବିଶେଷତଃ ପବିତ୍ର ନୀଳାଚଳ କ୍ଷେତ୍ର କବିଙ୍କର ଅତି ପ୍ରିୟସ୍ଥଳୀ ଥିଲା । କବିଙ୍କ ଶେଷଜୀବନ ଉକ୍ତ ପୁରୁଷୋତ୍ତମକ୍ଷେତ୍ରରେ ହିଁ ଅତିବାହିତ ହୋଇଥିବା ଅନୁମିତ ହୁଏ । ଏ ପ୍ରସଙ୍ଗରେ ଅଧ୍ୟାପକ ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମା ଲେଖିଛନ୍ତି—"ଏ ସମ୍ପର୍କରେ ସାଧାରଣତଃ ଶ୍ରୀକ୍ଷେତ୍ରର ନାମ ଉଲ୍ଲେଖ କରାଯାଇଥାଏ । ସେ ଥିଲେ ଜଗନ୍ନାଥଙ୍କର ପରମଭକ୍ତ । ତେଣୁ, ଶ୍ରୀକ୍ଷେତ୍ରରେ ତାଙ୍କର ଦେହାନ୍ତ ହେଉ ବୋଲି ସେ ଯେ କେବଳ ଆଶାପୋଷଣ କରିଥିବେ, ତାହା ନୁହେଁ, ସେ ଦିଗରେ ଚେଷ୍ଟା ମଧ୍ୟ କରିଥିବେ । ବହୁ ଲୋକ ବୃଦ୍ଧ ବୟସରେ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିବାର ପରମ୍ପରା ଗଢ଼ି ଆସିଛି । ଅତଏବ, ଏ ଅନୁମାନ ସମୀଚୀନ ପ୍ରତୀତ ହୁଏ ।" (୧୫)

କବିଙ୍କର କାବ୍ୟଗ୍ରନ୍ଥ ଅଧ୍ୟୟନ କଲେ, ସେ ଭାରତର ବିଭିନ୍ନ ତୀର୍ଥସ୍ଥଳ ଓ ଦର୍ଶନୀୟ ସ୍ଥାନ ପରିଭ୍ରମଣ କରିଥିବା ଜଣାଯାଏ । ତାହାଙ୍କର ଗୁଣ୍ଡିଚା ଗୋଟି କାବ୍ୟରେ ଭାରତର ଯେଉଁ ଗୁରୁଧାମର ବର୍ଣ୍ଣନା ରହିଛି (୧୬), ତାହା

(୧୪) ଓଡ଼ିଆ ସାହିତ୍ୟର ଇତିହାସ—୨ୟଭାଗ—ପୃ: ୪୯୭—୪୯୮
(ଦ୍ୱିତୀୟ ସଂସ୍କରଣ)

(୧୫) ଭଞ୍ଜଭୂମିକା—ପୃ:୫୧୬

(୧୬) (କ) ଜଗନ୍ନାଥ ଧାମ ବା ପୁରୀକ୍ଷେତ୍ରର ବର୍ଣ୍ଣନା—ବୈଦେହୀଶ ବିଳାସ, ୧୬ଶ ଛାନ୍ଦ ଓ କୋଟି ବ୍ରହ୍ମାଣ୍ଡସୁନ୍ଦରୀ—ପ୍ରଥମଛାନ୍ଦ ।

ପାଠିକଲେ କବି ପୂର୍ବୋକ୍ତ ସହିତ ଅନ୍ୟାନ୍ୟ ତିନିଗୋଟି କ୍ଷେତ୍ର ନିଶ୍ଚିତ ଭାବରେ ଦର୍ଶନ କରିଥିଲେ ବୋଲି ଜ୍ଞାତ ହୁଏ । ଏହା ସଙ୍ଗେ ସଙ୍ଗେ ରାମତାରକ ମନ୍ତ୍ରର ଐକାନ୍ତିକ ସାଧକ, ରାମାୟଣ ଗ୍ରନ୍ଥ (ବୈଦେହୀଶ ବିଳାସ) ର ରଚୟିତା ତଥା ଶ୍ରୀରାମଚନ୍ଦ୍ରଙ୍କର ଏକନିଷ୍ଠ ଭକ୍ତ ଭାବରେ ସେ ଅଯୋଧ୍ୟା, ଚିତ୍ରକୂଟ ପ୍ରଭୃତି ରାମାୟଣସ୍ପୃଷ୍ଟ ତୀର୍ଥସ୍ଥାନ ଭ୍ରମଣ କରିଥିବା ମଧ୍ୟ ସ୍ପଷ୍ଟ ଅନୁମିତ ହୁଏ ।

କବି କେତେ ବର୍ଷ ଜୀବିତ ଥିଲେ, ଏହା ମଧ୍ୟ ନିର୍ଣ୍ଣୟ କରିବାରେ ଆଲୋଚକମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । ଭଞ୍ଜଙ୍କ ଜୀବନୀ ଲେଖକ ଶ୍ରୀଯୁକ୍ତ ଅନନ୍ତ ଚନ୍ଦ୍ରନାଥ ପଟ୍ଟନାୟକ ଓ ଶ୍ରୀଯୁକ୍ତ ଦାମୋଦର ଦାସଙ୍କ ମତାନୁସାରେ କବି ୫୦ ବର୍ଷ ମାତ୍ର ଜୀବିତ ଥିଲେ । ସ୍ୱର୍ଗତଃ ଉତ୍କଳର ଅଭିଜ୍ଞ ମହାନ୍ତ ପ୍ରାଚୀ 'ଲାବଣ୍ୟବତୀ'ର ମୁଖବନ୍ଧରେ କହିଛନ୍ତି ଯେ, କବି ଷାଠିଏ ବର୍ଷରେ ଦେହତ୍ୟାଗ କରିଥିଲେ । (୧୭)

ମାତ୍ର କବିଙ୍କ ରଚିତ 'ନୀଳାଦ୍ରୀଶ ଚଉତିଶା'ର 'କ୍ଷ' ପଦଟି ପାଠ କଲେ, ସେ ୫୦ ବର୍ଷରୁ ଊର୍ଦ୍ଧ୍ୱ କାଳ ଜୀବିତ ଥିଲେ ବୋଲି ଅନୁମିତ ହୁଏ । ସେଥିରେ ସେ ଲେଖିଛନ୍ତି—

"କ୍ଷମାନିଧିଙ୍କୁ ବାରେ      କ୍ଷମ ମୁଁ ଦର୍ଶନରେ<br>
କ୍ଷିତିଖ୍ୟାତିକୁ ସମର୍ପିଲି,<br>
କ୍ଷମ ମୋ ଅପରାଧ      କ୍ଷମ ମୋ ଜୀବସାଧ<br>
କ୍ଷୀତ ଚରଣ ତଳେ ଦେଲି, ହେ ନୀଳାଦ୍ରୀଶ !<br>
କ୍ଷୟ ତ ହେଲାଣି ଏ ପିଣ୍ଡ<br>
କ୍ଷାଳ ଏ ଜଞ୍ଜାଳର ଦଣ୍ଡ<br>
କ୍ଷ୍ୟାତି ଏ ଉପେନ୍ଦ୍ରର      ଭଞ୍ଜକୁଳ ବେଭାର<br>
ଚରଣ ତଳେ ହେଉ ରୁଣ୍ଡ, ହେ ନୀଳାଦ୍ରୀଶ !"

---

(ଖ) ରାମେଶ୍ୱର ଧାମ—ଲାବଣ୍ୟବତୀ—୨୦ଶ, ୨୭ଶ ଓ ୨୭ଶ ଛାନ୍ଦ

(ଗ) ବଦ୍ରିନାଥଧାମ—କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—୨୨ ଛାନ୍ଦ

(ଘ) ଦ୍ୱାରକା ଧାମ—ସୁଭଦ୍ରା ପରିଣୟ—ପ୍ରଥମ ଛାନ୍ଦ

(୧୭) ପ୍ରାଚୀ ଲାବଣ୍ୟବତୀ ମୁଖବନ୍ଧ—ପୃ: ୯୭

ଏଥିରେ ଥିବା 'କ୍ଷୟୁତ ହେଲଣି ଏ ପିଣ୍ଡ' ଅଂଶଟି ପ୍ରତି ଦୃଷ୍ଟି ଦେଲେ, ଏହା ଯେ କବିଙ୍କ ଶେଷ ଜୀବନର ରଚନା, ଏଥିରେ ସନ୍ଦେହ ରହେ ନାହିଁ ; କିନ୍ତୁ ନିଜକୁ ୫୦ ବର୍ଷ ହେବା ପୂର୍ବରୁ କୌଣସି ବ୍ୟକ୍ତି ଆପଣାର ପିଣ୍ଡ କ୍ଷୟୁ ହେଲଣି ବୋଲି କହି ନ ପାରେ । ନିଶ୍ଚିତ ଭାବରେ କବି ୬୦ ବର୍ଷରୁ ଯଥେଷ୍ଟ ଅଧିକ କାଳ ଜୀବିତ ଥିଲେ ବୋଲି ଏଥିରୁ ଅନୁମିତ ହେଉଛି । ତେବେ ଏହି ବିଷୟ ଅଧିକ ଗବେଷଣାସାପେକ୍ଷ ।

---

# ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ—

କବି ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ସଂପର୍କରେ ଆଲୋଚନା କରିବାକୁ ଗଲାବେଳେ ଏ ସଂପର୍କୀୟ ତାହାଙ୍କର ସ୍ୱକୀୟ ଉକ୍ତି ଉଦ୍ଧାର କରିବା ଯଥାର୍ଥ ମନେହୁଏ । 'ଛାନ୍ଦକାବ୍ୟ ବହୋଦୟ' ନାମକ ତାହାଙ୍କର ଏକ କାବ୍ୟରେ ସ୍ୱରଚନାବଳୀର ଏକ ତାଲିକା ଦେବାକୁ ଯାଇ କବି ଲେଖିଛନ୍ତି—

'ଏଣୁ ଏ କବି ବିରଚିଲି ଗୀତେ
କଲି ମୁଁ ଅନେକ ପ୍ରକାଶ ଗୀତେ ।
ଅଶେଷ ଚଉତିଶା ଚଉପଦୀ
ତହା କେତେ ଯେ କହିବି ସମ୍ପାଦି ।
ଗାହା ଦୋହା ଷୋଡ଼ଶେନ୍ଦୁ ଛପୋଇ
ଇତ୍ୟାଦି କବିତ୍ୱ ଗଣନା ନାହିଁ ।
ରସ କୃଷ୍ଣ ବିଷୟ ଯେତେ ଗ୍ରନ୍ଥ
ଛାଡ଼ିଲି ତହିଁ କିଛି ଲେଖେ ଏଥ ।
ପୂରିଣ ଗ୍ରନ୍ଥ କଳ୍ପନା ମାଧୁରୀ
ଗୀତ ଛନ୍ଦଲେଖା ହେମମଞ୍ଜରୀ ।
ରସଲେଖା କାମକଳା ଚରିତ
ମନୋରମା ପ୍ରେମଲତା ସୁଗୀତ ।
ଭାବବତୀ ମୁକ୍ତାବତୀ ପ୍ରମାଣ
ବିରଜଲୀଳା ଯେ ଛାନ୍ଦ ଭୂଷଣ ।
ଷଡ଼ଋତୁ କଳାକଉତୁକର
କି ବିସ୍ମୟ ସାଦ୍ୟ ସୁଭଦ୍ରାସାର ।
ବୈଦେହୀଶ ବିଳାସ ସେହି ବାଦ୍ୟ
ପ୍ରସିଦ୍ଧ ଅବନୀ ଦ୍ୱାଦଶ ଗ୍ରନ୍ଥ ।
ରାମଲୀଳାମୃତ ଶେଷ ଚରିତ
ପ୍ରେମ ସୁଧାନିଧି ଯମକେ ସ୍ଥିତ ।

ରସିକ ହାରାବଳୀ ନାମେ ଗୀତି
କୁଞ୍ଜ ବିହାରାଦି ଶ୍ୟାମଚରିତ ।
ଅଳଙ୍କାର ଗ୍ରନ୍ଥ ରସପଞ୍ଚକ
ଲାବଣ୍ୟବତୀ ରସିକତୋଷକ ।
ପୁରୁଷୋତ୍ତମ ମାହାତ୍ମ୍ୟ ରଚନ
ନାନା କୋଷ ଶବ୍ଦେ ଗୀତାଭିଧାନ ।
ଛାନ୍ଦ କୋଟି ତାର ଚନ୍ଦ୍ରମା ପର
ଯା ନାମ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।
ତ୍ରୈଲୋକ୍ୟ ମୋହିନୀ ଆଦି ଯେ ଗୀତ
ନିର୍ମିତ ଛାନ୍ଦ ପୋଥି ପାଞ୍ଚ ସାତ ।
ସେ ଅର୍ଥ ପାଇବ ମାର୍ଗେଣ ପୁଣ
ହୋଇଛୁ ଯେଣୁ କରି ବିତରଣ ।
ବାଲ୍ମୀକେ ମହାନାଟକ ପ୍ରକାରେ
ଦତ୍ତ ହେଲା ପ୍ରାପ୍ତ ହନୁମନ୍ତରେ ।
ସେ ଏଣୁ ଲେଖା ନୋହିଲା ଲେଖାରେ
ନଗ୍ରହ ଦାନ ଧନ ଭୂ-ଲେଖାରେ ॥”
(ଚିତ୍ର କାବ୍ୟ ବନ୍ଧୋଦୟ, ୧ମ ଛାନ୍ଦ)

ଉପର୍ଯ୍ୟୁକ୍ତ ଉକ୍ତିରେ କବି ତାହାଙ୍କ ରଚିତ ୨୬ ଗୋଟି ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି । ସେଗୁଡିକ ହେଉଛି—

(୧) ଚିତ୍ରଲେଖା, (୨) ହେମମଞ୍ଜରୀ, (୩) ରସଲେଖା, (୪) କାମକଳା, (୫) ମନୋରମା, (୬) ପ୍ରେମଲତା, (୭) ଭାବବତୀ, (୮) ମୁକ୍ତାବତୀ, (୯) ବ୍ରଜଲୀଳା, (୧୦) ଛାନ୍ଦଭୂଷଣ, (୧୧) ଷଡ଼ଋତୁ, (୧୨) କଳା କୌତୁକ (୧୩) ସୁଭଦ୍ରା ପରିଣୟ, (୧୪) ବୈଦେହୀଶ ବିଳାସ, (୧୫) ଅବନା ରସତରଙ୍ଗ, (୧୬) ରାମଲୀଳାମୃତ, (୧୭) ପ୍ରେମସୁଧାନିଧି, (୧୮) ରସିକ ହାରାବଳୀ, (୧୯) କୁଞ୍ଜ ବିହାର, (୨୦) ରସପଞ୍ଚକ, (୨୧) ଲାବଣ୍ୟବତୀ, (୨୨) ପୁରୁଷୋତ୍ତମମାହାତ୍ମ୍ୟ, (୨୩) ଗୀତାଭିଧାନ, (୨୪) କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, (୨୫) ତ୍ରୈଲୋକ୍ୟ ମୋହିନୀ, (୨୬) ଚିତ୍ର କାବ୍ୟ ବନ୍ଧୋଦୟ ।

ଏତଦ୍‌ବ୍ୟତୀତ କବି ଅନେକ ଚଉତିଶା, ଚଉପଦୀ, ଗୀତା, ଦୋହା, ଷୋଡ଼ଶପଦ, ପୋଇ ପ୍ରଭୃତି ରଚନା କରିଥିବା ତାହାଙ୍କ ଉକ୍ତିରୁ ସ୍ପଷ୍ଟ ହେଉଛି । ପୁନଶ୍ଚ ସେ 'କୁଞ୍ଜବିହାର' ତୁଲ୍ୟ କେତେକ କୃଷ୍ଣଚରିତ ମୂଳକ କାବ୍ୟ ରଚନା କରିଛନ୍ତି । କବିଙ୍କ ଉକ୍ତିରୁ ଅଧିକନ୍ତୁ ମଧ୍ୟ ଜଣାଯାଏ ଯେ, "ତ୍ରୈଲୋକ୍ୟ ମୋହିନୀ' ପ୍ରଭୃତି କେତେକ (ପାଞ୍ଚ ସାତ) କାବ୍ୟକୁ ସେ ଅନ୍ୟନାମରେ ଭଣିତା କରି ଲେଖିଥିଲେ ।

'ଛାନ୍ଦକାବ୍ୟ ବନ୍ଧୋଦୟ'ର ଏହି ତାଲିକା ବ୍ୟତୀତ କବିଙ୍କ ନାମରେ ଅନ୍ୟାନ୍ୟ ବହୁ ଗ୍ରନ୍ଥର ସନ୍ଧାନ ମିଳିଥାଏ । ଏଥି ମଧ୍ୟରୁ କେତେକ ଗ୍ରନ୍ଥ ପ୍ରକାଶିତ ହୋଇଛି । ଜଣାଯାଉଛି ଯେ, କବି 'ଛାନ୍ଦକାବ୍ୟ ବନ୍ଧୋଦୟ' ରଚନା କରି ସାରିବା ପରେ ଏହି କାବ୍ୟକବିତାମାନ ପ୍ରଣୟନ କରିଛନ୍ତି । ତନ୍ମଧ୍ୟରୁ କେତେକ ରଚନା ହେଉଛି—

(୧) ଚୌପଦୀଭୂଷଣ, (୨) ଚୌପଦୀ ଚନ୍ଦ୍ର, (୩) ନୀଳାଦ୍ରୀଶ ଚଉତିଶା, (୪) ଶ୍ରୀକୃଷ୍ଣ ବିହାର, (୫) ଗନ୍ତ୍ରି ଗୀତା, (୬) ପୁରୁଷୋତ୍ତମ ମାହାତ୍ମ୍ୟ, (୭) ଚନ୍ଦ୍ର କଳା, (୮) ଚନ୍ଦ୍ର ରେଖା, (୯) ଶଶିରେଖା, (୧୦) ଛନ୍ଦ ରେଖା, (୧୧) ଶୋଭା ବତୀ (୧୨) କଳାବତୀ (୧୩) ରସମଞ୍ଜରୀ, (୧୪) ବିରହ ତରଙ୍ଗିଣୀ (୧୫) କବିକଳ୍ପ ରେଖା (୧୬) କବିତ କଳ୍ପ ରେଖା, (୧୭) ଛ' ପୋଇ, (୧୮) ନ' ପୋଇ (୧୯) ଦଶ ପୋଇ, (୨୦) ବାର ପୋଇ, (୨୧) ଷୋଳ ପୋଇ, (୨୨) ବଜାର ବୋଲି, (୨୩) ହାସ୍ୟାର୍ଣ୍ଣବ (୨୪) ସଙ୍ଗୀତ କୌମୁଦୀ (୨୫) ଛତିଶ ରାସ (୨୬) ରାହାସ ଲୀଳା, (୨୭) ଗଜନିସ୍ତାରଣ, (୨୮) କଟପାଣ୍ଡୁ (୨୯) ଲତା, (୩୦) ଦୁର୍ଗାସ୍ତୁତି, (୩୧) ବାରମାସୀ (୩୨) ପଦ୍ମାବତୀ ପରିଣୟ ଇତ୍ୟାଦି ।

ଏଥିରୁ କେତେଗୋଟି ବିଖ୍ୟାତ କୃତିର ସଂକ୍ଷିପ୍ତ ପରିଚୟ ନିମ୍ନରେ ପ୍ରଦାନ କରଗଲା ।

## (୧) ଲାବଣ୍ୟବତୀ—

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଏହା ଏକ କାଳ୍ପନିକ କାବ୍ୟ । ଏକ କାଳ୍ପନିକ କାବ୍ୟ ଭାବରେ ଏହାର ଲୋକପ୍ରିୟତା ସର୍ବାଧିକ । ସିଂହଳ

ରାଜକନ୍ୟା ଲାବଣ୍ୟବତୀ ସହିତ କର୍ଣ୍ଣାଟ ରାଜନନ୍ଦନ ଚନ୍ଦ୍ରଭାନୁଙ୍କ ବିବାହ ପ୍ରସଙ୍ଗକୁ ନେଇ କାବ୍ୟଟି ରଚିତ ହୋଇଛି । କବି ସମଗ୍ର କାବ୍ୟଟିକୁ ୪୮ ଛାନ୍ଦରେ ସମ୍ପୂର୍ଣ୍ଣ କରିଛନ୍ତି । ଏଥିରେ କବିଙ୍କର ବିଚିତ୍ର କଳ୍ପନାବିଳାସ, ଶବ୍ଦପାଣ୍ଡିତ୍ୟ, ଆଳଙ୍କାରିକତା ଓ ରସିକତା ପ୍ରତିଫଳିତ ହୋଇଛି । କାବ୍ୟାରମ୍ଭରେ ସନ୍ନି- ବେଶିତ ମଙ୍ଗଳାଚରଣରେ କବି ନିଜର ଇଷ୍ଟଦେବତା ରାମଚନ୍ଦ୍ରଙ୍କୁ ସ୍ତୁତିକରି ଲେଖିଛନ୍ତି—

"ଜୟ ଜୟ ଜୟ ରାମ ଜନକ-ସୁଖଦ
ଭ୍ରମ ହରିଷ ଦାନରେ ସଦା ବିଶାରଦ ।
ଚନ୍ଦ୍ରହାସେ ଶୋଭାକର ସମସ୍ତ କାଳର
ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର

କବି ଭାରତୀ କି ଅଗୋଚର ଛବି ଯାର
ସୁମନାବୃନ୍ଦ ବନ୍ଦିତ ଏଣୁ ନିରନ୍ତର ।
ମହାଶୟ ବଳରିପୁପରେ ତାପକର
ଛବିଭଙ୍ଗ କୃତରୁ କାତର ଅରିପୁର ।"

ଓଡ଼ିଶାର ଭଞ୍ଜସାହିତ୍ୟରସିକ ଛନ୍ଦାର୍ଥୀ ପଣ୍ଡିତମାନେ ଏହି ଅଂଶଟିକୁ ରାମ, ବଳରାମ ଓ ପରଶୁରାମ—ଏହି ତିନି ଦେବଙ୍କ ପକ୍ଷରେ ଅର୍ଥ କରି କବିଙ୍କ ବିଚିତ୍ର ଶବ୍ଦପ୍ରୟୋଗ ଚାତୁରୀର ଭୂରିଭୂରି ପ୍ରଶଂସା କରିଥାନ୍ତି ।

କାବ୍ୟର ତୃତୀୟ ଛାନ୍ଦରେ କବି ଆଳଙ୍କାରିକ ରୀତିରେ ନାୟିକା ଲାବଣ୍ୟବତୀର ନବଯୌବନ ଶୋଭା ଯେଉଁ ପରି ଭାବରେ ଫୁଟାଇଛନ୍ତି, ତାହା ତାଙ୍କର ଅପୂର୍ବ କଳ୍ପନାଚାତୁରୀର ପରିଚାୟକ । ଯଥା—

| | |
|---|---|
| ଶୁଣ ରସିକେ ନବ ଯଉବନୀ | । ହୋଇ ବନିତା ମଣ୍ଡିଲା ଅବନୀ ॥ |
| ଏଣୁ ଉପମାଗଣ ନିରନ୍ତର | । କି କରିବା ଭାବି ହେଲେ କାତର ॥ |
| ଝଳ କାନ୍ତିରେ ଲଭିଣ ଖ୍ୟାତିକି | । କଲା କଣ୍ଟକ ଦୁର୍ଗକୁ କେତକୀ ॥ |
| ପାଞ୍ଚେ ମନ୍ଦର କୁଚ ବଢ଼ିବାରେ | । କମ୍ପା ବୁଡ଼ି ନ ମଲା ପାରିବାରେ ॥ |
| ନାସାପୁଡ଼ା ଫୁଲିବାର ଅନାଇ | । ଭାଷାବନ୍ଧେ ଶୁକ ମନମନାଇ ॥ |
| ମୁଖେ ପ୍ରତିର ପରିଚୁର ପଣ | । ସୁଖେ ଦର୍ପହିତୁଁ କଳିଦର୍ପଣ ॥ |

କମ୍ବୁକଣ୍ଠ ଦେଖି ଅତି ଆର୍ତ୍ତିରୁ । ସମ ନୋହେ ବୋଲି ଡାକେ ପ୍ରାନ୍ତରୁ ॥
ନେତ୍ର ସଙ୍ଗେ ଲକ୍ଷିବେ କି ସ୍ୱମତ । ମୀନ ଜଳସ୍ଥାନରେ ଯାଏ ମରି ॥
ହୋଇ ହାସ୍ୟରେ କୁସୁମ ବାଢ଼ଇ । ମକରନ୍ଦ ଛଳେ ଅଶ୍ରୁ ତେଜଇ ॥”

× × × ×

(୩।୧-୯)

ଦଶମ ଛାନ୍ଦରେ ନାୟିକା ଲାବଣ୍ୟବତୀ ଓ ସଖୀମାନଙ୍କର ଉପବନ ବିହାର ଓ ଅଖାରକ୍ରୀଡ଼ା ବର୍ଣ୍ଣନାର ରସ ଅତ୍ୟନ୍ତ ଉପଭୋଗ୍ୟ ହୋଇଛି । ଏଥିରେ ଲାବଣ୍ୟବତୀ ଓ ତାହାର ସଖୀମାନଙ୍କ ମଧ୍ୟରେ ହୋଇଥିବା ପରସ୍ପର ବକ୍ରୋକ୍ତି ଏକ ଉଲ୍ଲେଖ ଯୋଗ୍ୟ ବିଷୟ । ଦୃଷ୍ଟାନ୍ତ ସ୍ୱରୂପ ତହିଁରୁ କେତୋଟି ଅଂଶ ଉଦ୍ଧାର କରାଗଲା—

“କହେ ଏକ ନାରୀ ବିଶେଷ ସୁନାରୀ ଏ ଦେଶରେ ବାସ କରଛି ।
ଭୃଙ୍ଗକୁ ପ୍ରବୃତ୍ତ ଚଞ୍ଚଳ-ମାନସ ଏଥି ତଥି ପୁଣ ଯାଉଛି
ତହିଁକି, ଛଳ କହିଲ କେଉଁ ଧାରୁ
ମହାବିବେକୀ ହୋଇ ତୁମ୍ଭେ କମାଇ ମଧୁପ ନାମକୁ ବିସାରୁ
ଏକକୁ ଗୁହିଁ ଆରେକ ସଖୀ କହି ନିକଟେ ନାଗେଶ୍ୱର ମୋର
ହୋଇଲା ହୋଇ ଥାଇଛି ନାଗେଶ୍ୱର ସୁପର୍ଣ୍ଣରେ କର ଆଦର
ସେ ଛଳେ, ଚହ୍ଲିଲ ନାଗେଶ୍ୱର କହି
ସୁମନା-ଭୂଷଣ ସମ୍ପତ୍ତି ଫାଇବ ତା ଉପରେ ଯାଇ ଆରୋହ ।
କେ କାହାକୁ କହେ ମୋହପାଇଁ ସଖି ରଖିଥିବୁ ଏକା କରୁଣା
ଦେବବଲ୍ଲଭକୁ ଲଭିବାକୁ ତୋତେ ବିଧାତା କଲାଣି ପୂରୁଣା
ସେ ଶୁଣି, ବୋଇଲା ଏକଥା ଗୁଡ଼ରେ
ଖୋଜିଲେ ନପାଇ ମୁଁ ବନ୍ଧୁଜୀବକୁ ପଡ଼ିଲି ବିରହଦାଉରେ ॥’

(୫।୧୦—୧୨)

ଏହି ଛାନ୍ଦରେ ନାରୀମାନଙ୍କର ଅଖାରକ୍ରୀଡ଼ାକାଳୀନ ଶୋଭା ବର୍ଣ୍ଣନା କବିଙ୍କ ଅପୂର୍ବ କଳ୍ପନାଶକ୍ତି ତଥା ବର୍ଣ୍ଣନାନୈପୁଣ୍ୟର ପରିଚାୟକ । ଯଥା—

"ମୁଠାରୁ ଫିଟି ଯିବାରେ ଏ ପ୍ରଶାନ୍ତ ପଙ୍ଗୁ ମିର୍ଗି ବାଟରେ ଲଜ୍ଜନା
ବସନ୍ତରାଜା ବଶକୁ କି କରନ୍ତି ରଙ୍ଗ ପାଠରେଳ ଗୃଜନା
ସେ ରଜ, ଯାଇ ଶୂନ୍ୟେ ଚୂର୍ଣ୍ଣି ହୋଇଲ
ଅତ୍ୟନ୍ତ ଚୂର୍ଣ୍ଣିକ ଦିଗପଟକର ମାଣିକ୍ୟ ଛବି କି ଧଇଲ ॥

× × ×

ରମଣୀ ରମଣୀପ୍ସୁ କଲେ ଅବୀରଗୁଣ୍ଡିରେ ସେ ବନସରଣୀ
ମନ୍ମଥମହିଳା ରତିଭୂଲାକ ଲଭିଲ ଏସନ ମାନସକୁ ଆଣି ।
ସେ ଧୂଳି, କାହିଁ ପବନ ଯୋଗେ ଉଡ଼ି
ଶୁଭ ସୂଚକ କହି ଜଉଡ଼ିଷ କି ଯାଉଛି ଶିରେ ବାନ୍ଧି ଶାଢ଼ୀ ॥
ପନୀର ନୀର ପିଚକା ନିରନ୍ତର ଖେଳନ୍ତେ ମୀରରୁହଦୃଶା
ମଞ୍ଜୁ ମଞ୍ଜୀର ଘନରବ ମଧୁର ବସନ୍ତେ କରେ କି ବରଷା
ବିଜୁଳି, ପରି ଝଳଭୂଷା ରତନ
ଅଙ୍ଗରାଗେ ଅଭ୍ର ଭଙ୍ଗ ଉଡ଼ିପଡ଼େ ହୋଏ କି କରକା ପତନ ॥
କୁଙ୍କୁମ ପିଚକା ବାଜି ଜରଜର ସୁନ୍ଦର ଉରଜ କାହାର
କନକାଚଳରୁ କିବା ହରିତାଳ ପ୍ରବାହ ହେଉଛି ବାହାର
କର୍ପୂର, ଗୁଣ୍ଡି ମଣ୍ଡିତ କାହା ସ୍ତନ
ସୁବର୍ଣ୍ଣ ସ୍ଵୟମ୍ଭୁ ଶମ୍ଭୁଯୁଗଳ କି ହୋଇଲେ ଭସ୍ମବିଲେପନ ।

× × ×

କାହା ଲଲାଟୁ ସିନ୍ଦୂର ବହି ପଡ଼େ ସ୍ୱେଦ ହୋଇବାରୁ ଜନିତ
କେଶରାହୁ ଦନ୍ତଘାତରୁ ବ୍ୟକତ ଇନ୍ଦୁଦେହରୁ କି ରକତ ।
ସେ କାଳେ, ଅଭ୍ର ଚଞ୍ଚଳ ନେତ୍ରଗତ
ଦିଗଧରକୁ କି ଶ୍ୟାମଳ କୋମଳ କମଳେ ମଣ୍ଡନ୍ତି ଯୁବତୀ ॥"

(୫।୧୯—୨୭)

ସମଗ୍ର କାବ୍ୟ ମଧ୍ୟରୁ କବିଙ୍କ ବର୍ଣ୍ଣନାକଳାପ, ସୌନ୍ଦର୍ଯ୍ୟଚେତନା ତଥା ବିଚିତ୍ର କଳ୍ପନାଶୃଙ୍ଖଳା-ପ୍ରତିପାଦକ ଏହିପରି ବହୁ ଅଂଶ ଉଦ୍ଧାର କରି ଯାଇପାରେ । ଷଷ୍ଠଛାନ୍ଦର ସରୋବରବର୍ଣ୍ଣନା ଓ ୨୪ଶ ଛାନ୍ଦର ବନ ବର୍ଣ୍ଣନା

ପାଠ କଲେ ଭଞ୍ଜୀୟ କାବ୍ୟକଳାର ବୈଚିତ୍ର୍ୟ ମାନସରେ ଅବଧାରଣ କରାହେବ।
ଏତଦ୍ ବ୍ୟତୀତ ଚତୁର୍ଥ ଛାନ୍ଦର ନବମ ବର୍ଣ୍ଣନା, ଏକାଦଶ ଛାନ୍ଦର ସ୍ୱପ୍ନ ଦର୍ଶନ ପ୍ରସଙ୍ଗ ବର୍ଣ୍ଣନା, ଦ୍ୱାଦଶ ଛାନ୍ଦ, ତ୍ରୟୋଦଶ ଛାନ୍ଦ, ସପ୍ତଦଶ ଛାନ୍ଦ, ଦ୍ୱାବିଂଶ ଛାନ୍ଦ, ପଞ୍ଚବିଂଶ ଛାନ୍ଦ, ଅଷ୍ଟବିଂଶ ଛାନ୍ଦ, ଊନବିଂଶ ଛାନ୍ଦ, ଦ୍ୱାତ୍ରିଂଶ ଛାନ୍ଦ, ଷଟ୍ତ୍ରିଂଶ ଛାନ୍ଦ ପ୍ରଭୃତି ମଧ୍ୟ ବିଭିନ୍ନ ବର୍ଣ୍ଣନା ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ । ଏଥିରେ ସଂସ୍କୃତ ମହାକାବ୍ୟର ସମସ୍ତ ଲକ୍ଷଣ ପୂରିରହିଛି । ବର୍ଣ୍ଣନାବିଳାସ ଓ କଳ୍ପନାବିଳାସ, ଶବ୍ଦ ପ୍ରୟୋଗ ଚାତୁରୀ, ଆଳଙ୍କାରିକତା ଏବଂ ରସ ପରିବେଷଣ ଦୃଷ୍ଟିରୁ 'ଲାବଣ୍ୟବତୀ' ସଂସ୍କୃତ ସାହିତ୍ୟର ଯେକୌଣସି ଉଚ୍ଚାଙ୍ଗ ମହାକାବ୍ୟ ସହିତ ତୁଳନୀୟ ।

## (୨) କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ :

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଲୋକୋତ୍ତର ପ୍ରତିଭାର ଯଥାର୍ଥ ପରିଚାୟକ । ଏହା ମଧ୍ୟ 'ଲାବଣ୍ୟବତୀ' ତୁଲ୍ୟ ଏକ କାଳ୍ପନିକ କାବ୍ୟ ଏବଂ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ନାମାନୁସାରେ କାବ୍ୟଟିର ନାମକରଣ କରାଯାଇଛି । ସମଗ୍ର କାବ୍ୟଟି ପଞ୍ଚଷଷ୍ଠି ଛାନ୍ଦରେ ଶେଷ ହୋଇଛି । ଚମ୍ପାନଗରୀର ରାଜକୁମାରୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏବଂ ପୁଷ୍ପପୁର (ପାଟଳୀପୁତ୍ର) ରାଜକୁମାର ପୁଷ୍ପକେତୁଙ୍କ ବିବାହ ପ୍ରସଙ୍ଗକୁ ନେଇ କାବ୍ୟଟିର ବିଷୟ କଳ୍ପିତ ହୋଇଛି । ପାଣ୍ଡିତ୍ୟପୂର୍ଣ୍ଣ ରଚନାଶୈଳୀ, ବର୍ଣ୍ଣନାଚାତୁରୀ ତଥା ବିଚିତ୍ର କଳ୍ପନା-ଚାତୁରୀ ଦୃଷ୍ଟିରୁ ଏହା ସଂସ୍କୃତ ସାହିତ୍ୟର ବିଖ୍ୟାତ 'ନୈଷଧକାବ୍ୟ' ସହିତ ତୁଳନୀୟ । ସେଥିପାଇଁ କବି ଉକ୍ତ କାବ୍ୟରେ କହିଛନ୍ତି—

"ଯେଉନ ନୈଷଧ ପରାୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।"

କାବ୍ୟର ପ୍ରଥମ ଛାନ୍ଦରେ କବି ଦେବାଦେବ ଶ୍ରୀ ଜଗନ୍ନାଥଙ୍କ ମହିମା ବର୍ଣ୍ଣନା କରିବା ମନୋରଥଙ୍କ ଅତି ଚମତ୍କାର ରୀତିରେ ସ୍ନାନଯାତ୍ରାର ଚିତ୍ର ଦେଇଛନ୍ତି । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ରଚନା କରିବା ନିମିତ୍ତ କବି ଶ୍ରୀ ଜଗନ୍ନାଥଙ୍କ ଆଶୀର୍ବାଦ କାମନା ପୂର୍ବକ ଲେଖିଛନ୍ତି—

"ମହିମା ଅନନ୍ତ ପ୍ରଭୋ ମହିମା ଅନନ୍ତ
ମନୋବାଞ୍ଛା ସହୋଦର ହୋଇ ଯାର ଖ୍ୟାତ ହେ ।

ଅର-ଦର-କର ବନ୍ଦେ ଅରି-ଦର ଜଗ
ଯୁଗ ଯୁଗେ ଧରି ନାନାବିଧ ଅବତାର ହେ ।
ବିଭୀଷଣ ଅଘ ବିଭୀଷଣ-ଅଘହାର
ସ୍ଥାନ କରିଦେଲ ଲଙ୍କା ନିଜ କିନେବର୍ଗି ହେ ;
ଭବ-ବିରଞ୍ଚି-ପୂଜିତ ହେ ଭବ-ବିରଞ୍ଚି
ଶୁଚି-କବିଜନ ସଦାନନ୍ଦ ସଦା ଶୁଚି ହେ ।
ରଚିବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଚରିତ
ସୁଜାତି ସୁମନା ପରି ହୋଇବ ଏ ଗୀତ ହେ ।

× × ×

କବି ଉପେନ୍ଦ୍ର ତବ କୃପାରେ ହୋଇଛି
ଏଥେ ମନୋରଥ ସାର୍ଥେ କି ସଂଶୟ ଅଛି ହେ ।
(୧/୫୭—୬୩ପଦ)

ଦ୍ୱିତୀୟ ଛାନ୍ଦରେ ଚମ୍ପା ନଗରୀର ବର୍ଣ୍ଣନା, ତୃତୀୟ ଛାନ୍ଦରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବାଲ୍ୟ, ପୌଗଣ୍ଡ ଓ ଯୌବନାବସ୍ଥା ବର୍ଣ୍ଣନା ଏବଂ ଚତୁର୍ଥ ଛାନ୍ଦରେ ସନ୍ନିବେଶିତ ପୁଷ୍ପପୁର ନଗର ବର୍ଣ୍ଣନା ପାଠକଲେ କବିଙ୍କ ପ୍ରତିଭା ଓ ପାଣ୍ଡିତ୍ୟ ନିକଟରେ ମସ୍ତକ ସ୍ୱତଃ ଅବନତ ହୋଇଯାଏ । ତନ୍ମଧ୍ୟରୁ କେତେକ ବିଖ୍ୟାତ ଅଂଶ ନିମ୍ନରେ ଉଦ୍ଧାର କରାଗଲା—

## (କ) ଚମ୍ପା ନଗରୀର ବର୍ଣ୍ଣନା :

ଚମ୍ପା ସେ ରସା-ଯୋଷା ଶିରେ ବନ୍ଧି
ଶିବ ତହିଁରେ ଗୁରୁତର ସ୍ନେହୀ ।
ଜନ ମନୋହର ସୁବାସ ଅଛି
ଭ୍ରମର ଅବଲମ୍ବ ନାହିଁ କଛି ।
ଦେଖିବାରୁ ଯାହା ରୁଚିର ରୁଚି
ଶଙ୍କା ଲଭି ଲଙ୍କା ଅଳକା କାଞ୍ଚି ।
ତରୁ ତରୁଣୀରେ ଶରଣ ଭଜି
କମ୍ପ ସ୍ତମ୍ଭ ଉଭା ତେବେ ନ ତେଜି ।
ବଡ଼ଭି ବଡ଼-ଧୀ ଜନମ କରେ,
ହରହସ୍ତ ହରହସ୍ତ ଚତ୍ୱରେ ।”

× ×

(୨/୨-୪)

## (ଖ) ପୁଷ୍ପପୁର ବର୍ଣ୍ଣନା :

ରାଜଧାନୀ ପୁଷ୍ପପୁର, ସହଜେ କୁନ୍ତଳପର ।
ଶୈଳ କାଞ୍ଚୀ ତାର ତଳ, ଏତେ ମଞ୍ଜୁଳ ସେ ॥

× ×

ନାନା ରତ୍ନ ପ୍ରଭା ଧରି, ନଭ ଚହବାନ୍ତି ସରି ।
ଦେଖାଇବେ କେଉଁ ଜ୍ୟୋତି, ତାରକାପନ୍ତି ଯେ ॥
ପ୍ରଭାହୀନ ପ୍ରଭାକର, ହିଙ୍ଗୁଳୀ କୁଟୁକ୍ମ ପାର ।
ଉଡ଼ାଇ କାକଡ ଟେକି, ଏମନ୍ତ ତର୍କି ଯେ ॥
ଜଗତ୍ତ-ବିଳାସୀ ରମା, ସନ୍ନିଧେ ଯାଉ ଚନ୍ଦ୍ରମା
ଭାବନ୍ତି ସେ ଆଦରଣ ହୀନ ପାରସ ଯେ ॥
ତୋରଣୀ ବିବିଧ ରତ୍ନେ ପ୍ରାସାଦେ ଖଞ୍ଜିତ ଯତ୍ନେ ।
ବଲ୍ମୀକରେ ଇନ୍ଦ୍ରଗୃହ, ଜାତ ସ୍ୱରୂପ ସେ ॥

(୪/୭—୧୩)

ତୃତୀୟ ଛାନ୍ଦରେ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଯୌବନ ଉଦ୍‌ଗମ-କାଳୀନ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଯେଉଁ ହରିଲୀଳାର ଚିତ୍ର ଉପସ୍ଥାପନା କରିଛନ୍ତି, ତାହା ବାସ୍ତବରେ ଏକାନ୍ତ ହୃଦ୍ୟ ହୋଇଛି । ଯଥା--

"କଲି କି ସୃଷ୍ଟି କଣ୍ଠି ନ ହୁଡ଼ିଲ, ହରିଲୀଳା ଏ ରୂପେ ନବାଡିଲ ।
ସୁଗ୍ରୀବରେ ଯେ ଚନ୍ଦନ ମିଶ୍ରିତ, ରାମ ଲକ୍ଷ୍ମଣ ମୁଖେ ପ୍ରଶଂସିତ ॥
ପ୍ରକାଶିତ ଚନ୍ଦ୍ରହାସ ଝଲକ, ମନ୍ଦୋଦରୀ-ବର ଶକ୍ତି-ତିଳକ
ମେଘନାଦ ଶିଖା ଲକ୍ଷ୍ୟ ଝଲକ, ଦକ୍ଷ ଧରି ସେ ସୁମନାବଳୀକ ॥
ସଦା ଅଙ୍ଗଦ ବାହୁରେ ବିହରେ, କୁଚ-କୁମ୍ଭ ଉନ୍ନତ ଚିତ୍ତ ହରେ ।
ଏଣୁ କରି ପୁଷ୍ପ-ଲଙ୍କା କମ୍ପନ, ଏତ କଳ୍ପନ କଥା ଉଦ୍ଦୀପନ ॥
ନେତ୍ରେ ସୁଭଦ୍ରତ ହେବା କହୁଛି, କୃଷ୍ଣ ଅର୍ଜ୍ଜୁନ ରଙ୍ଗ କରାଇଛି ।
ଗୁଣ ଅଞ୍ଜନ କପାଳ କମାଣ, ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ ॥
କର୍ଣ୍ଣ ବଜ୍ରମଲ୍ଲୀ କଟି ବହିଲ, ସୁତାଟଙ୍କ ଆଡ଼ଣୀରେ ଶୋହିଲ ।
ଦ୍ରୋଣସୁତ ଉତ୍ତର ହିଁ ବିଖ୍ୟାତ, କଳ୍କି ଉପଲକ୍ଷଣା ସାକ୍ଷାତ ॥

(୮/୧୪—୧୯)

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ୨୦ଶ ଓ ୨୫ଶ ଛାନ୍ଦ କବିଙ୍କ ପାଣ୍ଡିତ୍ୟ ଓ ଶବ୍ଦ ପ୍ରୟୋଗ ଦୃଷ୍ଟିରୁ ଦୁଇଟି ଉଲ୍ଲେଖଯୋଗ୍ୟ ଅଂଶ । ଏହି ଦୁଇଟି ଛାନ୍ଦରେ କବି ଯେଉଁ ଶାବ୍ଦିକ କଳାକୌଶଳ ପ୍ରଦର୍ଶନ କରିଛନ୍ତି, ତାହା ସମଗ୍ର ଭାରତୀୟ ସାହିତ୍ୟରେ ଏକାନ୍ତ ଦୁର୍ଲ୍ଲଭ । ବିଂଶଛାନ୍ଦକୁ 'ଶୁକ-ସାରିକା 'ଉକ୍ତିପ୍ରତ୍ୟୁକ୍ତି ଛାନ୍ଦ' ବୋଲି କୁହାଯାଇଥାଏ । ଏଥିରେ ଶ୍ଳେଷାତ୍ମକ ଭାବରେ ନାୟକ ପୁଷ୍ପକେତୁ ଓ ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଛି । ଅର୍ଥାତ୍ ଉକ୍ତ ଛାନ୍ଦର ପ୍ରତ୍ୟେକ ପଦକୁ 'କଳହଂସ କେଦାର' ରାଗରେ ଗାନକଲେ ପୁଷ୍ପକେତୁଙ୍କ ସୌନ୍ଦର୍ଯ୍ୟ ଓ ସେହି ପଦଟିକୁ ପୁନର୍ବାର ଭୂପାଳ ରାଗରେ ଗାନ କଲେ କୋଟି-ବ୍ରହ୍ମାଣ୍ଡସୁନ୍ଦରୀଙ୍କ ସୌନ୍ଦର୍ଯ୍ୟ ପ୍ରକଟିତ ହେବ । ଦୃଷ୍ଟାନ୍ତ ସ୍ୱରୂପ ଗୋଟିଏ ପଦ ଏଠାରେ ଉଲ୍ଲିଖ ପୂର୍ବକ ତାହାର ଅର୍ଥ ପ୍ରତିପାଦନ କରାଯାଉଛି—

"ନାଗରମଣିସାର ଶୂର-ଶ୍ରୀ-ଧାମ
ନାହିଁ ଶ୍ରୁତିରେ ତାହା କୀରତି ସମ ।
ସୁନା ସାଦୃଶ କାନ୍ତି କି ମନୋରମ
କାମିନୀଚୟ ଧୈର୍ଯ୍ୟ ହରିବାକୁ କ୍ଷମ ଯେ ॥"

(୨୦/୨)

**ପୁଷ୍ପକେତୁ ପକ୍ଷରେ ଅର୍ଥ** :—ସେହି ରାଜପୁତ୍ର ଶ୍ରେଷ୍ଠ ନାଗର ଅଟନ୍ତି । ଶ୍ରେଷ୍ଠ ବୀରମାନଙ୍କ ମନରେ ଭୀତିସଞ୍ଚାରକାରୀ । ତାହାଙ୍କ କୀର୍ତ୍ତି ତୁଲ୍ୟ କୀର୍ତ୍ତି ବେଦରେ ମଧ୍ୟ ବର୍ଣ୍ଣିତ ହୋଇନାହିଁ । ତାଙ୍କର ସୁନାସା ଓ ଦୃଶ (ଚକ୍ଷୁ)ର କାନ୍ତି ଅତି ମନୋରମ । ସେ କାମିନୀମାନଙ୍କର ଧୈର୍ଯ୍ୟ ହତ କରିବାକୁ ସକ୍ଷମ ଅଟନ୍ତି ।

**କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପକ୍ଷରେ ଅର୍ଥ** —ରାଜକନ୍ୟା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ନାଗ କନ୍ୟାମାନଙ୍କଠାରୁ ମଧ୍ୟ ଶ୍ରେଷ୍ଠା ଅଟନ୍ତି । ସେ ସୁରଭି (ସୁଗନ୍ଧି)ର ସ୍ଥାନ ଏବଂ ତାହାଙ୍କ ପରି ସୁନ୍ଦରୀ ନାରୀ ଅଛନ୍ତି ବୋଲି ଆଉ କର୍ଣ୍ଣରେ ମଧ୍ୟ ଶୁଣାଯାଇ ନାହିଁ । ତାହାଙ୍କ ସହିତ ରତି ମଧ୍ୟ ସମାନ ହୋଇ ପାରିବ ନାହିଁ । ତାଙ୍କର ଶରୀର ସ୍ୱର୍ଣ୍ଣ ତୁଲ୍ୟ ଅତି ମନୋରମ କାନ୍ତି ଧାରଣ କରିଛି । ସେ କାମୀପୁରୁଷମାନଙ୍କର ଧୈର୍ଯ୍ୟଚ୍ୟୁତ ଘଟାଇବାକୁ ସମ୍ପୂର୍ଣ୍ଣ କ୍ଷମ ।

ସମଗ୍ର ଛାନ୍ଦଟିରେ ଏହି ବୈଶିଷ୍ଟ୍ୟ ଦେଖିବାକୁ ମିଳେ ।

ଛାନ୍ଦବିଂଶ ଗ୍ରନ୍ଥଟି 'କାମୋଦୀ' ରାଗରେ ରଚିତ । ଏହାକୁ ପାଠକଲେ ବର୍ଷାଋତୁର ବର୍ଣ୍ଣନା ପ୍ରକଟିତ ହେବ । ଏହାର ପ୍ରତ୍ୟେକ ପାଦର ଆଦ୍ୟ ଅକ୍ଷର ଚ୍ୟୁତ କରି 'କାଫିକାମୋଦୀ' ରାଗରେ ଗାନକଲେ, ଶୀତକାଳ ଏବଂ ପ୍ରତ୍ୟେକ ପାଦର ପ୍ରଥମ ଓ ଦ୍ୱିତୀୟ ଅକ୍ଷର ବାଦ୍ ଦେଇ 'ମାଳବଗଉଡ଼' ରାଗରେ ଗାନ କଲେ, ଗ୍ରୀଷ୍ମକାଳର ବର୍ଣ୍ଣନା ପ୍ରକାଶ ପାଇବ । ଯଥା—

> ଅସାର ସଘନ କାଳ ହୋଇ ଉଦୟ ।
> ଅସିତ ବରବଳରୁ ଦରଶମୟ ॥ (୨୫/୨)

**ପ୍ରଥମ ଅର୍ଥ—ବର୍ଷାକାଳ**—ଆସାର (ଧାରାପାତ) ସଘନ (ନିବିଡ଼) ହେବା କାଳ (ବର୍ଷାକାଳ) ଉଦୟ ହେଲା । ଅସିତ (କୃଷ୍ଣବର୍ଣ୍ଣ) ପ୍ରବଳ ହେବାରୁ ଦରଶମୟ (ଅମାବାସ୍ୟା ପରି ଅନ୍ଧକାରମୟ) ହେଲା ।

**ଦ୍ୱିତୀୟ ଅର୍ଥ—ଶୀତକାଳ**— ସାରସଘନ (ସାରସ ଘନ—ପଦ୍ମ-ନାଶକାରୀ) କାଳ (ଶୀତଋତୁ) ଉଦୟ ହେଲା । ଶୀତ ପ୍ରବଳରୁ ସବୁ ଦର (ଶଙ୍ଖ) ପରି ଶୁକ୍ଳ ଦେଖାଗଲା ।

**ତୃତୀୟ ଅର୍ଥ— ଗ୍ରୀଷ୍ମକାଳ**—ଘନ (ଜଳନାଶକ) କାଳ (ଗ୍ରୀଷ୍ମଋତୁ) ଉଦୟ ହେଲା । ତପର (ଗ୍ରୀଷ୍ମର) ବଳରୁ ଦର (ଭୟର) ସମୟ ହେଲା ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଏକ ବୈଶିଷ୍ଟ୍ୟଭରା କାବ୍ୟ । ଏଥିରେ କବିଙ୍କ ପ୍ରତିଭା ଓ ପାଣ୍ଡିତ୍ୟର ଯଥାର୍ଥ ସ୍ୱରୂପ ଉପଲବ୍ଧ ହୋଇଥାଏ ।

## (୩) ପ୍ରେମସୁଧାନିଧି :

କବିସମ୍ରାଟ ଭଞ୍ଜଙ୍କର ଏହି କାବ୍ୟଟି ଆକାରରେ 'ଲାବଣ୍ୟବତୀ' ଓ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଅପେକ୍ଷା ଯଥେଷ୍ଟ କ୍ଷୁଦ୍ର ହେଲେ ମଧ୍ୟ ଉକ୍ତ ଉଭୟ କାବ୍ୟ ତୁଲ୍ୟ ଲୋକପ୍ରିୟତା ଅର୍ଜନ କରିଛି । ଏହା ମଧ୍ୟ ଏକ କାଳ୍ପନିକ କାବ୍ୟ । ନାୟିକା ପ୍ରେମ ସୁଧାନିଧିର ନାମାନୁସାରେ କାବ୍ୟଟିର ନାମକରଣ ହୋଇଛି । ସମୁଦାୟ ୧୭ ଗୋଟି ଛାନ୍ଦରେ କବି ଏହାକୁ ଶେଷ କରିଛନ୍ତି । ଏ ପ୍ରସଙ୍ଗରେ ବିଚାର କରିବା କଥା ଯେ, 'ସୁଧାନିଧି'ର ଅର୍ଥ ହେଉଛି ଚନ୍ଦ୍ର । ଚନ୍ଦ୍ର ବିଷୟକ ଆଲୋଚନା ପ୍ରସଙ୍ଗରେ ଷୋଡ଼ଶ କଳା ବିଷୟ ପ୍ରତିପାଦନ କରାଯାଇଥାଏ । ଏହି

ଦୃଷ୍ଟିରୁ କବି ୧୬ ଛାନ୍ଦରେ କାବ୍ୟଟିକୁ ଶେଷ କରିଥିବା ଅନୁମିତ ହୁଏ । କେରଳ ରାଜକୁମାରୀ ପ୍ରେମ ସୁଧାନିଧି ଓ କୋଶଳ ରାଜକୁମାରଙ୍କ ପ୍ରସଙ୍ଗକୁ ନେଇ କାବ୍ୟର ବିଷୟ କଳ୍ପନା କରାଯାଇଛି ।

ପ୍ରଥମ ଛାନ୍ଦରେ କବି ନିଜର ଆରାଧ୍ୟ ଦେବ ରାମଚନ୍ଦ୍ରଙ୍କୁ ସ୍ତୁତି କରି ଲେଖିଛନ୍ତି—

"କୁ-ମୁଦ କୁମୁଦ ବନ୍ଧୁ ଯଶ ଉଦିତ
ଜନକ ଜନକ ତୋଷ କରେ ବିଦିତ ।
ଅନନ୍ତ ଅନନ୍ତ ଯାହା ମହିମାମାନ
ଜଗତ ଜଗତରେ ଯା ଲୀଳାରଚନ ।
ସୀତା ଶୀତାମ୍ବୁଜମୁଖ ମତ୍ତ ଭ୍ରମର
ରାମ ରାମ କଦଳୀ କମ୍ପନେ ସମୀର ।
ଲକ୍ଷ୍ମଣ ଲକ୍ଷଣବନ୍ତ ଯା ପାଦେ ସେବେ
ଭଞ୍ଜି ଭଞ୍ଜିବାରବର ସନ୍ତାପ ଏବେ ।"

(୧/୧—୪)

ସମଗ୍ର ପ୍ରଥମ ଛାନ୍ଦଟି ଆଦ୍ୟ ଯମକ ଅଳଙ୍କାରରେ ରଚିତ । କାବ୍ୟଟିର ବିଭିନ୍ନ ଛାନ୍ଦରେ ଅନୁପ୍ରାସ, ଯମକ, ରୂପକ, ବିରୋଧାଭାସ, ଅବନା, ସିଂହାବଲୋକନ, ଶୃଙ୍ଖଳା, ଲୋମବିଲୋମ, ସଓଷ୍ଠକ, ନିରୋଷ୍ଠକ, ପୁନରୁକ୍ତବଦାଭାସ, ଦତ୍ତାକ୍ଷର, ଚ୍ୟୁତାକ୍ଷର ଓ ଦତ୍ତଚ୍ୟୁତାକ୍ଷର ଇତ୍ୟାଦି ଅଳଙ୍କାର ଦେଖିବାକୁ ମିଳେ । ଏହି ଦୃଷ୍ଟିରୁ ସଂସ୍କୃତସାହିତ୍ୟର 'କିରାତାର୍ଜ୍ଜୁନୀୟମ୍' 'ଶିଶୁପାଳ ବଧ' ଓ 'ନୈଷଧ' କାବ୍ୟ ସହିତ ଏହା ତୁଳନୀୟ ।

'ପ୍ରେମସୁଧାନିଧି'ର ପଞ୍ଚଦଶ ଛାନ୍ଦଟି ଏ ପ୍ରସଙ୍ଗରେ ଉଲ୍ଲେଖ ଯୋଗ୍ୟ । ଏହା 'ଲୋମବିଲୋମ' ରୀତିରେ ରଚିତ । ଅର୍ଥାତ୍ ସମଗ୍ର ଛାନ୍ଦଟିକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପାଠ କଲେ ଯାହା ହେବ, ଶେଷ ଛାନ୍ଦରୁ ଓଲଟାଇ ପଢିଲେ ଅବିକଳ ତାହା ହେବ । ଉଦାହରଣତଃ -

ରବର ବିହେ କଷ୍ଟ ସୁଙ୍କାର ତୋ ସରେଷ
ରସଦା ଦରବ ଭୁହି ନାଶ ଧ୍ରାଣେ ରସ ॥

× × ×

ଶରଦେ ପ୍ରାସଂ ନାହିଁ ତୁ ବରଦ ଦାସର
ସଂଗୋଷ ଚିତ୍ତାର କ ସୁଷ୍ଠୁ କନ୍ଦେ ଗାରବର ॥'' (୧୪।୧,୨୦)

ଏଠାରେ ଶେଷ ପଦଟିକୁ ଓଲଟାଇ ପଢ଼ିଲେ ପ୍ରଥମ ପଦ ଏବଂ ପ୍ରଥମ ପଦଟିକୁ ଓଲଟାଇ ପଢ଼ିଲେ ଶେଷ ପଦ ହେବ । 'ଲୋମବିଲୋମ'ର ଏହିପରି ଦୃଷ୍ଟାନ୍ତ ସଂସ୍କୃତ ସାହିତ୍ୟରେ ମଧ୍ୟ ବିରଳ ।

ଅଳଙ୍କାର ପ୍ରୟୋଗ ଦୃଷ୍ଟିରୁ ଷୋଡ଼ଶ ଛାନ୍ଦ ମଧ୍ୟ ଅନ୍ୟ ଏକ ଉଲ୍ଲେଖ-ଯୋଗ୍ୟ ଅଂଶ । ଏଥିରେ ପୁନରୁକ୍ତବଦାଭାସ, ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର, ଏକାକ୍ଷର, ସଂଗୋପ୍ଯକ, ନିଗୋପ୍ଯକ ଓ ମହାଯମକ ପ୍ରଭୃତି ଅଳଙ୍କାର ସମାବେଶିତ ହୋଇଛି ।

ଏହି କାବ୍ୟର ସପ୍ତମ (ରସିକ ହୃଦୁର କରେ), ନବମ (ମାଳବେ ହିମରତ୍ନ ଲୋକନ କରି) ଓ ଚତୁର୍ଦ୍ଦଶ (ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜି) ଛାନ୍ଦ ଓଡ଼ିଶାର ପୂରପଲ୍ଲୀରେ ବିଶେଷ ଲୋକପ୍ରିୟତା ଅର୍ଜ୍ଜନ କରିଛି ।

ଓଡ଼ିଶାର ବୋଡ଼ିଜଣ ପ୍ରବୀଣ ଆଲୋଚକ ଓ ଗୁନ୍ଦାର୍ଥୀ 'ପ୍ରେମ-ସୁଧାନିଧି'ରେ 'ପ୍ରଶ୍ନୋପନିଷଦ'ର ତତ୍ତ୍ୱ ପ୍ରତିଫଳିତ ହୋଇଛି ବୋଲି ମତ ପ୍ରକାଶ କରିଥାନ୍ତି (୧୮) । ଭଞ୍ଜକବିଙ୍କ ପ୍ରତିଭା କଳନା ତଥା ତାହାଙ୍କ କବିତ୍ୱଗୌରବ ପ୍ରତିପାଦନ ଦୃଷ୍ଟିରୁ ଏହା ସମାଲୋଚକମାନଙ୍କର ଏକ ଅଭିନନ୍ଦନୀୟ ପଦକ୍ଷେପ । ଏହି ଦୃଷ୍ଟିରୁ କେବଳ ଭଞ୍ଜୀୟ ସାରସ୍ୱତ-ସମ୍ଭାର ନୁହେଁ, ସମଗ୍ର ଓଡ଼ିଆ ସାହିତ୍ୟରେ 'ପ୍ରେମସୁଧାନିଧି' ଏକ ବଶିଷ୍ଟ ସ୍ଥାନର ଅଧିକାରୀ ।

## (୪) ରସିକ ହାରାବଳୀ—

ଏହା ମଧ୍ୟ କବିଙ୍କର ଏକ କାଳ୍ପନିକ କାବ୍ୟ । ନାୟିକାର ନାମାନୁସାରେ କାବ୍ୟର ନାମକରଣ ହୋଇଛି । ରସିକ ହାରାବଳୀ ସହିତ କୋଶଳ ଦେଶର ରାଜକୁମାରଙ୍କ ବିବାହ ପ୍ରସଙ୍ଗ ଏଥିରେ ବର୍ଣ୍ଣିତ ହୋଇଛି । ସମୁଦାୟ ୧୫ ଗୋଟି ଛାନ୍ଦରେ କାବ୍ୟର ପରିସମାପ୍ତି ଘଟିଛି ।

---

(୧୮) ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ଲିଖିତ 'ଭଞ୍ଜଭୂମିକା' ଗ୍ରନ୍ଥର ପୃଷ୍ଠା ୨୨୪ ଠାରୁ ୨୩୧ ଦ୍ରଷ୍ଟବ୍ୟ

ପ୍ରଥମ ଛାନ୍ଦରେ କବି ଶ୍ରୀଜଗନ୍ନାଥଙ୍କୁ ସ୍ତୁତିକରି ଲେଖିଛନ୍ତି—

"ଜୟ ଜୟ ଜଗନ୍ନାଥ ଦାରୁ ରୂପଧାରୀ
ନୀଳ ଗିରୀଶ ଗିରିଶ ବନ୍ଦନୀୟ ହରି ।
ମହାବଳ ବଳ ଅବରଜ ଭଦ୍ରାଗ୍ରଜ
ଗରୁଡ଼ାସନ ସନକପୂଜ୍ୟ ଚତୁର୍ଭୁଜ ।
ନୀରଦ ସୁନ୍ଦର ଦରହର ହରଷଦ
ଶମନ ମନରେ ଜାତ କର ମହାଖେଦ ।"

(୧/୧—୩)

କାବ୍ୟ ଓ କାବ୍ୟନାୟିକାର ନାମ ହେଉଛି 'ରସିକ ହାରାବଳୀ' । 'ରସିକ' ଶବ୍ଦର ସାର୍ଥକତା ସଂପାଦନ ନିମିତ୍ତ କବି କାବ୍ୟ ମଧ୍ୟରେ 'ରସସାର' ଶୃଙ୍ଗାରର ସମାବେଶ ଘଟାଇଛନ୍ତି । ଏ ପ୍ରସଙ୍ଗରେ କାବ୍ୟର ପ୍ରଥମ ଛାନ୍ଦରେ ସେ ଲେଖିଛନ୍ତି—

"ବିସ୍ତରଇ କରିବି ଉତ୍ତମ ଛାନ୍ଦ ଗୀତ
ରସସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ ।
ଅନୁଭବରୁ ପ୍ରଖ୍ୟାତ ମାନସ ରଚନା
ଶୁଣ ସୁରସିକମାନେ ହୋଇଣ ସୁମନା ।"

(୧/୫,୬)

ତୃତୀୟ ଛାନ୍ଦରେ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀ ଜଗନ୍ନାଥଙ୍କର ଚନ୍ଦନ-ଯାତ୍ରା ବର୍ଣ୍ଣିତ ହୋଇଛି । ତାହା ପାଠକଲେ, କବିଙ୍କ ଭକ୍ତିମତ୍ତା, ବର୍ଣ୍ଣନାନୈପୁଣ୍ୟ ଓ କଳ୍ପନାନୈପୁଣ୍ୟ ବିଷୟରେ ମନରେ ସ୍ପଷ୍ଟ ଧାରଣା ସୃଷ୍ଟି ହୁଏ । ପ୍ରସଙ୍ଗକ୍ରମେ ତହିଁରୁ କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି—

"ନରେନ୍ଦ୍ର ତଡ଼ାଗେ କଶ୍ୟପେ ସୁରେନ୍ଦ୍ର ପରି ହରି
ନାବରେ ଭାବରେ ବିଜୟ କରି ସୁଖେ ବିହରି ।
ପଛେ ରହି ସ୍ୱପକ୍ଷେ ବରହିପୁଚ୍ଛେ ଦ୍ୱିଜେ ସେବନ୍ତି
ରଞ୍ଜନ ବ୍ୟଜନ ସଜ୍ଜନ କରେ ଧରି ବିଞ୍ଚନ୍ତି ।

"ହଂସାର ସାର୍ ଘନସାର ପିଚକା କେ ମାରଇ
କ୍ଷୀରନଧ୍ୱ ଧୀର ଲହରୀ ପର ଶୁମର ଶୋହଇ ।
ତରସେ ତରସେ ଦୁଷ୍ଟଙ୍କୁ ନାନା ପାପ ସ୍ମରଣି
ଚନ୍ଦ୍ର ନର୍ମିତ ଚନ୍ଦ୍ର ସୂର୍ଯ୍ୟ ଡାରେ ଡାରେ ପ୍ରକାଶି ।
ପ୍ରବଳ ଶୋଭନ ଧବଳ ଛନ ବର୍ଣ୍ଣି ନ ହଇ
ଦଳରେ କବଳ ଧବଳକର ଶୋଭା କରଇ ।
ଆଡ଼ମ୍ବର ମେଘାଡ଼ମ୍ବର କେତେ ଦେଖି ଅମ୍ବର
ଅମରପୁରେ ସମ୍ବର କି ନାନା ବାଦ୍ୟ ନାଦର ।"

(୩ ୧୨—୧୭)

କାବ୍ୟର ସପ୍ତମଛାନ୍ଦରେ କବି ଇଳାବୃତ୍ତଖଣ୍ଡର ବର୍ଣ୍ଣନା ପ୍ରଦାନ କରିଛନ୍ତି । କବିଭୂଗୋଳ ଦୃଷ୍ଟିରୁ ଏହା ଏକ ଉଲ୍ଲେଖଯୋଗ୍ୟ ବିଷୟ । କବି ଲେଖିଛନ୍ତି—

"ଅତି ମନୋହର ଭୂମି ରତ୍ନମୟ
ମଧ୍ୟେ ହେମ ମହୀଧର କି କମନୀୟ ।
ଅରଣୀଅଙ୍ଗନା ଏକ ସ୍ତନ ପରାୟେ
ବିପୁଳଗୌରବରୁ କରି ସେ ଶୋଭାପାଏ ।
ମାରୀଗଣଙ୍କ କୁଚରୁ ସ୍ୱର୍ଣ୍ଣିଧାହାର
ଧାତୁଧାର ଧାରଣ ହିଁ ସୁଚେଳ ପର ।
ସେ ଖଣ୍ଡ ସରସୀମାନ ଦ୍ୱାରକା ପର
କାମ ବଳ କୃଷ୍ଣ ଉଗ୍ରସେନ ବହର ।
ଧୃତରାଷ୍ଟ୍ର ଶକୁନି ଦ୍ରୋଣରେ ପ୍ରଭବ
କୃଳସ୍ଥ ଅର୍ଜ୍ଜୁନେ କରି କି କୁରୁସଭା ।
ଚନ୍ଦ୍ରନଗର ବିଳାସ ପ୍ରଚୁର ଅଛି
ମୂଳବଳୟ ଗିରି ନଭ ଶୋଭା ବହୁଛି ।"

(୭/୭—୧୧)

ଶେଷଛାନ୍ଦରେ କବି ନିଜର ଆରାଧ୍ୟ ଦେବତା ରାମଚନ୍ଦ୍ରଙ୍କୁ ସ୍ତୁତି କରି ଲେଖିଛନ୍ତି—

"କର ଏ କରୁଣା ବାଞ୍ଛା ହସ୍ତଗତ ଏ ପୁସ୍ତକ ମୋର ହୋଇବ
ଅଜ୍ଞସମୂହର କର୍ଣ୍ଣକୁହରକୁ କେବେ ହେଁ ପ୍ରବେଶ ନୋହିବ
ଆର୍ଣ୍ଣ ଅନଳ, ହାରରେ ନ ଲଭି ବିନାଶ,
ଉତ୍ତମ ଜନରେ ଦୂଷିତ ନୋହିଣ ପ୍ରକାଶ ହେଉ ସର୍ବଦେଶ ।।
ଉପେନ୍ଦ୍ର ଭଞ୍ଜ ବୀରବର ବିରଚିତ ଅତି ତୋଷ ଚିତ୍ତରେ
ରସିକ ହାରାବଳୀ ନାମ ଉଚିତ ବୋଲିବାର ଏହୁ ଗୀତରେ.
ପଦ ସଂଖ୍ୟାରେ; ଜନଶ ପଞ୍ଚଷଷ୍ଠୀ ଜାଣ
ରୂପକ ଯମକ ଆଶୟ ବନ୍ଧ ଶ୍ଳେଷ ଛାନ୍ଦେ ଗୀତ ନିପୁଣ ।।
(୧୫/୧୯,୨୦)

## ସୁଭଦ୍ରା ପରିଣୟ—

'ସୁଭଦ୍ରା ପରିଣୟ' କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅନ୍ୟତମ ପୌରାଣିକ କାବ୍ୟାକାବ୍ୟର ନାମକରଣରୁ ଏହାର ବିଷୟବସ୍ତୁ ସମ୍ପର୍କରେ ମନରେ ସ୍ପଷ୍ଟ ଧାରଣା ସୃଷ୍ଟି ହୋଇଥାଏ । ସମଗ୍ର କାବ୍ୟଟି 'ସ' ଆଦ୍ୟ ନିୟମରେ ରଚିତ । ପ୍ରଥମଛାନ୍ଦରେ କବି ଶ୍ରୀକ୍ଷେତ୍ରର ମହିମା ବର୍ଣ୍ଣନା ପୂର୍ବକ ଜଗନ୍ନାଥଙ୍କୁ ବନ୍ଦନା କରି ଲେଖିଛନ୍ତି—

"ସିନ୍ଧୁତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ଅଛୁ ତହିଁ ବହୁତ ଆଶ୍ଚର୍ଯ୍ୟ ହେ ।
ସେ ଭୂମି ପ୍ରବେଶେ ବ୍ରହ୍ମହତ୍ୟା ପାପ ହରେ
ସାକ୍ଷାତ ହୋଇଛୁ ଏ କପାଳମୋଚନରେ ହେ ।
× × ×
ସମିଧ ଶରୀର କୃତି ବିଷ୍ଣୁ ନିଜେ ତହିଁ
ସୁନ୍ଦରଣେ ଆଶ୍ଚର୍ଯ୍ୟ ଅପବର୍ଗ ଦେଇ ଯେ ।
ସ୍ୱରୂପ ଏ ନାସା କର୍ଣ୍ଣ-ହସ୍ତ ପାଦ-ହୀନ
ସ୍ମରକୋଟି ନୋହେ ତେବେ ଶୋଭାକୁ ସମାନ ଯେ ।।"
(୧/୧—୬)

ପଞ୍ଚମ ଛାନ୍ଦରେ ରୈବତ ପର୍ବତର ପ୍ରାକୃତିକ ଶୋଭା ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

"ଯେତ ଅବନାବନତାର ସ୍ତନ ଶୋଭା ପାଉଛି
ଶୃଙ୍ଗ କଠିନ ଦୃଷ୍ଟିଭ ତନଗୁଣ ବହିଛି ।
ସନ୍ତତ ସନ୍ତତି ମର୍କତମଣି ପ୍ରକାଶ ଶୋଭା
ଦପ୍ରଦୟ ଦୟ କୋମଳ ଦୂର୍ବା ବିଗୃହ ଲୋଭା ।
ଶ୍ରମକୁ ହରନ୍ତ ବିଶ୍ରାମ କରି ଦେବ ମାତର
ସୁରସ୍ୱତ ସେହିଠାବରେ କରେ ମାନ ପ୍ରହାର ।
ସ୍ୱର୍ଗପ୍ତି ହାଟର ବାଦ୍ୟତେ ବାଜ ବ୍ରହ୍ମାଣ୍ଡ ଘଣ୍ଟ
ସୁରଭି ବତ୍ସା କ୍ଷୀରଧାର ମଣି ବସ୍ତାରେ ଭୁଣ୍ଡ ।"

(୫/୩—୭)

ପ୍ରାକୃତିକ ଶୋଭା ବର୍ଣ୍ଣନା ଦୃଷ୍ଟିରୁ 'ସୁଭଦ୍ରା ପରିଣୟ'ର ପଞ୍ଚମଛାନ୍ଦ ଏକ ଉଲ୍ଲେଖ ଯୋଗ୍ୟ ଅଂଶ ।

ଛନ୍ଦପ୍ରୟୋଗ-ବୈଭବ ଓ ବର୍ଣ୍ଣନା-ବିଳାସ ଦୃଷ୍ଟିରୁ ଦ୍ୱିତୀୟ ଆଲୋଚକମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିଥାଏ । ଏହି ଛାନ୍ଦର ୨୦ ରୁ ୨୫ ପଦରେ କବି ସତ୍ୟଭାମାଙ୍କର ଅଙ୍ଗଶୋଭା ବର୍ଣ୍ଣନା କରିଛନ୍ତି । ପ୍ରତ୍ୟେକ ଅଙ୍ଗର ଶୋଭା ବର୍ଣ୍ଣନା ନିମିତ୍ତ କବି ଏକାଧିକ ଉପମା ପ୍ରୟୋଗ କରିଛନ୍ତି । ଯଥା—
ଓଷ୍ଠର ରକ୍ତିମା (ନଅଗୋଟି ଉପମା)—

ସିନ୍ଦୂର ବାଳଭାନୁ ପ୍ରବାଳ ବିମ୍ବ, ବିଦ୍ରୁମ, ନବପ୍ରବାଳ
ବନ୍ଧୁଜୀବକ ଜବା ହିଙ୍ଗୁଳ ରଦଛଦନା ଯେ ।

ଶରୀରର ସ୍ୱର୍ଣ୍ଣ କାନ୍ତି (ଆଠ ଗୋଟି ଉପମା)—

ସୁବର୍ଣ୍ଣ ଚମ୍ପା ଶମ୍ପା କୁଙ୍କୁମ କେତକୀ ନିଶା ଷଣକୁସୁମ
ଗଉରୀ ହରିତାଳ ପ୍ରତିମା କାନ୍ତି ସଦୃଶୀ ଯେ

କେଶରାଜିର ନୀଳିମା (ଆଠ ଗୋଟି ଉପମା)

ସଜଳ ଜଳଧର କଜ୍ଜ୍ୱଳ ଭୃଙ୍ଗ ତମାଳ କାଳିନ୍ଦୀଜଳ
ବରହୀପୁଚ୍ଛ ଚମର ନୀଳମଣି ସୁକେଶୀ ଯେ ।।

ଚକ୍ଷୁର ସୌନ୍ଦର୍ଯ୍ୟ (୬ ଗୋଟି ଉପମା)—

ସାରଙ୍ଗ ମୀନକଞ୍ଜ ଖଞ୍ଜନ　　　　କଞ୍ଜନଶରପୁଞ୍ଜ-ଗଞ୍ଜନି
ଶଫରୀ-ଗର୍ବ-ଖର୍ବ ଅଞ୍ଜନ-ରଞ୍ଜନ-ଦ୍ରୁଶୀ ଯେ ॥
ଏହିପରି ବର୍ଣ୍ଣନା ସଂସ୍କୃତ ସାହିତ୍ୟରେ ମଧ୍ୟ ଏକାନ୍ତ ଦୁର୍ଲ୍ଲଭ ।

ଚତୁର୍ଥ ଛାନ୍ଦରେ ସୁଭଦ୍ରାଙ୍କ ଶୋଭା ବର୍ଣ୍ଣିତ ହୋଇଛି । ଏହି ଛାନ୍ଦ ମଧ୍ଯ କବିଙ୍କ କଳ୍ପନା-ବିଳାସ ଓ ଅଳଙ୍କାରିକତାର ପରିଚାୟକ । ଏହାର ସପ୍ତମ ଓ ଅଷ୍ଟମ ପଦରେ ଅଦ୍ଭୁତ ଉପମା ପ୍ରୟୋଗ ପୂର୍ବକ କବି ସୁଭଦ୍ରାଙ୍କ ଅଙ୍ଗ-ଲତିକାରେ ସପ୍ତଜାତିର ଫୁଲ, ଫଳ ଓ ପକ୍ଷୀର କଳ୍ପନା କରିଛନ୍ତି । ଯଥା—

"ସର୍ପପୁରେ ଯାଇ ପର୍ବତେ ବିହ୍ଵଳେ ମହାଜାତ ହେମମଞ୍ଜରୀ
ସୁଗନ୍ଧବତୀ ସ୍ଵଇଚ୍ଛାରେ ଚଳିତ ଚନ୍ଦ୍ରାବଳୀରେ କି ମାଧୁରୀ
ସଫଳ, ତହିଁ ପୁଣି ଫୁଲ ଏତେକ
ସରୋରୁହ ଚମ୍ପା କୁମୁଦ ପାଟଳୀ ନଆଳ ଶିରୀଷଅଶୋକ ॥
ସଫଳ ଆମ୍ବ ଡାଳିମ୍ବ ବିମ୍ବ ଦ୍ରାକ୍ଷା ତୁମ୍ବୀ ନାରଙ୍ଗ ମାତୁଳଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ଶୁକ କପୋତ ହଂସ ସଙ୍ଗ
ସ୍ଵରୂପେ, ମହା ଅଦ୍ଭୁତ କଥା ଏହି
ସପତ ଜାତି ଫଳ ଫୁଲ ବିହଙ୍ଗ ଲତା କେ ଥିବା ଶୁଣି ନାହିଁ ॥"
(୪।୭,୮)

କବି ପୁରାଣରୁ ବିଷୟ ଆହରଣ କରିଥିଲେ ମଧ୍ଯ ସ୍ଵକୀୟ ପାଣ୍ଡିତ୍ୟ, ପ୍ରତିଭା ଓ କଳ୍ପନାଶକ୍ତି ବଳରେ କାବ୍ୟକୁ ରସାଳ ଓ ହୃଦୟଗ୍ରାହୀ କରି ଗଢ଼ି ତୋଳିଛନ୍ତି ।

## (୭) କଳାକଉତୁକ—

ଏହା କୃଷ୍ଣଲୀଳାବିଷୟକ ଏକ କ୍ଷୁଦ୍ର କାବ୍ୟ । କ୍ଷୁଦ୍ରକ୍ଷୁଦ୍ର ଦଶଗୋଟି ଛାନ୍ଦରେ ସଂପୂର୍ଣ୍ଣ ହୋଇଛି । କାବ୍ୟଟିର ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ହେଉଛି, ଏହା ଆଦ୍ୟପ୍ରାନ୍ତ 'କ' ନିୟମରେ ରଚିତ । ଏ ପ୍ରସଙ୍ଗରେ କଥିତ ଅଛି— ଭକ୍ତକବି ଘନକୃଷ୍ଣ ଦାସ ତାହାଙ୍କର 'ରସକଲ୍ଲୋଳ' କାବ୍ୟକୁ ନେଇ ଗଜପତି ଦିବ୍ୟସିଂହ ଦେବଙ୍କ ଦରବାରରେ ପ୍ରବେଶ କଲେ । ସେଠାରେ ଉପସ୍ଥିତ ଥିବା

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଉକ୍ତ କାବ୍ୟକୁ ଦେଖି ମତ ଦେଲେଯେ, ଏହା 'କ' ଆଦ୍ୟ ନିୟମରେ ରଚିତ ହୋଇଥିବାରୁ କାବ୍ୟଟିର ନାମକରଣ ମଧ୍ୟ 'କ' ଆଦ୍ୟ ନିୟମରେ ହେବା ଉଚିତ । ଦ୍ୱିତୀୟତଃ କାବ୍ୟର ପ୍ରଥମଗ୍ରନ୍ଥର ପ୍ରତ୍ୟେକ ପାଦ ଆଦ୍ୟ 'କ' ଓ ପ୍ରାନ୍ତ 'କ' ନିୟମରେ ରଚିତ ହୋଇଛି । ଏହି ନିୟମ ସମଗ୍ର କାବ୍ୟର ପ୍ରତ୍ୟେକ ପାଦରେ ସୁରକ୍ଷିତ ହୋଇଥିଲେ କାବ୍ୟଟି ଆହୁରି ସୁନ୍ଦର ହୋଇଥାନ୍ତା । ଏହିପରି ଅନେକ ତ୍ରୁଟି ଦେଖାଇବା ପରେ କବିସମ୍ରାଟ ଭଞ୍ଜ ଆଦ୍ୟ ଓ ପ୍ରାନ୍ତ 'କ' ନିୟମରେ କୃଷ୍ଣଲୀଳା ବିଷୟକ 'କଳାକଉତୁକ' କାବ୍ୟ ରଚନା କରିଥିବା କିମ୍ବଦନ୍ତୀ ରହିଛି । କାବ୍ୟଟିର ନାମରେ ମଧ୍ୟ ଆଦ୍ୟ ଓ ପ୍ରାନ୍ତ 'କ' ନିୟମ ସୁରକ୍ଷିତ ହୋଇଛି ।

ଏହା କୃଷ୍ଣଲୀଳା ବିଷୟକ କାବ୍ୟ ହେଲେ ମଧ୍ୟ କାବ୍ୟାରମ୍ଭରେ କବି ଶ୍ରୀରାମଚନ୍ଦ୍ରଙ୍କୁ ସ୍ତୁତି କରିଛନ୍ତି । ସେ ଲେଖିଛନ୍ତି—

"କମଳାଧର ହେ କମଳାଧରଜିତ ନାୟକ
କମଳାଧର ଯାର ଗାନ ନାମ ସଦା ଧ୍ୟାୟକ ॥
କମଳା ସାକ୍ଷାତ କମଳାସାର ସୀତାନାୟକ
କମଳାସନ ବର୍ଯ୍ୟରୂପେ ନନ୍ଦ ପୁଷ୍ପଶାୟକ ॥"

(୧।୧,୨)

ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ, ଅନ୍ୟାନ୍ୟ କବିମାନେ କୃଷ୍ଣଲୀଳା ବିଷୟକ କାବ୍ୟ ଲେଖିବାକୁ ଗଲାବେଳେ ମଙ୍ଗଳାଚରଣରେ ଶ୍ରୀକୃଷ୍ଣ ବା ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି । କବି ଉପେନ୍ଦ୍ର ଭଞ୍ଜ ଶ୍ରୀକୃଷ୍ଣ ଓ ଗୋପାଙ୍ଗନାଙ୍କ ଲୀଳା ପ୍ରସଙ୍ଗକୁ ନେଇ କାବ୍ୟ ରଚନା କରିଥିଲେ ମଧ୍ୟ କାବ୍ୟାରମ୍ଭରେ ଶ୍ରୀକୃଷ୍ଣଙ୍କୁ ସ୍ତୁତି ନ କରି ରାମଚନ୍ଦ୍ରଙ୍କୁ ସ୍ତୁତି କରିଛନ୍ତି । ଏହାର କାରଣ ହେଉଛି—ଦ୍ୱାପର ଯୁଗରେ ସଂଘଟିତ କୃଷ୍ଣଲୀଳା ପ୍ରସଙ୍ଗ ତ୍ରେତା ଯୁଗରେ ରାମଚନ୍ଦ୍ରଙ୍କ ବନବାସ ପ୍ରସଙ୍ଗରେ ସୂଚିତ ହୋଇଛି । ତ୍ରେତାଯୁଗରେ ବନବାସ କାଳରେ ରାମଚନ୍ଦ୍ର ସୀତା ଓ ଲକ୍ଷ୍ମଣଙ୍କ ସହିତ ବନମଧ୍ୟରେ ଯାତ୍ରା କରୁଥିବା ସମୟରେ ଦଣ୍ଡକାରଣ୍ୟ ନିବାସୀ ଋଷିମାନେ ରାମଚନ୍ଦ୍ରଙ୍କ ଅଙ୍ଗସଙ୍ଗ କାମନା କରିଥିଲେ । ସେମାନଙ୍କ ମନରେ ନାରୀସୁଲଭ ଭାବନା ଜାଗ୍ରତ ହୋଇଥିଲା । ରାମଚନ୍ଦ୍ର ସେମାନଙ୍କର ମନୋଭାବ ଜ୍ଞାତ ହୋଇ ଦ୍ୱାପର ଯୁଗରେ ସେମାନେ ଗୋପାଙ୍ଗନା ଓ ସେ ନିଜେ

ଶ୍ରୀକୃଷ୍ଣ ରୂପେ ଗୋପରେ ଅବତୀର୍ଣ୍ଣ ହେବେ ବୋଲି କହିଥିଲେ । ଏ ପ୍ରସଙ୍ଗରେ 'ବୈଦେହୀଶ ବିଳାସ'ର ନିମ୍ନ ଅଂଶ ଅନୁଧ୍ୟାନ ଯୋଗ୍ୟ—

"ବିହରୁ ବିହରୁ ଦଣ୍ଡକାରଣ୍ୟେ । ବୃନ୍ଦବୃନ୍ଦ ଋଷି ଦେଖି ସୁପୁଣ୍ୟେ
ବିଦେହ କୋଟି ଏକ ଦେହ ବହି । ବୋଲନ୍ତିଲେ ଏ ଲକ୍ଷ୍ୟ କରୁ ନୋହି
ବନଦ ଶ୍ୟାମ କାହିଁ ଏ ଥିଲା । ବରଲା ଏ ଭାମା କ ତପବଳା ॥ ୨୮ ॥
ବିଧାତା ଆମ୍ଭଙ୍କୁ କରନ୍ତା ନାରୀ । ବର ହୁଅନ୍ତେ ଏ କୋଦଣ୍ଡଧାରୀ
ବ୍ରହ୍ମ ଦେଶ ପାଇ ହେବ କିସ । ବହିବା କ କର କାମିନୀ ବେଶ
ବିଗ୍ରହୁ ସେ ପୁଲକିତ ଶରୀରେ । ବେଢ଼ିଥି ଜନ୍ମି ଆଶ୍ଳେଷ ବୃକ୍ଷରେ ॥ ୨୯ ॥
ବିଭ୍ରମ ଉପୁଜି ଗଲା ମାନସ । ବୋଇଲେ ସଖୀଙ୍କୁ ସଖି ଗୋ ଆସ
ବହିବା ଭୃଙ୍ଗୀକି ଉରରେ ରଖି । ବକ୍ଷୋରୁହ ହେଲା ଭାବରେ ସଖୀ
ବେଣୀ ଏ ତ ବୋଲି ଜଟା ଲମ୍ବାଇ । ବଦ୍ଧ କୁସୁମ ମଣ୍ଡିଲେ ନେଇ ॥୩୦॥
ବହିଥିଲେ ଯେ ଆହୁତ ଅଗ୍ନିର । ବସେ.ଇଲେ ସ୍ୱାହା ଆଦ୍ୟ ଅକ୍ଷର
ବନ୍ଦେ ରହି ତା ପୁନଃ ପୁନଃ କହି । ବଚେଷ୍ଟା ତାଙ୍କର ରାଘବ-ରହି
ବଇଦେହୀ ଲକ୍ଷ୍ମଣରୁ ଅନ୍ତର । ବାଞ୍ଛା ବରଦାନେ ରଚନ ଗୀର ॥୩୧॥
ବଞ୍ଚିଥ ତୁମ୍ଭେ ହୋଇବ ଦ୍ୱାପରେ । ବ୍ରଜେ ରହିବୁ ଆମ୍ଭେ କଂସ ଡରେ
ବୃନ୍ଦାବନରେ ହେବ ରାସକେଳି । ବଲ୍ଲଭୀ ଏକା ଏ ଦେହେ ମୈଥିଳୀ
ବହିବୁ ଯେ ଗୋପୀନାଥ ନାମକୁ । ବୋଲେ ଉପେନ୍ଦ୍ର ବୋଧିଗଲେ ତାଙ୍କୁ

(୨୧ଶ ଛାନ୍ଦ)

'କଳାକଉତୁକ' କାବ୍ୟର ପ୍ରଥମଛାନ୍ଦରେ କବି ଏ ସମ୍ପର୍କରେ ସୂଚନା ଦେବାକୁ ଯାଇ ଲେଖିଛନ୍ତି—

"କଦମ୍ବ କଦମ୍ବ ରଞ୍ଜିଏ ନାରୀ ହେବା ଲାଗୁକ ।
କଦମ୍ବ ଫୁଲକୁ ତ ତନୁ ରହିଁ ଶୋଭା ଶାଗୁକ ॥

(୧/୩)

କାବ୍ୟଟିରେ ପ୍ରସଙ୍ଗକ୍ରମେ କବି ବଭିନ୍ନ ଅଳଙ୍କାର ଓ ଚମତ୍କାର ବର୍ଣ୍ଣନାର ସମାବେଶ ଘଟାଇଛନ୍ତି ।

(୭) ଛାନ୍ଦ-ଭୂଷଣ –

'ଛାନ୍ଦ ଭୂଷଣ' କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅନ୍ୟତମ ଶ୍ରୀକୃଷ୍ଣଲୀଳା ବିଷୟକ କାବ୍ୟ । ଏଥିରେ ଶ୍ରୀକୃଷ୍ଣଙ୍କ ଜନ୍ମ ଓ ଗୋପପୁରରେ ଲାଳନପାଳନଠାରୁ ଆରମ୍ଭ କରି କଂସବଧ, ଉଗ୍ରସେନଙ୍କୁ ମଥୁରାରେ ରାଜା କରିବା, ରୁକ୍ମିଣୀହରଣ, ଶିଶୁପାଳବଧ ଓ କୌରବପକ୍ଷ ଧ୍ୱଂସ ପର୍ଯ୍ୟନ୍ତ ସମଗ୍ର କୃଷ୍ଣଚରିତ ଆଦି ସଂକ୍ଷେପରେ ବର୍ଣ୍ଣିତହୋଇଛି । ଏଥିରେ ସମୁଦାୟ ୩୪ ଗୋଟି କ୍ଷୁଦ୍ରକ୍ଷୁଦ୍ର ଛାନ୍ଦ ସନ୍ନିବେଶିତ ହୋଇଛି । ପ୍ରଥମଛାନ୍ଦ 'କ' ଆଦ୍ୟ ନିୟମ, ଦ୍ୱିତୀୟ ଛାନ୍ଦ 'ଖ' ଆଦ୍ୟ ନିୟମ ଏବଂ ଏହି କ୍ରମରେ ଶେଷଛାନ୍ଦ 'କ୍ଷ' ଆଦ୍ୟ ନିୟମରେ କବି ରଚନା କରିଛନ୍ତି ।

କାବ୍ୟର ପ୍ରଥମ ଛାନ୍ଦରେ କବି ନୀଳାଚଳବିହାରୀ ଶ୍ରୀଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି । ଶ୍ରୀ ଜଗନ୍ନାଥ ବିଭିନ୍ନ ସମୟରେ କିପରି ନାନାବିଧ ଅବତାର ଗ୍ରହଣ କରନ୍ତି, ସେ ସମ୍ପର୍କରେ କବି ଲେଖିଛନ୍ତି —

"କମ୍ବୁକଣ୍ଠକରେ ଯେହୁ ଦାରୁରୂପଧାରୀ
କାଳେକାଳେ ଶ୍ୱେତଦ୍ୱୀପ ମଧ୍ୟେ ସେ ବିହରି ।
କମଳବନ୍ଧୁ ବଂଶେ ଯେ ଥିଲେ ଅବତରି
କଣ୍ଠୀରବ ତନୁ ଯେ ପୂର୍ବରେ ଥିଲେ ଧରି ।
କୁତୁକେ ଯେ ବିଧିଜାତ ଦେବକୀ ଉଦରି
କମଳଧିରୁ ପ୍ରକାଶ ରାକା ଆକାଶରି ॥"

ଏହା ପରେ କୃଷ୍ଣଲୀଳା ବିଷୟକ କାବ୍ୟ ଲେଖିବା ପାଇଁ କବି କାହିଁକି ଉଦ୍ୟତ ହୋଇଛନ୍ତି, ସେ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି —

"କବି ସ୍ତୁତି ଅନ୍ତରେ ଯେ ଏମନ୍ତ ଭଣିତ
କଲି କାମିନୀ ବର୍ଣ୍ଣନା କରି ବହୁ ଗୀତ ।
କେଉଁ କାର୍ଯ୍ୟ ଅଛି ତହିଁ କୃଷ୍ଣ କଥା ଥାଉ
କଳୁଛି ଯାହା ଅବିଘ୍ନେ ସମାପତ ହେଉ ।

କାବ୍ୟ ମଧ୍ୟରେ ରସ ପରିବେଷଣ ଓ ବର୍ଣ୍ଣନା-ବିଳାସ ଅତି ଚମତ୍କାର ହୋଇଛି । ଚତୁର୍ଥଛାନ୍ଦରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ବର୍ଣ୍ଣନା ପ୍ରସଙ୍ଗରେ ବାତ୍ସଲ୍ୟ-ରସର ପରିପ୍ରକାଶ ରସଗ୍ରାହୀ ପାଠକମାନଙ୍କୁ ଚମତ୍କୃତ କରିଥାଏ । ସେହିପରି ଅଞ୍ଜନ

ଛନ୍ଦରେ ଯଶୋଦାଙ୍କ ଦଧିମନ୍ଥନର ଚିତ୍ର କବିଙ୍କ ସୌନ୍ଦର୍ଯ୍ୟବୋଧର ପରିଚାୟକ । 'ଛାନ୍ଦଭୂଷଣ' ବିଷୟ ଆଲୋଚନା କରିବାକୁ ଗଲାବେଳେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କର ଏ ସମ୍ପର୍କୀୟ ମତ ଉଦ୍ଧାର କରିବା ଯଥାର୍ଥ ମନେହୁଏ । ପଣ୍ଡିତ ସ୍ୱର୍ଗତଃ ସୂର୍ଯ୍ୟନାରାୟଣବାବୁ ଲେଖିଛନ୍ତି—"ପ୍ରକୃତି, ରୂପ, ବିଳାପ, ବିରହାଦି ବର୍ଣ୍ଣନାରେ କବି ଯଥେଷ୍ଟ କୃତି ଦେଖାଇ ପାରିଛନ୍ତି । ଋତୁବର୍ଣ୍ଣନା, ଯମୁନାକେଳି, ମୁରଲୀନାଦ ପ୍ରଭୃତି ରମଣୀୟ ହୋଇଛି । ଯଶୋଦାଙ୍କ ଦଧିମନ୍ଥନ, କୃଷ୍ଣଙ୍କ ବାଲ୍ୟଲୀଳା, ଗୋଧନହରଣ, ବନବିହାର, ମୁରଲୀନାଦ ପ୍ରଭୃତିର ବର୍ଣ୍ଣନା ମଧ୍ୟ ଚମତ୍କାର ହୋଇଛି । ଗୋପୀମାନଙ୍କ କାମଚେଷ୍ଟା, ବିରହ, ବିଳାପ ପ୍ରଭୃତି କବିତ୍ୱପୂର୍ଣ୍ଣ ହୋଇଛି ।"

"ଛାନ୍ଦଭୂଷଣ ଯଦି କବିଙ୍କର ଏକମାତ୍ର କାବ୍ୟ ହୋଇଥାନ୍ତା, ତେବେ କବି ଯେ ଓଡ଼ିଆ କବିମାନଙ୍କ ଭିତରେ ଶୀର୍ଷ ଶ୍ରେଣୀର ସ୍ଥାନ ଅଧିକାର କରିଥାନ୍ତେ ଏଥିରେ ସନ୍ଦେହ ନାହିଁ ।" (୧୯)

## ୮ । ଅବନା ରସତରଙ୍ଗ—

ବାରଗୋଟି ଛାନ୍ଦବିଶିଷ୍ଟ କବିଙ୍କର ଉକ୍ତ କ୍ଷୁଦ୍ର କୃତିଟି ଆମୂଳଚୂଳ 'ଅ' ବନାରେ ରଚିତ ହୋଇଛି । ଅର୍ଥାତ୍ ଏଥିରେ 'ଆ'କାର, 'ଇ'କାର ଇତ୍ୟାଦି ବନା ନାହିଁ । ସମଗ୍ର ଭାରତୀୟ ସାହିତ୍ୟରେ ଏହିପରି ରଚନା ଏକାନ୍ତ ଦୁର୍ଲଭ । ରାମଚନ୍ଦ୍ରଙ୍କ ଜନ୍ମଠାରୁ ବନବାସ ଓ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ରାମାୟଣର ବିଷୟବସ୍ତୁ ଅତି ସଂକ୍ଷେପରେ ଏଥିରେ ବର୍ଣ୍ଣିତ ହୋଇଛି ।

କବିଙ୍କର ଅନ୍ୟାନ୍ୟ ରଚନା ତୁଲ୍ୟ ଏଥିରେ ମଧ୍ୟ ଉପମା, ଉତ୍ପ୍ରେକ୍ଷା, ଯମକ, ଶୃଙ୍ଖଳା ଓ ସିଂହାବଲୋକନ ଇତ୍ୟାଦି ଅଳଙ୍କାର ସନ୍ନିବେଶିତ ହୋଇଛି । ବନବାସ ସମୟରେ ସୀତାଙ୍କ ବିଚ୍ଛେଦ ହେତୁ ବିଭିନ୍ନ ଋତୁରେ ରାମଚନ୍ଦ୍ରଙ୍କ ବିରହାନୁଚିନ୍ତା କାବ୍ୟଟିରେ ମୁଖ୍ୟସ୍ଥାନ ଗ୍ରହଣ କରିଛି । ଅବନା ନିୟମରେ ମଧ୍ୟ କବିଙ୍କ ଶବ୍ଦ ପ୍ରୟୋଗ କିପରି ଚମତ୍କାର ହୋଇଛି, ନିମ୍ନ ଉଦ୍ଧୃତିଟିରୁ ସହଜରେ ଅବଧାରଣ କରିହେବ ।

---

(୧୯) ଓଡ଼ିଆ ସାହିତ୍ୟର ଇତିହାସ—ପୃ: ୩୩-୩୪ (ପ୍ରଥମ ସଂସ୍କରଣ)

"ଏ ସମୟ ଝରଝରେ                                        ବରଷଣ ତରତର
ପ୍ରବଳ ତ୍ରକଟ ଘଟଘଟ ଶବଦ
ପ୍ଲବଗଣ ଭକଭକ                                          ସମଦ ରବକ ବକ
ଖରଖର ଅନ୍ତକର ପ୍ରଳୟପ୍ରଦ
ଲକ୍ଷଣ ରଚନ ଘଟନ୍
ଉପଇନ୍ଦ୍ର ଭଞ୍ଜର ଏ ରସ ରଚନ ।"

(୪ର୍ଥ ଛାନ୍ଦ)

ଏହି ବୈଶିଷ୍ଟ୍ୟ ସମ୍ପର୍କରେ ଅଧ୍ୟାପକ ସ୍ୱର୍ଗତଃ ଜୟକୃଷ୍ଣ ମିଶ୍ର ଲେଖିଛନ୍ତି —"ସବୁଠାରୁ ବିସ୍ମୟକର ବିଷୟ ହେଉଛି ଯେ, ଏହି 'ଅବନା ରସତରଙ୍ଗ' ପ୍ରତି ଛନ୍ଦର ଶ୍ରବଣ-ଚମତ୍କାରିତାରେ ଖାଲି ଯେ 'ଅବନା' ଭାବରେ ବିଶେଷତ୍ୱ ପ୍ରକଟନ କରିଛି ତାହା ନୁହେଁ, ଏହାର ପ୍ରତିପଦ, ପ୍ରତିଛାନ୍ଦ ପ୍ରତ୍ୟେକ କଳ୍ପନା-ବିଳାସ ଓ ତନ୍ନିହିତ ଅଳଙ୍କାରିକତା ତଥା ଭାବଗର୍ଭିକତା ବାସ୍ତବିକ 'ଅବନା' (ଅବର୍ଣ୍ଣନୀୟ ବା ବର୍ଣ୍ଣନାତୀତ) ରସଧାରା (ତରଙ୍ଗ) ଅପୂର୍ବ ଭଙ୍ଗୀରେ ସୃଷ୍ଟି କରିଛି ସର୍ବାଧିକ ମହନୀୟ ପ୍ରସଙ୍ଗ 'ରାମସୀତା ଚରିତ'ର ଆଧାର ହୋଇ ।" (୨୦)

## (୯) ଭୁବନବତୀ—

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଏହା ଅନ୍ୟତମ କ୍ଷୁଦ୍ର କବିତ୍ୱ କୃତି । ନାୟିକାର ନାମାନୁସାରେ କାବ୍ୟଟି ନାମିତ ହୋଇଛି । ସମୁଦାୟ ସାତଗୋଟି ଛାନ୍ଦରେ କବି ଏହାକୁ ସମ୍ପୂର୍ଣ୍ଣ କରିଛନ୍ତି । ଏହା କବିଙ୍କର ପ୍ରାଥମିକ ସ୍ତରର ରଚନା ଭଳି ପ୍ରତିଭାତ ହୁଏ । କାବ୍ୟାରମ୍ଭରେ କବି ଶ୍ରୀରାମଚନ୍ଦ୍ରଙ୍କୁ ସ୍ତୁତିକରି ଲେଖିଛନ୍ତି—

"ଜୟ ଜୟ ଶୁଭରତ ଭରତ ବନ୍ଦିତ
ଜୟ ଜୟ ସଲକ୍ଷଣ ଲକ୍ଷ୍ମଣ ମୋଦିତ ହେ ।
ଜୟ ଜୟ ସୀତା ଶୀତାଂଶୁ ଲପନାଭିପ୍ରିୟ
ଜୟ ଜୟ ଶତ୍ରୁଘ୍ନ ଶତ୍ରୁଘ୍ନ ସୁଖୋଦୟ ହେ ॥

---

(୨୦) କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ—ଏକ ସମୀକ୍ଷା—ପୃଃ ୨୩୬

ଜୟଜୟ ଜନକ ଜନକ ତୋଷକର
ଜୟଜୟ ସୁଗ୍ରୀବ ସୁଗ୍ରୀବ ସୁଖକର ହେ ।
ଜୟଜୟ ସଦାଶିବ ସଦାଶିବ ପୂଜ୍ୟ
ଜୟଜୟ ତରଣୀ ତରଣିବଂଶରାଜ ହେ ।
ଜୟଜୟ ମରୁତ ମରୁତସୁତ ପକ୍ଷ
ଜୟଜୟ ବିଭୀଷଣ ବିଭୀଷଣରକ୍ଷ ହେ ।''

(୧/୧—୪)

ଏହିପରି ଭାବରେ ମଧ୍ୟ ଯମକରେ କବି କାବ୍ୟାରମ୍ଭରେ ରାମଚନ୍ଦ୍ରଙ୍କୁ ସ୍ତୁତି କରିଛନ୍ତି । ଏହାପରେ କାବ୍ୟର ବିଷୟବସ୍ତୁ ଆରମ୍ଭ ହୋଇଛି । କେରଳ ଦେଶର ରାଜକୁମାରୀ ଭାବବତୀଙ୍କ ସହିତ ଗୈାଳଦେଶର ରାଜକୁମାରଙ୍କ ବିବାହ ପ୍ରସଙ୍ଗ ଏଥିରେ ମୂଳତଃ ବର୍ଣ୍ଣିତ ହୋଇଛି ।

ବିଂଶଛାନ୍ଦର ଶେଷ ଭାଗରେ କବି ନିଜକୁ 'ମଙ୍ଗରାଜ' ରୂପେ ପ୍ରତିପାଦନ କରିଛନ୍ତି । ଯଥା—

''ସୀତାରାମ ପଦ୍ମ ଚରଣ ଗୁଣି,
ଉପଇନ୍ଦ୍ର ମଙ୍ଗରାଜ ଏ ଭଣି ।।''

କବିଙ୍କ ପ୍ରାଥମିକ ସ୍ତରର ରଚନା ହେଲେ ମଧ୍ୟ ଏଥିରେ ଚମତ୍କାର ପଦାବଳୀ ମଣ୍ଡିତ ମନୋରମ ବର୍ଣ୍ଣନା ରହିଛି । ଏ କ୍ଷେତ୍ରରେ ଚତୁର୍ଥ ଛାନ୍ଦର ବର୍ଷାବର୍ଣ୍ଣନା ଏକ ଉଲ୍ଲେଖଯୋଗ୍ୟ ବିଷୟ ।

## (୧୦) ରାମଲୀଳାମୃତ—

ଏହା କବିଙ୍କର ରାମ ଚରିତ ମୂଳକ ଦ୍ୱିତୀୟ କାବ୍ୟ । ସମୁଦାୟ ୧୨ ଗୋଟି କ୍ଷୁଦ୍ରକ୍ଷୁଦ୍ର ଛାନ୍ଦରେ କବି ଏହାକୁ ଶେଷ କରିଛନ୍ତି । ରାମଚନ୍ଦ୍ରଙ୍କ ଜନ୍ମଠାରୁ ସୀତା ବିବାହ ଓ ପରଶୁରାମ ଦର୍ପଦଳନ ପର୍ଯ୍ୟନ୍ତ ବିଷୟ ଏଥିରେ ବର୍ଣ୍ଣିତ ।

କାବ୍ୟର ପ୍ରଥମଛାନ୍ଦରେ କବି ବିଷ୍ଣୁ, ଶିବ, ଦୁର୍ଗା ଓ ଗଣପତି—ଏହି ଚାରି ଦେବଦେବୀଙ୍କୁ ସ୍ତୁତି କରିଛନ୍ତି । ଏ ପ୍ରସଙ୍ଗରେ ସେ ଲେଖିଛନ୍ତି—

''ବିଷ୍ଣୁ ଶିବ ଦୁର୍ଗା ଗଣପତିଙ୍କ ସ୍ତୁତି
ପ୍ରବନ୍ଧ ଆଦ୍ୟରେ କରି କବି କରିଛନ୍ତି ।।''

ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ, କବିଙ୍କ 'ବୈଦେହୀଶ ବିଳାସ' କାବ୍ୟର ପ୍ରଥମଛାନ୍ଦର ପ୍ରଥମ ଦୁଇପଦକୁ ଏକାଧିକ ଦେବଦେବୀଙ୍କ ପକ୍ଷରେ ଅର୍ଥ କରାଯାଇଥାଏ । ଓଡ଼ିଶା ସରକାରଙ୍କ ପାଠ୍ୟପୁସ୍ତକ ବ୍ୟାପାର ବିଭାଗ ପ୍ରକାଶିତ 'ବୈଦେହୀଶ ବିଳାସ'ରେ ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମା ଉକ୍ତ ଦୁଇଟି ପଦକୁ ଆଠ ଦେବଦେବୀଙ୍କ ପକ୍ଷରେ ଅର୍ଥ କରିଛନ୍ତି । ରାମଲୀଳାମୃତରେ ଯଦି କବି ଗୃହ ଦେବଦେବୀଙ୍କୁ ସ୍ତୁତି କରିଛନ୍ତି ବୋଲି ନିଜେ ଲେଖିଛନ୍ତି, ତେବେ 'ବୈଦେହୀଶ ବିଳାସ'ରେ ସେ ଆଠ ଦେବଦେବୀଙ୍କୁ ସ୍ତୁତି କରିଥିବା ନିତାନ୍ତ ଯଥାର୍ଥ ମନେହୁଏ ।

'ରାମଲୀଳାମୃତ'ର ଅନ୍ୟ କେତେକ ଛାନ୍ଦରେ ମଧ୍ୟ କବି ଉପର୍ଯ୍ୟୁକ୍ତ ଗୃହ ଦେବଦେବୀଙ୍କ ବିଷୟ ଉଲ୍ଲେଖ କରିଛନ୍ତି । ଯଥା—

(କ) ସହୃଦୟ ଭବସନ୍ତାପନାଶନ ମହାକାଳ ସୁଖ ନିଦାନ<br>
ବୈଷ୍ଣବ ଶୈବ ଶାକ୍ତ ଗାଣପତ୍ୟଙ୍କ ହରଷଦାତା ପ୍ରବନ୍ଦନ ॥

(୬।୩୭)

(ଖ) ସ୍ୱରୂପ ଧର୍ମରାଜ ସୁଖ ନିଦାନ ସାରସଚରଣ ଶରଣ<br>
ବିନା ନୋହି ବୈଷ୍ଣବ ଗାଣପତ୍ୟ ଶୈବ ଶାକ୍ତ ଜାଣ ନାହିଁ କାରଣ ॥

× × × (୭।୨୭)

(ଗ) ଶ୍ରୀନିବାସ ଯେ ସମସ୍ତ କାଳରେ, ମହାଦେବ ତୋଷ ଯୋଗକୁ କରେ<br>
ବୈଷ୍ଣବ ଶୈବ ଶାକ୍ତ ଗାଣପତ୍ୟ, ଶାସ୍ତ୍ର ଅନୁଭବେ ବୋଲନ୍ତି ନିତ୍ୟ<br>
ସେ ପ୍ରଭୁ ଚରଣେ, ଉପେନ୍ଦ୍ର ଭଞ୍ଜ ପଶେ ଶରଣ ॥

(୮।୩୧)

ବିଭିନ୍ନ ଧାର୍ମିକସମ୍ପ୍ରଦାୟ ଓ ସେମାନଙ୍କର ଆରାଧ୍ୟ ଦେବଦେବୀଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେସଙ୍ଗେ କବି ଭାରତବର୍ଷରେ ଧାର୍ମିକ ସମନ୍ୱୟ ଆନୟନ ନିମିତ୍ତ କିପରି ଆଗ୍ରହୀ ଥିଲେ, ତାହା ଏଥିରୁ ସହଜରେ ଅନୁମିତ ହୁଏ ।

କାବ୍ୟର ଶେଷଛାନ୍ଦରେ କବି ନିଜର ପିତାମହ ଓ ପିତାଙ୍କର ନାମୋଲ୍ଲେଖ କରିବା ସଙ୍ଗେସଙ୍ଗେ ସାଧୁସମାଜରେ ତାହାଙ୍କର ଏହି କବିତ୍ୱକୃତି ପ୍ରଶଂସିତ ହେବ ବୋଲି ଆଶା ପୋଷଣ କରିଛନ୍ତି ।

## (୧୧) ସୁବର୍ଣ୍ଣ ରେଖା—

କବି ଉପେନ୍ଦ୍ର ଭଞ୍ଜଙ୍କର ଏହି କାବ୍ୟଟି ଆକାରରେ ଅତି କ୍ଷୁଦ୍ର । ସମୁଦାୟ ପାଞ୍ଚଗୋଟି ଛାନ୍ଦରେ କବି ଏହାକୁ ଶେଷ କରିଛନ୍ତି । ଏହାର ନାୟକ ହେଉଛନ୍ତି କୋଶଳଦେଶର ରାଜକୁମାର ଏବଂ ନାୟିକା ଅନ୍ୟ ଦେଶର ମନ୍ତ୍ରୀଙ୍କ କନ୍ୟା । ପ୍ରଥମ ଛାନ୍ଦରେ ଉକ୍ତ ନାୟକନାୟିକାଙ୍କର ଗାନ୍ଧର୍ବ ରୀତିରେ ବିବାହ ଓ ବିବାହ ପରେ ରାଜକୁମାରର ପ୍ରବାସ ବିଷୟ କବି ବର୍ଣ୍ଣନା କରିଛନ୍ତି । ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଛାନ୍ଦରେ ନାୟକର ବିରହାନୁଚିନ୍ତା ବର୍ଣ୍ଣିତ । ପଞ୍ଚମ ଛାନ୍ଦରେ ନାୟକର ସ୍ୱଦେଶ ପ୍ରତ୍ୟାବର୍ତ୍ତନ ଓ ନାୟିକା ସହିତ ମିଳନ ବର୍ଣ୍ଣିତ ହୋଇଛି ।

ଶେଷ ଛାନ୍ଦର ଗୋଟିଏ ପଦ ପାଠ କଲେ, ଏହା 'ରସିକ ହାରାବଳୀ' ଓ 'ପ୍ରେମ ସୁଧାନିଧି' କାବ୍ୟ ପରେ ରଚିତ ହୋଇଥିବା ସ୍ପଷ୍ଟ ଜଣାଯାଏ । ସେହି ପଦଟି ହେଉଛି—

> "ପାଞ୍ଚ ଛାନ୍ଦେ ଶେଷ ହୋଇଲା ଏ ରସ କରିବ ରସିକ ବଶ
> ସେହି ଜନେ ପ୍ରେମସୁଧାନିଧି ରସିକହାରାବଳୀର ଏ ଶେଷ ॥"
>
> (୫/୧୮)

ଏଥିରୁ ଜଣାଯାଉଛି ଯେ ଏହା କବିଙ୍କର ପ୍ରାଥମିକ ସ୍ତରର ରଚନା ନୁହେ । ତଥାପି ଏଥିରେ କବି ବହୁ ସ୍ଥାନରେ ଅତି ସରଳ ପଦାବଳୀ ବ୍ୟବହାର କରିଛନ୍ତି ।

## (୧୨) ରସ ପଞ୍ଚକ—

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଏହି ଗ୍ରନ୍ଥଟି ଓଡ଼ିଆ ଭାଷାର ପ୍ରଥମ ରସଶାସ୍ତ୍ର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ପାଞ୍ଚଭାଗରେ ବିଭକ୍ତ । 'ର-ସ ପ-ଞ୍ଚ-କ' ଏହି ପାଞ୍ଚଗୋଟି ଅକ୍ଷରକୁ ନେଇ କବି 'ର' କାର ବୋଲି, 'ସ'କାର ବୋଲି, 'ପ'କାର ବୋଲି, 'ଚ'କାର ବୋଲି ଓ 'କ' କାର ବୋଲି ରଚନା କରିଛନ୍ତି । ଉକ୍ତ ପାଞ୍ଚଗୋଟି 'ବୋଲି' ମଧ୍ୟରୁ ପ୍ରତ୍ୟେକ ପୁନର୍ବାର ବିଭିନ୍ନ ଉପବିଭାଗରେ ବିଭକ୍ତ ।

'ର'କାର ବୋଲରେ ନବରସ ବର୍ଣ୍ଣିତ ହୋଇଛି । ବିଭିନ୍ନ ରସର ଲକ୍ଷଣ ଓ ଉଦ୍ଦୀପନ ବିଭାବ ଇତ୍ୟାଦି ବର୍ଣ୍ଣିତ ହେବା ସଙ୍ଗେସଙ୍ଗେ ଦଶଗୋଟି ଚୌପଦୀରେ କବି • ନବାନୁରାଗ, ଗୂଢ଼ୋକ୍ତି, ପଶ୍ଚାତ୍ତାପ, ଦୁଃଖନିବେଦନ, ପ୍ରାପ୍ତି ଇଚ୍ଛା , ଇତ୍ୟାଦି ପ୍ରତିପାଦନ କରିଛନ୍ତି । ଏହାର ଶେଷଭାଗରେ ଏକ ଚଉତିଶା ରହିଛି । ଚଉତିଶାଟିର ପ୍ରତ୍ୟେକ ପାଦର ଆରମ୍ଭ 'ର' ଅକ୍ଷରରେ ହୋଇଛି । କିନ୍ତୁ ପ୍ରଥମପଦର ଶେଷ 'କ', ଦ୍ୱିତୀୟ ପଦର ଶେଷ 'ଖ' —ଏହିପରି କ୍ରମରେ ଶେଷ ପଦ 'କ୍ଷ' ଅକ୍ଷରରେ ଶେଷ ହୋଇଛି । ଏହିପରି ଉକ୍ତ ଚଉତିଶା କବିଙ୍କର ଏକ ଅଭିନବ ଶୈଳୀରେ ରଚିତ ହୋଇଛି ।

ବିଶ୍ୱନାଥ କବିରାଜଙ୍କ ବିଖ୍ୟାତ 'ସାହିତ୍ୟ ଦର୍ପଣ' ଏବଂ ଅନ୍ୟତମ ରସବିଷୟକ ରଚନା 'ରସତରଙ୍ଗିଣୀ'ଦ୍ୱାରା କବି କେତେ ପ୍ରଭାବିତ ହୋଇ ଉକ୍ତ ଗ୍ରନ୍ଥ ରଚନା କରିଛନ୍ତି, ସେହି ବିଷୟ 'ର'-କାର ବୋଲରେ ସୂଚାଇଛନ୍ତି । ଯଥା—

"ରୁଚ୍ୟ ବୋଲି ଶୁଦ୍ଧ ଚଉପଦୀ ଚଉତିଶା
ରାଗ ପଞ୍ଚବିଧି ଗୀତେ ଥିବ
ରସପଞ୍ଚକ ବର୍ଣ୍ଣରେ ବର୍ଣ୍ଣନା ହେବାରୁ
ରସପଞ୍ଚକ ଏ ବୋଲାଇବ ।
ରସତରଙ୍ଗିଣୀ ଗ୍ରନ୍ଥ ସାହିତ୍ୟ ଦର୍ପଣ
କବି ସମ୍ମତକ ଏ ଆସିବ
ରସାଇବ ଚିତ୍ତ ଗୀତ ନାୟିକା-ନାୟକ
ଲକ୍ଷଣରେ ପରିପୂର୍ଣ୍ଣ ହେବ ।"

ଦ୍ୱିତୀୟ ବ୍ୟଞ୍ଜନ ବା 'ସ' କାର ବୋଲରେ ନାୟକ-ନାୟିକାଙ୍କର ବିଭିନ୍ନ ପ୍ରକାର ଭେଦ ଓ ଲକ୍ଷଣ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି ।

ତୃତୀୟ ପଞ୍ଚକ ବା 'ପ' କାର ବୋଲରେ ନାରୀର ଅଷ୍ଟାବିଂଶତି ଅଳଙ୍କାର (ହାବ, ଭାବ, ହେଳା, କାନ୍ତି, ଦୀପ୍ତି ଇତ୍ୟାଦି), ବିବିଧ କେଳି, କନ୍ଦର୍ପର ଦଶଦଶା, ଅଷ୍ଟ ସାତ୍ତ୍ୱିକ ବିକାର, ଅଷ୍ଟ ସାତ୍ତ୍ୱିକ ଦଣ୍ଡ ବର୍ଣ୍ଣିତ ହୋଇଛି ।

ଚତୁର୍ଥ ପଞ୍ଚକ ବା 'ଚ' କାର ବୋଲିରେ ନାୟିକାର ବିଭିନ୍ନ ଭେଦ ଓ ମଞ୍ଜିଷ୍ଠା ପ୍ରଭୃତି ବିଭିନ୍ନ ଅନୁରାଗ ପ୍ରତିପାଦିତ ହୋଇଛି ।

ପଞ୍ଚମ ପଞ୍ଚକରେ ('କ' କାର ବୋଲି) କବି ମାଳବ, ସିଂହଳ, ମହାରାଷ୍ଟ୍ର, କଳିଙ୍ଗ ଓ କୋଶଳ ପ୍ରଭୃତି ଦେଶରେ ବାସ କରୁଥିବା ନାରୀମାନଙ୍କର ବିବିଧ ଲକ୍ଷଣ ଓ ବାତ୍ସାୟନଶାସ୍ତ୍ରୋକ୍ତ ବିଭିନ୍ନ ପ୍ରକାର ଚୁମ୍ବନ ବିଷୟ ଉଲ୍ଲେଖ କରିଛନ୍ତି । ଶେଷଭାଗରେ କବିଙ୍କ ବଂଶପରିଚୟ ତଥା ତାହାଙ୍କ ପାଣ୍ଡିତ୍ୟ ଓ ସାଧନା ବିଷୟ ପ୍ରତିପାଦିତ ହୋଇଛି ।

କବି ତାହାଙ୍କର ଉକ୍ତ ରଚନାଟିରେ ସାହିତ୍ୟ ଦର୍ପଣ, ରସତରଙ୍ଗିଣୀ, କାବ୍ୟ ପ୍ରକାଶ, କାମସୂତ୍ର ଓ କବି କଳ୍ପଲତା ଗ୍ରନ୍ଥର ନାମୋଲେଖ କରିଛନ୍ତି । ପ୍ରକୃତ ପକ୍ଷରେ କହିବାକୁ ଗଲେ, ଉକ୍ତ ସମସ୍ତ ସଂସ୍କୃତ ଅଳଙ୍କାର ଓ କାମଶାସ୍ତ୍ର ବିଷୟକ ଗ୍ରନ୍ଥ ଅଧ୍ୟୟନ କରିନଥିଲେ, ଭଞ୍ଜ କବିଙ୍କ 'ରସ ପଞ୍ଚକ' ଗ୍ରନ୍ଥର ଯଥାର୍ଥ ତତ୍ତ୍ୱ ହୃଦୟଙ୍ଗମ କରିବା କଷ୍ଟସାଧ୍ୟ ହୋଇଥାଏ ।

## (୧୩) ଗୀତାଭିଧାନ—

ଏହା ପଦ୍ୟ ଆକାରରେ ରଚିତ ଏକ ଶବ୍ଦକୋଷ । ଆକାରରେ କ୍ଷୁଦ୍ର ହେଲେ ମଧ୍ୟ ଓଡ଼ିଆ ଭାଷାର ସର୍ବପ୍ରଥମ କୋଷଗ୍ରନ୍ଥ ଭାବରେ ଏହାର ସମ୍ମାନ ଯଥେଷ୍ଟ ଅଧିକ । ଗ୍ରନ୍ଥଟିର ପ୍ରାରମ୍ଭ ଭାଗରେ କବି ଲେଖିଛନ୍ତି—

"ଗୀତ ଅଭିଧାନ ହୋଇ ସାବଧାନ ଶୁଣ ସୁଜନେ ସନ୍ତୋଷେ
ଅମର ତ୍ରିକାଣ୍ଡ ଯାଦବ ଶାଶ୍ୱତ ମେଦିନୀ ବିଶ୍ୱପ୍ରକାଶେ ।
ପ୍ରଚୁର ଶବଦ ଯେତେ ତା କହିବା ଛାଡ଼ି ଅପ୍ରଚୁରମାନ
ବୁଝାଇଲେ ମୂର୍ଖେ ବୁଝିବେ ଅକ୍ଲେଶେ ସ୍ୱଭାବେ କୋବିଦଜନ ।
କ—ଠାରୁ କ୍ଷ—ଯାଏ ପ୍ରାନ୍ତାକ୍ଷର ଯେନ ବର୍ଗବର୍ଗ ଏ ହୋଇବ
ଏକା ଶବଦକୁ ନାନାର୍ଥେ ବୁଝାଇ କବିଙ୍କି ପ୍ରମୋଦ ଦେବ ॥"

(କାନ୍ତ/୨-୩)

ଅର୍ଥାତ୍, ସଂସ୍କୃତ ଭାଷାର ଅମରକୋଷ, ତ୍ରିକାଣ୍ଡଶେଷ, ଯାଦବ କୋଷ, ଶାଶ୍ୱତକୋଷ, ମେଦିନୀ କୋଷ, ଓ ବିଶ୍ୱପ୍ରକାଶ କୋଷର ସମସ୍ତ ସାର ଅଂଶ 'ଗୀତାଭିଧାନ'ରେ ସମାବେଶିତ ହୋଇଛି । କବି 'କ'-ଅନ୍ତ (କାନ୍ତ)

'ଖ'-ଅନ୍ତ (ଖାନ୍ତ) ଓ 'ଗ'-ଅନ୍ତ (ଗାନ୍ତ) ଇତ୍ୟାଦି ଭେଦରେ ଶବ୍ଦଗୁଡ଼ିକର ସଜ୍ଜୀକରଣ ପୂର୍ବକ ବିବିଧ ଅର୍ଥ ପ୍ରକାଶ କରିଛନ୍ତି । ଉଦାହରଣତଃ—

"କ ବୋଲି ପବନ ଜଳକୁ କ ବୋଲି ବ୍ରହ୍ମାକୁ ଶିରକୁ ସତ,
କୁ ବୋଲି କୁତ୍ସିତ କଥାକୁ ପୃଥ୍ୱୀକି ଶୁଣ ବୁଧେ ଦେଇ ଚିତ୍ତ ।
ଅର୍କ ବୋଲି ଅର୍କପର୍ଣ୍ଣିକି ରବିଙ୍କି ତାମ୍ର ସ୍ଫଟିକ ଇନ୍ଦ୍ରକୁ
ଅଙ୍କ ବୋଲି ଜାଣ କ୍ରୋଡ଼ ଚିହ୍ନ ପାପ ଦୁଃଖ ଦୂଷଣ ରେଖାକୁ ॥
(୧/୪, ୫)

ଏହିପରି ଭାବରେ କବି 'କ'-ଅନ୍ତ ଶବ୍ଦଠାରୁ ଆରମ୍ଭ କରି 'କ୍ଷାନ୍ତ' ('କ୍ଷ'-ଅନ୍ତ)ରେ ଶେଷ କରିଛନ୍ତି । ଗ୍ରନ୍ଥ ଶେଷରେ ଏହାର ବୈଶିଷ୍ଟ୍ୟ ପ୍ରତିପାଦନ କରିବାକୁ ଯାଇ ଲେଖିଛନ୍ତି—

"ନାନାର୍ଥ ଗୀତ ଅଭିଧାନ କଲି ମୁଁ ସାରସାର ଯେତେ ବାଛି
ଶବ୍ଦସମୁଦ୍ରବିତ ପାରି ହେବାକୁ କାହାର ସାମର୍ଥ୍ୟ ଅଛି ।
ମନଦେଲେ ମୂର୍ଖେ ପଣ୍ଡିତ ହୋଇବେ ବୁଧେ କରିବେ ପ୍ରଶଂସା
ସଂସ୍କୃତ ଲିଙ୍ଗ ସଂଗ୍ରହରେ ଅବ୍ୟକ୍ତ ବୋଧକ ପ୍ରାକୃତ ଭାଷା ।
କ-ଠାରୁ କ୍ଷ-ଯାଏ ବର୍ଣ୍ଣ ବିରଚନା ଅକ୍ଷର ଧରି ହେଜିବ
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଲୋଡ଼ା ଶବ୍ଦକୁ ଘେନିବ ।"
(ଶେଷାଂଶ)

ସର୍ବପ୍ରଥମେ ଓଡ଼ିଆ ଭାଷାର ଅଭିଧାନ ପ୍ରଣୟନ ପୂର୍ବକ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଉତ୍କଳୀୟମାନଙ୍କ ଜ୍ଞାନରାଜ୍ୟକୁ ବିକାଶ କରାଇବା ଦିଗରେ ଯଥେଷ୍ଟ ସାହାଯ୍ୟ କରିଛନ୍ତି ବୋଲି କୁହାଯାଇପାରେ ।

## ୧୪ । ଚିତ୍ରକାବ୍ୟ ବନ୍ଧୋଦୟ—

ଭାରତବର୍ଷରେ ସଂସ୍କୃତ ଭାଷାରେ ଯେତେ ପ୍ରକାର କାବ୍ୟ ରଚିତ ହୋଇଛି, ତନ୍ମଧ୍ୟରୁ 'ଚିତ୍ରକାବ୍ୟ' ଅନ୍ୟତମ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ "ଚିତ୍ରକାବ୍ୟ ବନ୍ଧୋଦୟ" ଓଡ଼ିଆଭାଷାର ପ୍ରଥମ ଚିତ୍ରକାବ୍ୟ ରୂପେ ବିବେଚିତ ହୋଇଥାଏ । ଏହି କାବ୍ୟ କବିଙ୍କ ଶେଷ ଜୀବନର ରଚନା ବୋଲି ପ୍ରମାଣିତ ହୋଇଛି । କାରଣ, କବି ଉକ୍ତ କାବ୍ୟର ଆରମ୍ଭରେ ସେହି ସମୟ ପର୍ଯ୍ୟନ୍ତ

ସ୍ୱରଚିତ ଗ୍ରନ୍ଥରାଜିର ଏକ ତାଲିକା ପ୍ରଦାନ କରିଛନ୍ତି । ବିଭିନ୍ନ ପ୍ରକାର କାବ୍ୟ-କବିତା ରଚନା କରି ସାରିବା ପରେ ସେ ଚିତ୍ରକାବ୍ୟ ରଚନାରେ ପ୍ରବୃତ୍ତି ହୋଇଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

କାବ୍ୟଟିକୁ ପ୍ରଧାନତଃ ଦୁଇଭାଗରେ ବିଭକ୍ତ କରି ବିଚାର କରାଯାଇପାରେ । ପ୍ରଥମଭାଗରେ ଅବିନା, ବିନା, ଦ୍ୱିଅକ୍ଷର, ଏକାକ୍ଷର, ସକାରବସ୍ତୁ, ସଓଷ୍ଠ୍ୟ, ନିରୋଷ୍ଠ୍ୟ, ଅନ୍ତର୍ଲିପି ବହିର୍ଲିପି, ଲୋମ-ବିଲୋମ, ସିଂହାବଲୋକନ, ଶୃଙ୍ଖଳା ଓ ଚ୍ୟୁତାକ୍ଷରର ଦୃଷ୍ଟାନ୍ତ ରହିଛି । ଦ୍ୱିତୀୟଭାଗରେ ଅଞ୍ଜଳି, ସୂର୍ଯ୍ୟରଥ, ପ୍ରାସାଦ, ପାଢ଼ି, ବିମାନ, ମଣ୍ଡପ, ଖଡ୍‌ଗ, ଶୂଳ, ମୁରଜ, ପରଶୁ ଇତ୍ୟାଦି ବୟାଅଶି ଗୋଟି ଚିତ୍ରବନ୍ଧ ରହିଛି ।

ପ୍ରସଙ୍ଗ କ୍ରମେ କବି ସଂସ୍କୃତଭାଷାର କବି କଳ୍ପଲତା, ସାହିତ୍ୟ ରତ୍ନାକର, ମାଘକାବ୍ୟ (ଶିଶୁପାଳବଧ), ଛନ୍ଦମଞ୍ଜରୀ ଓ ଛନ୍ଦରତ୍ନାକର ଗ୍ରନ୍ଥର ନାମୋଲ୍ଲେଖ କରିଛନ୍ତି । 'ଚିତ୍ରକାବ୍ୟ ବନ୍ଧୋଦୟ' ରଚନା କରିବା ନିମିତ୍ତ କବି ଏହି ସମସ୍ତ ଗ୍ରନ୍ଥଦ୍ୱାରା ପ୍ରଭାବିତ ହୋଇଥିବା ଅନୁମିତ ହୁଏ ।

ଗ୍ରନ୍ଥଟିରେ ସ୍ଥାନେସ୍ଥାନେ ଓଡ଼ିଆ ଭାଷା ସହିତ ସଂସ୍କୃତ, ବଙ୍ଗଳା, ତେଲୁଗୁ ଓ ଖରୋଠା ପ୍ରଭୃତି ଭାଷାର ପ୍ରୟୋଗ କବିଙ୍କ ବହୁଭାଷାଜ୍ଞାନର ପରିଚୟ ଦେଇଥାଏ ।

## ୧୪ । ରସଲେଖା—

ନାୟିକା ରସଲେଖାର ନାମାନୁସାରେ କାବ୍ୟଟିର ନାମକରଣ ହୋଇଛି । କପିସାଞ୍ଜି ଋଷିଙ୍କ କନ୍ୟା ରସଲେଖା ଓ ସୁଧାନିଧି ନାମକ ନଗରର ରାଜକୁମାର ଚନ୍ଦ୍ରଭୂଷଣଙ୍କ ପ୍ରଣୟଲୀଳା ମୁଖ୍ୟତଃ ଏଥିରେ ବର୍ଣ୍ଣିତ ହୋଇଛି । କାବ୍ୟାରମ୍ଭରେ କବି ହରିହରଙ୍କୁ ସ୍ତୁତି କରିଛନ୍ତି । ଭଞ୍ଜୀୟ କାବ୍ୟଶୈଳୀର ସମସ୍ତ ବୈଶିଷ୍ଟ୍ୟ କାବ୍ୟଟିରେ ଅନୁଭୂତ ହୋଇଥାଏ । ଅଳଙ୍କାର ପ୍ରୟୋଗ, ମଧୁର କଳ୍ପନା ଓ ସରସ ପଦାବଳୀର ସୁସମାବେଶ କାବ୍ୟଟିର ସୌନ୍ଦର୍ଯ୍ୟ ବୃଦ୍ଧି କରିଛି । ନାୟିକା ରସଲେଖାର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଙ୍କ କଳ୍ପନାଚାତୁରୀ ନିମ୍ନ ଉଦ୍ଧୃତିରୁ ସହଜରେ ଅବଧାରଣା କରିହେବ ।

"ତହିଁ ନସ୍ଥନ ଗଭଜ ଅନାଇ
ହୋଇ ଅଗନ୍ତ ମନ୍ତରେ ଭ୍ରମଇ
କି ଏ କୁରଙ୍ଗ କି ଅବା ଭୁରଙ୍ଗ
ଏଣି ତେଣିକ କରୁଛି ସୁରଙ୍ଗ ।
କି ଏ ନବ ବିକଚ ପଦ୍ମଦଳ
ପଡ଼ି କାଳିନ୍ଦୀଜଳେ ଟଳଟଳ ।
କି ଏ ସୁଧା ସିନ୍ଧୁରୁ ଅବତର
ହୁଏ ତରଳ ଗରଳ ଲହରୀ ।
କି ଏ ଗଙ୍ଗାକଲ୍ଲୋଳ ବାତ ଯୋଗେ
ମିଳ ଉତ୍ପଳ ଚଳେ ଦୁଇଦିଗେ
କି ଏ ସୁଧାମଧ୍ୟରେ କରେ ନାଟ
ବାଦ ଆରମ୍ଭି କେଳି ଖଞ୍ଜରୀଟ ।"

(୫/୫—୭)

## ୧୭ । ଯମକରାଜ ଚଉତିଶା—

ଏହା ଭଞ୍ଜକବିଙ୍କ ରଚିତ ଏକ ବିଖ୍ୟାତ ଚଉତିଶା । ଶ୍ରୀକୃଷ୍ଣ କୋକିଳ ସମକ୍ଷରେ ଶ୍ରୀରାଧାଙ୍କ ପ୍ରତି ନିଜର ପ୍ରେମଭାବ ଉକ୍ତ ଚଉତିଶା ମାଧ୍ୟମରେ ପ୍ରକାଶ କରିଛନ୍ତି । ରଚନାଟିରେ ଯମକାଳଙ୍କାରର ବ୍ୟାପକ ସମାବେଶ ହେତୁ କବି ଏହାର ଏହିପରି ନାମକରଣ କରିଛନ୍ତି । ନିମ୍ନରେ ଏଥିରୁ କେତୋଟି ପଦ ଉଦ୍ଧାର କରାଗଲା—

"କୁଞ୍ଜବନେ କଳାନିଧି କଳାନିଧି କଳାନିଧି କଳା ଶ୍ରୀହରି
କହନ୍ତି ସକଳ କଳକଣ୍ଠୀ ପାଶେ କଳକଣ୍ଠୀ ପ୍ରୀତି ସୁମରି
କୋକିଳ, କି କରୁଥିବ ରମାମଣି
କୁସୁମ-ଶାୟକ ଶାୟକ ଶାୟକ ଶାୟକ ବହୁଥିବ ଠାଣି ।
ଖଞ୍ଜନ ନୟନୀ କଟକ କଟକ କଟକ କଟକ ଶୋଭିନୀ
ଖେଦକ ଘେନିବ ହାଟକ ହାଟକ ହାଟକ ସୁମନ ମୋହିନୀ
କୋକିଳ, କ୍ଷିତି ମଣ୍ଡନା କଞ୍ଜାନନୀ
ଖଞ୍ଜି ଥିଲି ପ୍ରୀତି କଟକ କଟକ କଟକ ସୁସ୍ୱନାଗମନୀ ।

ଗଳାମାଳା ମୋର ପ୍ରିୟକ ପ୍ରିୟକ ପ୍ରିୟକ ପ୍ରିୟକ ଦେଖିବ
ଗଉରୀ ନକର ପ୍ରିୟକ ପ୍ରିୟକ ପ୍ରିୟକ ମୋହନୀ ବସିବ
କୋକିଳ, ଗୁଣମଣି କେହ୍ନେ ବଞ୍ଚିବ
ଗୁ ରୁ ସମ ଡୋଳା ତରଳ ତରଳ ତରଳ ତାର ହେଉଥିବ ।
(୧... ୩)

## (୧୭) ବଜାର ବୋଲି—

'ବଜାର ବୋଲି' କବିଙ୍କର ଏକ ହାସ୍ୟରସପୂର୍ଣ୍ଣ ରଚନା । ଏଥିରେ ସର୍ବମୋଟ ୩୦ଟି ପଦ ରହିଛି । ବଜାର ବା ହାଟରେ ନାରୀମାନେ ବିଭିନ୍ନ ଦ୍ରବ୍ୟ ବିକ୍ରୟ କରନ୍ତି । ରସିକ ପୁରୁଷମାନେ ସେମାନଙ୍କ ନିକଟରେ ଜିନିଷ କିଣିବା ନିମିତ୍ତ ଉପସ୍ଥିତ ହୋଇ ବକ୍ରୋକ୍ତି ଛଳରେ କଥାବାର୍ତ୍ତା କରନ୍ତି । ସେମାନଙ୍କ ଉକ୍ତିର ଦୁଇଗୋଟି ଅର୍ଥ ପ୍ରକାଶ ପାଉଥାଏ । ଉପେନ୍ଦ୍ର ଭଞ୍ଜଙ୍କ 'ବଜାର ବୋଲି'ର ପ୍ରତ୍ୟେକ ପଦରେ ଏହିପରି ଦୁଇଗୋଟିଅର୍ଥ ପ୍ରକାଶ ପାଉଛି । ଯଥା—

କମଳା ପସରା— ବାଳୀକି କେ ବୋଲେ
ତୋ କମଳା ଯୋଡ଼ି କେତେ
ଦେଖାଅ ଦେଖିବା ମୂଲ୍ୟ ହିଁ କରିବା
କହିଦିଅ ନେବୁ କେତେ ॥ ୧ ॥

ପ୍ରଥମ ଅର୍ଥ—ଜଣେ ସୁନ୍ଦରୀ ସ୍ତ୍ରୀ ହାଟରେ କମଳା ବିକ୍ରୟ କରୁଥିବା ଦେଖି ଜଣେ ପୁରୁଷ ତାହା ନିକଟରେ ଉପସ୍ଥିତ ହେଲି ଏବଂ କହିଲି—

"ତୁମେ ବିକ୍ରୟ କରୁଥିବା ଦୁଇଟି କମଳାର ମୂଲ୍ୟ କେତେ ? ମତେ ତାହା ଦେଖାଇଲେ ମୁଁ ମୂଲ୍ୟ ସ୍ଥିର କରିବ ଏବଂ ତୁ କେତେ ମୂଲ୍ୟ ନେବୁ କହ ।"

ଅନ୍ୟାର୍ଥ—ଜଣେ ରସିକ ପୁରୁଷ କହୁଛି—"ତୋ ବକ୍ଷରେ ଯେଉଁ ଦୁଇଟି ଉଚ୍ଚ ଉଚ୍ଚ କମଳା(ସ୍ତନ)ରହିଛି, ତାହା ମତେ ଦେଖାଅ । ମୁଁ ତାହାର ମୂଲ୍ୟ ନିରୂପଣ କରିବ । ତାହା ପାଇଁ ତୁ କେତେ ମୂଲ୍ୟ ନେବୁ କହ ।"

ସେ ବୋଲେ କମଳା ବିନା ମୋ କମଳା
ଅତି ଯତ୍ନେ ବଢ଼ିଅଛି
ଅମଳା କମଳା ସଜ ମେଳା ଦେଖ
ବାସ ଫୁଟି ପ୍ରକାଶୁଛି ॥ ୨ ॥

**ପ୍ରଥମ ଅର୍ଥ**—ମୋର ଏହି କମଳା ବିନା ପରିଶ୍ରମରେ ଉତ୍ପନ୍ନ ହୋଇଛି । ଏହା ଅତି ସୁନ୍ଦର ଓ ସୁସ୍ୱାଦୁ । ଏହା ପଟକା ହୋଇଥିବାରୁ ଏହାର ବାସ ଚତୁର୍ଦ୍ଦିଗକୁ ଚହଟୁ ଅଛି ।

**ଅନ୍ୟାର୍ଥ**—ଯୁବତୀ କହୁଛି—"ମୋର ଏହି କମଳା (କୁଚ) ଯୋଡ଼କ କୌଣସି ପୁରୁଷର କର ସ୍ପର୍ଶ ଲାଭ କରିନାହିଁ । ଏହା ମୋର ପିନ୍ଧିଥିବା ବସ୍ତ୍ରକୁ ଭେଦ କରି କପରି ଫୁଟି ଦିଶୁଅଛି, ଦେଖ ।"

କବିଙ୍କ 'ବଜାର ବୋଲି'ର ରଚନାଶୈଳୀଭଙ୍ଗୀ ପରବର୍ତ୍ତୀ କାଳର ଅଭିମନ୍ୟୁ ପ୍ରମୁଖ କବିଙ୍କୁ ପ୍ରଭାବିତ କରିଥିବା ଦେଖାଯାଏ ।

## (୧୮) ନୀଳାଦ୍ରୀଶ ଚଉତିଶା—

କବିଙ୍କର ଏହି ରଚନାଟି ୧୯୮୦ ମସିହାରେ ପଣ୍ଡିତ ସଦାଶିବ ରଥ ଶର୍ମାଙ୍କ ଦ୍ୱାରା ସଂପାଦିତ ହୋଇ ପୁରୀ ସଦ୍‌ଗ୍ରନ୍ଥନିକେତନ (ଶ୍ରୀଜଗନ୍ନାଥ ମନ୍ଦିର-ବେଢ଼ା ମଧ୍ୟସ୍ଥ) ଦ୍ୱାରା ପ୍ରକାଶ ଲାଭ କରିଛି । ଏହା ଏକ ଭକ୍ତି ରସାତ୍ମକ ରଚନା । କବି ଏଥିରେ ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି । ଶେଷ ପଦରେ କବି ଲେଖିଛନ୍ତି—

"କ୍ଷମାନିଧିଙ୍କୁ ବାରେ କ୍ଷମ ସୁଦର୍ଶନରେ
କ୍ଷିତି କ୍ଷାତିକୁ ସମର୍ପିଲି
କ୍ଷମ ମୋ ଅପରାଧ କ୍ଷାମ ମୋ ଜୀବ ସାଧ
କ୍ଷାତ ଚରଣ ତଳେ ଦେଲି
ହେ ନୀଳାଦ୍ରୀଶ !
କ୍ଷୟ ତ ହେଲଣି ଏ ପିଣ୍ଡ
କ୍ଷାଳ ଏ ଜଞ୍ଜାଳର ଦଣ୍ଡ
କ୍ଷାନ୍ତି ଏ ଉପେନ୍ଦ୍ରର କ୍ଷାତକୁଳ ବେଭାର
କ୍ଷେମ ଚରଣେ ହେଉ ତୁଣ୍ଡ ହେ ।"

ଏହି ପଦରେ ଥିବା ଭାବବୃତ୍ତି ଲକ୍ଷ୍ୟ କରି କେତେଜଣ ଆଲୋଚକ ଏହାକୁ କବିଙ୍କ ଶେଷ ଜୀବନର ରଚନା ବୋଲି କହିଥାନ୍ତି ।

ଏତଦ୍‌ବ୍ୟତୀତ କବିଙ୍କର 'ଚୌପଦୀଚନ୍ଦ୍ର', 'ଲାବଣ୍ୟନିଧି', 'ଚନ୍ଦ୍ରରେଖା', 'ଚଉପଦୀହାର', 'ଦଶପୋଇ', 'ରସପୋଇ' ପ୍ରଭୃତି କେତେକ କ୍ଷୁଦ୍ର ରଚନା ପ୍ରକାଶ ଲାଭ କରିଛି । ଏହି ସମସ୍ତ ରଚନାରେ ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିଭା ପ୍ରତିଫଳିତ ହୋଇଛି । ଉକ୍ତ ସମସ୍ତ ରଚନା ପାଠ ପୂର୍ବକ ସେଗୁଡ଼ିକର ପ୍ରକୃତ ଅର୍ଥ ହୃଦୟଙ୍ଗମ କରିବାଦ୍ୱାରା ରୀତିଯୁଗୀୟ କାବ୍ୟକଳା ସମ୍ପର୍କରେ ମନରେ ସ୍ପଷ୍ଟ ଧାରଣା ସୃଷ୍ଟି ହୁଏ ।



# ଓଡ଼ିଆ ସାହିତ୍ୟରେ ରୀତିଯୁଗ

କୌଣସି କବିଙ୍କ ସାରସ୍ୱତକୃତିର ଯଥାର୍ଥ ମୂଲ୍ୟାଙ୍କନ କରିବାକୁ ଗଲାବେଳେ ତତ୍କାଳୀନ ସାହିତ୍ୟିକ ବାତାବରଣ ସମ୍ପର୍କରେ କିଞ୍ଚିତ୍ ଆଲୋକପାତ କରିବା ଏକାନ୍ତ ଆବଶ୍ୟକ ମନେହୁଏ । ଜଣେ କବି କି ପ୍ରକାର ସାହିତ୍ୟିକ, ସାମାଜିକ ତଥା ରାଜନୈତିକ ପରିବେଶ ମଧ୍ୟରେ ସ୍ୱକୀୟ ପ୍ରତିଭାର ବିକାଶ ସାଧନ କରିଥିଲେ, ସେହି ବିଷୟ ସମ୍ୟକ୍ ଭାବରେ ଅବହିତ ନହେଲେ କବିଙ୍କ ରଚନାର ଯଥାର୍ଥ ମୂଲ୍ୟାଙ୍କନ କରିବା କଷ୍ଟକର ହୁଏ । ଏହି ଦୃଷ୍ଟିରୁ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ସର୍ବଶ୍ରେଷ୍ଠ କୃତି 'ବୈଦେହୀଶ ବିଳାସ' ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ଓଡ଼ିଶାରେ ରୀତିଯୁଗର ସାହିତ୍ୟିକ ଆଦର୍ଶ ଓ ଆଭିମୁଖ୍ୟ ବିଷୟରେ କିଞ୍ଚିତ୍ ଆଲୋକପାତ କରାଗଲା ।

## ରୀତି ଯୁଗର ସମୟ ସୀମା—

ଓଡ଼ିଆ ସାହିତ୍ୟରେ ରୀତିଯୁଗର ସମୟସୀମା ହେଉଛି ଖ୍ରୀ: ୧୬୫୦ରୁ ୧୮୫୦ । ଏହା ପୂର୍ବରୁ ପଞ୍ଚଦଶ ଶତାବ୍ଦୀରେ ମହାକବି ସାରଳା ଦାସ ତାହାଙ୍କର ବିଖ୍ୟାତ କୃତି ମହାଭାରତ ରଚନା ପୂର୍ବକ ପରବର୍ତ୍ତୀ କାଳର ସାହିତ୍ୟସ୍ରଷ୍ଟାମାନଙ୍କ ପାଇଁ ଏକ ସୁଗମ ରାଜମାର୍ଗ ପ୍ରସ୍ତୁତ କରି ଦେଇଥିଲେ । ତାହାଙ୍କ ପରେ ୧୬ଶ ଶତାବ୍ଦୀରେ କୁତାସିଦ୍ଧା ବଳରାମ ଦାସ ରଚନା କରିଥିଲେ ଦାଣ୍ଡି ରାମାୟଣ । ସେହିପରି ଭକ୍ତକବି ଜଗନ୍ନାଥ ଦାସଙ୍କ ଲେଖନୀରୁ ସୃଷ୍ଟି ହୋଇଥିଲା ଭାଗବତ ଗ୍ରନ୍ଥ । ଅଚ୍ୟୁତାନନ୍ଦ ରଚନା କରିଥିଲେ ହରିବଂଶ । ଏହା ସଙ୍ଗେସଙ୍ଗେ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତଙ୍କ ଦ୍ୱାରା ଅନ୍ୟାନ୍ୟ ବହୁ ଆଧ୍ୟାତ୍ମିକ ତତ୍ତ୍ୱସମ୍ବଳିତ ଗ୍ରନ୍ଥ ସୃଷ୍ଟି ହୋଇଥିଲା । ମୋଟ ଉପରେ କହିବାକୁ ଗଲେ, ଭଞ୍ଜ ପୂର୍ବବର୍ତ୍ତୀ କାଳରେ ଓଡ଼ିଆ ଭାଷାରେ ପୁରାଣ ଓ ଆଧ୍ୟାତ୍ମିକ ତତ୍ତ୍ୱସମ୍ବଳିତ ଗ୍ରନ୍ଥମାନ ସୃଷ୍ଟି ହୋଇଥିଲା ।

ପୁରାଣଯୁଗ ପରେ ଓଡ଼ିଶାର କବିମାନେ ଆଳଙ୍କାରିକ ରୀତି ଅନୁସରଣ ପୂର୍ବକ ବିଭିନ୍ନ ରାଗରାଗିଣୀମଣ୍ଡିତ କାବ୍ୟକବିତା ରଚନାରେ ମନୋନିବେଶ କଲେ । ଏହି ସମୟକୁ ଓଡ଼ିଆ ସାହିତ୍ୟରେ 'ରୀତିଯୁଗ' ନାମରେ ନାମିତ

କରାଯାଇଛି । ପୁନଶ୍ଚ ପର୍ବବର୍ତ୍ତୀକାଳର ପୁରାଣ ପରିବର୍ତ୍ତେ ଏହି ସମୟରେ କବିମାନେ କାବ୍ୟ ରଚନାରେ ମନୋନିବେଶ କରିଥିବାରୁ ଏହାକୁ 'କାବ୍ୟଯୁଗ' ବୋଲି ମଧ୍ୟ କୁହାଯାଇଥାଏ । ଉପେନ୍ଦ୍ର ଭଞ୍ଜ ଥିଲେ ଏହି ଯୁଗର ସର୍ବଶ୍ରେଷ୍ଠ କବି । ଏହି ସମୟର ଅନ୍ୟାନ୍ୟ କବିମାନଙ୍କ ରଚନା ଅପେକ୍ଷା ତାହାଙ୍କ ରଚନାବଳୀର ସଂଖ୍ୟା ଥିଲି ସର୍ବାଧିକ । ତାହାଙ୍କର ରଚନା ବା କବିତ୍ୱଗୁଣଦ୍ୱାରା ସମସାମୟିକ ତଥା ପରବର୍ତ୍ତୀ କାଳର ବହୁ କବି ଅନୁପ୍ରାଣିତ ହୋଇଥିବା ଦେଖାଯାଏ । ଏହି ଦୃଷ୍ଟିରୁ ଉପେନ୍ଦ୍ର ଭଞ୍ଜଙ୍କ ନାମନୁସାରେ 'ରୀତିଯୁଗ'କୁ 'ଭଞ୍ଜଯୁଗ' ନାମରେ ମଧ୍ୟ ନାମକରଣ କରାଯାଇଛି । କେତେକ ଆଲୋଚକ ଭଞ୍ଜ ପୂର୍ବବର୍ତ୍ତୀ କାଳକୁ 'ଆଦିଯୁଗ', ଭଞ୍ଜଯୁଗକୁ ମଧ୍ୟଯୁଗ ଓ ଭଞ୍ଜ ପରବର୍ତ୍ତୀ କାଳକୁ 'ଆଧୁନିକ ଯୁଗ' ରୂପେ ନାମିତ କରିଥିବା ଦେଖାଯାଏ । ଏହିପରି ଭାବରେ ଓଡ଼ିଆ ସାହିତ୍ୟରେ ଖ୍ରୀ: ୧୭୫୦ରୁ ୧୮୫୦ ଅବଧି 'ରୀତିଯୁଗ', 'କାବ୍ୟଯୁଗ', 'ଭଞ୍ଜଯୁଗ'—ଏହିପରି ବିଭିନ୍ନ ନାମରେ କଥିତ ହୋଇଥାଏ ।

## ରୀତି ପୂର୍ବବର୍ତ୍ତୀ କାଳର କବି ଓ କାବ୍ୟ—

୧୭୫୦ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ରୀତିସାହିତ୍ୟ ଆକସ୍ମିକ ଭାବରେ ସୃଷ୍ଟି ହୋଇନଥିଲା । ଏହାର ପ୍ରାୟ ଦେଢ଼ଶହ ବର୍ଷ ପୂର୍ବରୁ ଓଡ଼ିଶାର ବହୁ କବି ବିଭିନ୍ନ ରାଗରାଗିଣୀମଣ୍ଡିତ ଛାନ୍ଦକାବ୍ୟ ରଚନାର ପରଂପରା ସୃଷ୍ଟି କରିଥିଲେ । ଅର୍ଥାତ୍ ୧୬ଶ ଶତାବ୍ଦୀରୁ ଓଡ଼ିଆ ରୀତିକାବ୍ୟର ଆଦ୍ୟ ବୀଜ ବପନ କରାଯାଇଥିଲା । ଏହା କ୍ରମଶଃ ବିକଶିତ ହୋଇ ୧୭୫୦ ଖ୍ରୀଷ୍ଟାବ୍ଦ ବେଳକୁ ଏକ ବିଶାଳ ଦ୍ରୁମରେ ପରିଣତ ହୋଇଥିଲା । ଉକ୍ତ 'ରୀତିସାହିତ୍ୟଦ୍ରୁମ' ପରବର୍ତ୍ତୀ କାଳରେ ବହୁ ଶାଖାପ୍ରଶାଖା ଧାରଣ ପୂର୍ବକ ଫଳପୁଷ୍ପରେ ମଣ୍ଡିତ ହୋଇଥିଲା ।

ରୀତି ପୂର୍ବବର୍ତ୍ତୀ କାଳର ଯେଉଁ କେତେଜଣ କବି ଛାନ୍ଦକାବ୍ୟ ରଚନା ପୂର୍ବକ ପରବର୍ତ୍ତୀକାଳର (ରୀତିଯୁଗ) କାବ୍ୟ-ସ୍ରଷ୍ଟାମାନଙ୍କୁ ମାର୍ଗ ନିର୍ଦ୍ଦେଶ କରିଥିଲେ, ସେମାନଙ୍କ ନାମ ଓ ରଚନା ନିମ୍ନରେ ଉଲ୍ଲିଖିତ ହେଲା—

୧ । ଦାମୋଦର ଦାସ—ରସକୁଲ୍ୟା ଚଉତିଶା

୨ । ଅର୍ଜ୍ଜୁନ ଦାସ—ରାମବିଭା, କଳ୍ପଲତା

୩ । ଦେବ ଦୁର୍ଲ୍ଲଭ ଦାସ—ରହସ୍ୟ ମଞ୍ଜରୀ

୬ । ଶ୍ରୀନନ୍ଦାସ—ଗୋପୀଚିନ୍ତନ
୫ । ଶିଶୁ ଶଙ୍କର ଦାସ—ଉଷାଭିଳାଷ
୬ । ପୁରୁଷୋତ୍ତମ ଦାସ—କାଞ୍ଚି କାବେରୀ (କାବ୍ୟ)
୭ । କପିଳେଶ୍ୱର ଦାସ—କପଟ କୋଇଲି
୮ । ନରସିଂହ ସେଣ—ପରିମଳା
୯ । ବିଷ୍ଣୁ ଦାସ—ପ୍ରେମଲୋଚନା
୧୦ । ହରିହର ନରେନ୍ଦ୍ର—ମଦାଳସା
୧୧ । ପ୍ରତାପ ରାୟ—ଶଶୀସେଣା
୧୨ । ବନମାଳୀ ଦାସ—ଲୁଟ ଇଚ୍ଛାବତୀ
୧୩ । ପାର୍ଥ ଶ୍ରୀଚନ୍ଦନ—କଳାବତୀ
୧୪ । କାର୍ତ୍ତିକ ଦାସ—ରୁକ୍ମଣୀ ବିଭା
୧୫ । ଶ୍ରୀଧର ଦାସ—କାଞ୍ଚନଲତା
୧୬ । ଧନାଇ ଦାସ—ଗୋପୀଭାଷା

## 'ରୀତି'ର ସଂଜ୍ଞା ଓ ସ୍ୱରୂପ—

ଭାରତବର୍ଷରେ ଯେଉଁ ଛଅଗୋଟି ସାହିତ୍ୟିକ ମତବାଦ ପ୍ରଚଳିତ ହୋଇଛି, ତନ୍ମଧ୍ୟରୁ 'ରୀତିବାଦ' ଅନ୍ୟତମ (୨୧)। ବାମନାଚାର୍ଯ୍ୟ ଏହି ମତବାଦର ମୁଖ୍ୟ ପ୍ରବକ୍ତା ରୂପେ ସମ୍ମାନିତ ହୋଇଥାନ୍ତି। ସେ ତାହାଙ୍କର 'କାବ୍ୟାଳଙ୍କାର ସୂତ୍ରାଣି' ନାମକ ଅଳଙ୍କାର ଗ୍ରନ୍ଥରେ 'ରୀତି'ର ସଂଜ୍ଞା ନିରୂପଣ କରିବାକୁ ଯାଇ ଲେଖିଛନ୍ତି—"ବିଶିଷ୍ଟା ପଦରଚନା ରୀତିଃ"। ଅର୍ଥାତ୍ ବିଶିଷ୍ଟ ପଦସଂଘଟନା ହିଁ 'ରୀତି' ନାମରେ କଥିତ। ଅନ୍ୟଭାଷାରେ କହିବାକୁ ଗଲେ, ରସ ଓ ଭାବ ଇତ୍ୟାଦିକୁ ପ୍ରଭାବଶାଳୀ କରାଇବା ନିମିତ୍ତ ଶବ୍ଦ ଓ ଅର୍ଥର ଯେଉଁ ସମୁଚିତ ସଂଯୋଗ କରାଯାଏ, ତାହାହିଁ ରୀତିର ମୂଳ ବୈଶିଷ୍ଟ୍ୟ। ମାନବ ଶରୀରର ସୌନ୍ଦର୍ଯ୍ୟ ସଂପାଦନ ନିମିତ୍ତ ଯେଉଁପରି ବିଭିନ୍ନ ଅବୟବକୁ ସୁନ୍ଦର ଭାବରେ

---

(୨୧) ଏହି ଛଅଗୋଟି ସାହିତ୍ୟିକ ମତବାଦ ହେଉଛି—
(୧) ରସବାଦ, (୨) ରୀତି ଓ ଗୁଣବାଦ, (୩) ଅଳଙ୍କାରବାଦ, (୪) ଧ୍ୱନିବାଦ, (୫) ବକ୍ରୋକ୍ତିବାଦ ଓ (୬) ଔଚିତ୍ୟବାଦ।

ସଜ୍ଜିତ କରାଯାଇଥାଏ, କାବ୍ୟର ସୌନ୍ଦର୍ଯ୍ୟ ପ୍ରକଟନ ନିମିତ୍ତ ସେହିପରି ବିଶିଷ୍ଟ ପଦାବଳୀର ସମାବେଶ ଏକାନ୍ତ ଅପରିହାର୍ଯ୍ୟ ।

ବାମନଙ୍କ ପ୍ରଚଳିତ ଉକ୍ତ 'ରୀତିବାଦ'କୁ ମୂଳ ଉପଜୀବ୍ୟ କରି ଭାରତବର୍ଷର ବହୁ କବି ସ୍ୱସ୍ୱ ପ୍ରାନ୍ତୀୟ ଭାଷାରେ ଉଚ୍ଚାଙ୍ଗ କାବ୍ୟ କବିତାମାନ ରଚନା କରିଯାଇଛନ୍ତି । କିନ୍ତୁ ଓଡ଼ିଆ ରୀତିସାହିତ୍ୟ ବିଷୟ ଆଲୋଚନା ପ୍ରସଙ୍ଗରେ କେବଳ ବାମନଙ୍କ ରୀତିବାଦ ଉପରେ ଗୁରୁତ୍ୱ ଆରୋପ କରାଯାଇ ନଥାଏ । ଓଡ଼ିଆ ରୀତି କାବ୍ୟର ସ୍ରଷ୍ଟାଗଣ କେବଳ 'ବିଶିଷ୍ଟା ପଦରଚନା' ପ୍ରତି ଦୃଷ୍ଟି ନ ଦେଇ ସ୍ୱସ୍ୱ ରଚନାବଳୀରେ ରସ, ଧ୍ୱନି, ଅଳଙ୍କାର, ଔଚିତ୍ୟ ଓ ବକ୍ରୋକ୍ତିକୁ ସ୍ଥାନ ପ୍ରଦାନ କରିଛନ୍ତି । ମୋଟ ଉପରେ କହିବାକୁ ଗଲେ, ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଧନଞ୍ଜୟ, ଉପେନ୍ଦ୍ର ଓ ଅଭିମନ୍ୟୁ ପ୍ରଭୃତିଙ୍କ ଲେଖନୀରୁ ଯେଉଁ କାବ୍ୟ କବିତାରାଜି ସୃଷ୍ଟି ହେଲା, ତନ୍ମଧ୍ୟରେ ରସ, ରୀତି, ଅଳଙ୍କାର, ଧ୍ୱନି, ଔଚିତ୍ୟ ଓ ବକ୍ରୋକ୍ତିର ଅପୂର୍ବ ସମାବେଶ ଘଟିଛି । ଏହି ଦୃଷ୍ଟିରୁ ଓଡ଼ିଆ ରୀତିସାହିତ୍ୟ ସମଗ୍ର ଭାରତବର୍ଷରେ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ଅତଏବ, ଓଡ଼ିଆ ରୀତିଯୁଗର ଯେ କୌଣସି କବିଙ୍କ ସାରସ୍ୱତ କୃତିର ମୂଲ୍ୟାୟନ କରିବାକୁ ଗଲାବେଳେ ପ୍ରାଚ୍ୟ ସାହିତ୍ୟର ଉକ୍ତ ଛଅଗୋଟି ଅଳଙ୍କାରିକ ବାଦ ବିଷୟରେ ସଚେତନ ହେବା ଏକାନ୍ତ ଆବଶ୍ୟକ ।

## ରୀତିଯୁଗର ରାଜନୈତିକ ଓ ସାମାଜିକ ଓ ପୃଷ୍ଠଭୂମି—

ସମସାମୟିକ ରାଜନୈତିକ ଶାସନବ୍ୟବସ୍ଥା ଓ ସାମାଜିକ ପରିବେଶ ଯେ-କୌଣସି ଦେଶର ସାହିତ୍ୟ ଉପରେ ପ୍ରଭାବ ବିସ୍ତାର କରିଥାଏ । ଏହି ଦୃଷ୍ଟିରୁ ଭଞ୍ଜଯୁଗର ସାହିତ୍ୟିକ ବିକାଶ ବିଷୟ ଆଲୋଚନା କରିବାକୁ ଗଲାବେଳେ ତତ୍କାଳୀନ ରାଜନୈତିକ ଓ ସାମାଜିକ ପୃଷ୍ଠଭୂମି ଉପରେ କିଞ୍ଚିତ୍ ଆଲୋକପାତ କରିବା ଏକାନ୍ତ ଆବଶ୍ୟକ ମନେହୁଏ ।

ଓଡ଼ିଶାର ରାଜନୈତିକ ଇତିହାସ ଅନୁଶୀଳନ କଲେ ଜଣାଯାଏ ଯେ, ସୂର୍ଯ୍ୟବଂଶର ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ଓଡ଼ିଶାର ଶାସନ-କ୍ଷେତ୍ରରେ ବିପର୍ଯ୍ୟସ୍ତ ଅବସ୍ଥା ସୃଷ୍ଟି ହେଲା । ପ୍ରତାପରୁଦ୍ରଦେବ ଖ୍ରୀ: ୧୪୯୭ ରୁ ଖ୍ରୀ: ୧୫୪୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାହାଙ୍କ ପିତାମହ କପିଳେନ୍ଦ୍ର ଦେବ

ଓଡ଼ିଶାର ସୀମାକୁ ଯେଉଁପରି ଭାବରେ ବିସ୍ତୃତ କରାଇଥିଲେ, ପ୍ରତାପରୁଦ୍ରଦେବଙ୍କ ସମୟରେ ତାହା ଆଉ ସୁରକ୍ଷିତ ହୋଇ ପାରିଲା ନାହିଁ । ବିଜୟନଗର ନରପତି କୃଷ୍ଣଦେବ ରାୟଙ୍କ ଦ୍ୱାରା ପ୍ରତାପରୁଦ୍ର ଦେବ ପରାସ୍ତ ହୋଇ ତାହାଙ୍କୁ କଳିଙ୍ଗ ସାମ୍ରାଜ୍ୟର ଦକ୍ଷିଣାଞ୍ଚଳ ଛାଡ଼ି ଦେଇଥିଲେ । ସେ ଦାକ୍ଷିଣାତ୍ୟ ସହିତ ଯୁଦ୍ଧରେ ବ୍ୟାପୃତ ହୋଇଥିବା ସୁଯୋଗ ନେଇ ବଙ୍ଗର ମୁସଲମାନି ସେନାବାହିନୀ ଉତ୍ତର ଦିଗରୁ ଓଡ଼ିଶା ଆକ୍ରମଣ କରିଥିଲେ । ଏହିପରି ଦେଖିବାକୁ ଗଲେ, ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱକାଳ ଓଡ଼ିଶାର ରାଜନୈତିକ ଇତିହାସରେ ଏକ ଦୁର୍ଦ୍ଦିନର ସମୟ ଥିଲା । ଏହାର ପରବର୍ତ୍ତୀ କାଳରେ ୧୫୬୮ ଖ୍ରୀଷ୍ଟାବ୍ଦରେ 'ଗୋହିରା ଟିକିରି' ଯୁଦ୍ଧରେ ଓଡ଼ିଶାର ଶେଷ ସ୍ୱାଧୀନ ନରପତି ମୁକୁନ୍ଦ ଦେବଙ୍କ ମୃତ୍ୟୁ ଓଡ଼ିଶାର ଶାସନକ୍ଷେତ୍ରରେ ଆହୁରି ଦାରୁଣ ବିପର୍ଯ୍ୟୟ ଅବସ୍ଥା ସୃଷ୍ଟି କଲା । ଏହିଠାରୁ ଓଡ଼ିଶା ହେଲା ପରାଧୀନ । ଖ୍ରୀ: ୧୫୬୮ ରୁ ୧୫୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶା ମୁସଲମାନମାନଙ୍କ ଅଧୀନ ଏବଂ ୧୫୯୨ ଖ୍ରୀ: ଠାରୁ ମୋଗଲମାନଙ୍କ ଅଧୀନ ହେଲା । ଓଡ଼ିଶାରେ ନାମକୁ ମାତ୍ର ଜଣେ ଗଜପତି ରାଜା ରହିଲେ । ଖୋର୍ଦ୍ଧା ଓ ତାହାର ନିକଟବର୍ତ୍ତୀ ଅଞ୍ଚଳ ତାହାଙ୍କର ଶାସନାଧୀନ ଥିଲା । ସେହି ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଖଣ୍ଡବିଖଣ୍ଡିତ ହୋଇ ସାମନ୍ତ ରାଜାମାନଙ୍କ ଦ୍ୱାରା ଶାସିତ ହେଲା । ଓଡ଼ିଶାର ତତ୍କାଳୀନ ସାମାଜିକ ଓ ରାଜନୈତିକ ଅବସ୍ଥା ସମ୍ପର୍କରେ ଆଲୋକପାତ କରିବାକୁ ଯାଇ ସ୍ୱର୍ଗତଃ ପଣ୍ଡିତ କୃପାସିନ୍ଧୁ ମିଶ୍ର ତାହାଙ୍କର 'ଉତ୍କଳ ଇତିହାସ'ରେ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ତାହା ଏଠାରେ ଉଦ୍ଧାର କରିବା ଏକାନ୍ତ ଆବଶ୍ୟକ ମନେହୁଏ । ସେ ଲେଖିଛନ୍ତି—"ଉତ୍କଳର ଶେଷ ସ୍ୱାଧୀନ ଗଜପତି ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁଠାରୁ ମରହଟ୍ଟା ଅଧିକାର ପର୍ଯ୍ୟନ୍ତ (୧୫୬୮ ରୁ ୧୭୫୧) ଏ ଦୁଇଶତ ବର୍ଷ ମଧ୍ୟରେ ଉତ୍କଳ ଇତିହାସର ଯେ ବିପ୍ଳବ, ଲୁଣ୍ଠନ ଓ ଅତ୍ୟାଚାର, ରକ୍ତପାତର କାହାଣୀ ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ହେଲା, ତହିଁରୁ ଦେଶର ଶାସନତନ୍ତ୍ର ଯେ କେବେ ନିୟମିତ ଶୃଙ୍ଖଳାରେ ଚାଲିଥିଲା, ବୋଧ ହେଉନାହିଁ । ମାତ୍ର ସେ ସକଳ ଅଶାନ୍ତି, ଅରାଜକତା ଓ ବିଶୃଙ୍ଖଳା ମଧ୍ୟରେ ସମୟ ସମୟରେ ଜଣେ ସୁଶାସକଙ୍କ ଶାସନ ପଦ୍ଧତିର ଯେ ଆଭାସ ମିଳେ, ତହିଁରେ ଦେଶବାସୀ ସାମାନ୍ୟ ଆଶ୍ୱାସନା ପାଉଥିଲେ । × × ସମସ୍ତ ଲୁଣ୍ଠନ ଅତ୍ୟାଚାର ସତ୍ତ୍ୱେ × × କୃଷି ବାଣିଜ୍ୟରେ ଦେଶବାସୀ ଆପଣାର ଆର୍ଥିକ ଅବସ୍ଥାର ସ୍ୱଚ୍ଛନ୍ଦତା ବଢ଼ାଉଥିଲେ × ×

ଗଜପତିଙ୍କ ରାଜତ୍ୱରେ ସାହିତ୍ୟଚର୍ଚ୍ଚା ଉତ୍କଳରୁ ଲୋପପାଇ ନଥିଲା । ବ୍ରାହ୍ମଣମାନେ ସାଧାରଣତଃ ସଂସ୍କୃତ ଚର୍ଚ୍ଚାରେ ଅନୁରକ୍ତ ଥିଲେ । ଭୋଇବଂଶୀୟ ରାଜାମାନଙ୍କ ଶାସନ ଦାନ ଓ କୌଳିକନ୍ୟ ବିଧାନ ତତ୍କାଳୀନ ପାଣ୍ଡିତ୍ୟର ସମଧିକ ପରିଚୟ ଦିଏ । କାବ୍ୟ, ନାଟକ, ସ୍ମୃତି, ବ୍ୟାକରଣ, ଦର୍ଶନ, ଅଭିଧାନ, କର୍ମକାଣ୍ଡ, ଯୁଦ୍ଧବିଦ୍ୟା, ଜ୍ୟୋତିଷ, ଆୟୁର୍ବେଦ, ଗଣିତ ପ୍ରଭୃତି ବିଦ୍ୟାରେ ସେ କାଳରେ ପଣ୍ଡିତମାନେ ମୂଳଗ୍ରନ୍ଥ ଓ ଟୀକା ଆକାରରେ ବହୁଗ୍ରନ୍ଥ ପ୍ରଣୟନ କରିଥିଲେ ।" (୨୨)

ଉପର୍ଯ୍ୟୁକ୍ତ ଉଦ୍ଧୃତିରୁ ତତ୍କାଳୀନ ଓଡ଼ିଶାର ସାମାଜିକ, ରାଜନୈତିକ ଓ ସାହିତ୍ୟିକ ଅବସ୍ଥା ସମ୍ପର୍କରେ ଏକ ସଂକ୍ଷିପ୍ତ, ଅଥଚ ସ୍ପଷ୍ଟ ଚିତ୍ର ମିଳିଥାଏ । ସେହି ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଥିବା ସାମନ୍ତ ରାଜାମାନଙ୍କ ମଧ୍ୟରୁ ଅନେକ ଅତ୍ୟନ୍ତ ବିଳାସପ୍ରିୟ ଥିଲେ । ସେମାନେ ଜୀବନକୁ ଭୋଗସର୍ବସ୍ୱ କରି ଗଢ଼ିବା ନିମିତ୍ତ ଚେଷ୍ଟିତ ଥିଲେ । ତତ୍କାଳୀନ ବହୁ ରାଜା ଏକାଧିକ ପତ୍ନୀ ବିବାହପୂର୍ବକ ସେମାନଙ୍କୁ ଉପଭୋଗ କରିବା ଦିଗରେ, ଅତ୍ୟନ୍ତ ଆଗ୍ରହୀ ଥିବା ଜଣାଯାଏ ।

ଏହା ସଙ୍ଗେସଙ୍ଗେ ରାଜାମାନେ ସଙ୍ଗୀତ ଓ ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରୁଥିଲେ । ଅନେକ ରାଜାଙ୍କ ଦରବାରରେ ସଂଗୀତ ଓ ସାହିତ୍ୟସଭାମାନ ଗଠିତ ହୋଇଥିଲା । ବହୁ ସଂଗୀତରଚୟିତା ରାଜାଙ୍କ ପୃଷ୍ଠପୋଷକତା ଲାଭପୂର୍ବକ ଉଚ୍ଚାଙ୍ଗ ସଙ୍ଗୀତମାନ ସୃଷ୍ଟି କରୁଥିଲେ । ତାହାକୁ ଗାନ କରିବା ନିମିତ୍ତ ସଙ୍ଗୀତଜ୍ଞ ଓ ନୃତ୍ୟ ପରିବେଷଣ ନିମିତ୍ତ ନର୍ତ୍ତକ ଓ ନର୍ତ୍ତକୀ ମଧ୍ୟ ରାଜ ଦରବାରରେ ଉପସ୍ଥିତ ରହୁଥିଲେ । ବିଭିନ୍ନ ରାଜାଙ୍କର ସାହିତ୍ୟସଭାରେ ବହୁ କବି ଓ ପଣ୍ଡିତ ସ୍ଥାନ ଲାଭ କରିଥିଲେ । କବିମାନେ ଉଚ୍ଚାଙ୍ଗ କାବ୍ୟ ରଚନା କରୁଥିଲେ ଏବଂ ପଣ୍ଡିତମାନଙ୍କଦ୍ୱାରା ତାହା ସଭା ମଧ୍ୟରେ ଆଲୋଚିତ ହେଉଥିଲା । ଅତଏବ ତତ୍କାଳୀନ ସାମନ୍ତ ରାଜାମାନେ କେବଳ ବିଳାସୀ ନ ଥିଲେ, ସେମାନେ ସାହିତ୍ୟ ଓ ସଙ୍ଗୀତର ସୃଷ୍ଟି ନିମିତ୍ତ ମଧ୍ୟ ଅନୁକୂଳ ପରିବେଶ ସୃଷ୍ଟି କରୁଥିଲେ । ଏ

(୨୨) ଉତ୍କଳ ଇତିହାସ—ପୃ: ୧୫୦—୧୬୭

ପ୍ରସଙ୍ଗରେ ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକଙ୍କ ରଚିତ 'ଭଞ୍ଜବଂଶାନୁଚରିତ' ନାମକ ଗ୍ରନ୍ଥର ନିମ୍ନ ଅଂଶ ବିଶେଷ ଅନୁଧ୍ୟାନଯୋଗ୍ୟ ମନେ ହୁଏ—

"ଆପଣା ସ୍ୱେଚ୍ଛାରେ ହୋଇ ଆସକ୍ତ,
ସଂଗୀତ ସାହିତ୍ୟରେ ଦିନ ନେଉଥାନ୍ତି ।"

## ଧାର୍ମିକ ପୃଷ୍ଠଭୂମି :

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ସୃଷ୍ଟିମୂଳରେ ପୂର୍ବବର୍ତ୍ତୀ ପଞ୍ଚସଖାଯୁଗର ଧାର୍ମିକ ପ୍ରେରଣା ଯଥେଷ୍ଟ ପରିମାଣରେ ରହିଥିଲା । ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ତଥା ଅଚ୍ୟୁତାନନ୍ଦଙ୍କ ବିଭିନ୍ନ କୃତି ମଧ୍ୟରେ ନିହିତ ଧାର୍ମିକ ଓ ପୌରାଣିକ ତତ୍ତ୍ୱ ଏବଂ ତଥ୍ୟରାଜି ପରବର୍ତ୍ତୀ କାଳର ଓଡ଼ିଆ କାବ୍ୟସ୍ରଷ୍ଟାମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା । ଏହାର ପରିଣତି ସ୍ୱରୂପ ମଧ୍ୟଯୁଗରେ ବହୁ କୃଷ୍ଣଚରିତ ଓ ରାମଚରିତ ମୂଳକ କାବ୍ୟକବିତା ସୃଷ୍ଟି ହୋଇଥିଲା । ଏ କ୍ଷେତ୍ରରେ ଓଡ଼ିଆ ପୁଅ ଶ୍ରୀଚୈତନ୍ୟଙ୍କର ବଙ୍ଗଦେଶରୁ ଉତ୍କଳ ଆଗମନ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଶ୍ରୀଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦରେ ଉତ୍କଳ ଭୂଖଣ୍ଡରେ ପଦାର୍ପଣପୂର୍ବକ ତାହାଙ୍କର ପ୍ରେମଭକ୍ତି ଧର୍ମ ପ୍ରଚାର କଲେ । ପୂର୍ବରୁ ଓଡ଼ିଶାରେ ଜ୍ଞାନମିଶ୍ରା ଭକ୍ତିର ଧାରା ପ୍ରବାହିତ ହୋଇଆସୁଥିଲା । କିନ୍ତୁ ଖ୍ରୀ: ୧୫୧୦ ଠାରୁ ଶ୍ରୀଚୈତନ୍ୟଙ୍କର ପ୍ରେମଭକ୍ତି ଧର୍ମ ଉତ୍କଳର ପୁରପଲ୍ଲୀରେ ବିଶେଷ ଲୋକପ୍ରିୟତା ଅର୍ଜନ କଲା । ଉତ୍କଳର ବହୁ ବୈଷ୍ଣବ ଭକ୍ତକବି ଓ ପଣ୍ଡିତ ଶ୍ରୀଚୈତନ୍ୟପ୍ରଚାରିତ ମତବାଦଦ୍ୱାରା ଉଦ୍‌ବୁଦ୍ଧ ହୋଇ ରାଧାକୃଷ୍ଣ ଲୀଳାମୂଳକ ଉଚ୍ଚାଙ୍ଗ କାବ୍ୟକବିତାମାନ ସୃଷ୍ଟି କଲେ । ଏ କ୍ଷେତ୍ରରେ ରୀତିଯୁଗର ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, କବି ଅଭିମନ୍ୟୁ ସାମନ୍ତସିଂହାର, ଭକ୍ତଚରଣ ଦାସ, ଗୋପାଳକୃଷ୍ଣ, ବନମାଳୀ ଓ କବିସୂର୍ଯ୍ୟ ବଳଦେବଙ୍କ ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ ।

ଏହା ସଙ୍ଗେସଙ୍ଗେ ରାମାୟଣର ବିଷୟବସ୍ତୁକୁ ଉପଜୀବ୍ୟ କରି ରାଜା ଧନଞ୍ଜୟ ଭଞ୍ଜ (ରଘୁନାଥ ବିଳାସ), ଉପେନ୍ଦ୍ର ଭଞ୍ଜ (ବୈଦେହୀଶ ବିଳାସ, ରାମଲୀଳାମୃତ ପ୍ରଭୃତି) ଓ ଯଦୁମଣି (ରାଘବ ବିଳାସ) ପ୍ରମୁଖ କବିଗଣ ଉଚ୍ଚକୋଟୀର କାବ୍ୟମାନ ପ୍ରଣୟନ କଲେ । ରାମକାବ୍ୟ ରଚନା କ୍ଷେତ୍ରରେ କବିମାନେ ପଞ୍ଚସଖା ଯୁଗର 'କୃତ୍ତିବାସ' ବଳରାମ ଦାସଙ୍କ

ଦାଣ୍ଡି ରାମାୟଣଦ୍ୱାରା ବିଶେଷ ପ୍ରଭାବିତ ହୋଇଥିବା ଦେଖାଯାଏ । ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାହାଙ୍କ ବୈଦେହୀଶ ବିଳାସରେ ଏପରି କେତେକ ବିଷୟ ସଂଯୋଜନା କରିଛନ୍ତି, ଯାହା ମୂଳ ବାଲ୍ମୀକି ରାମାୟଣରେ ନାହିଁ; କିନ୍ତୁ ବଳରାମଦାସଙ୍କ ଦାଣ୍ଡି ରାମାୟଣରେ ଅଛି ।

ସୁତରାଂ ଓଡ଼ିଆ ପରବର୍ତ୍ତୀ କାଳର ଧାର୍ମିକ ମତବାଦ ଓ ପୌରାଣିକ ବା ଧାର୍ମିକ ସାହିତ୍ୟଦ୍ୱାରା ମଧ୍ୟଯୁଗୀୟ କବିମାନେ ବିଶେଷ ପ୍ରଭାବିତ ହୋଇଥିବା ଏଥିରୁ ସ୍ପଷ୍ଟ ଜଣାଯାଏ ।

## ତତ୍କାଳୀନ ଓଡ଼ିଶାରେ ସଂସ୍କୃତ ସାହିତ୍ୟ ଚର୍ଚ୍ଚା :

ଓଡ଼ିଆ ଗଦ୍ୟ ସାହିତ୍ୟର ସୃଷ୍ଟି ପୂର୍ବରୁ ଓଡ଼ିଶାରେ ସଂସ୍କୃତ ସାହିତ୍ୟର ବହୁଳ ଚର୍ଚ୍ଚା ଚାଲିଥିଲା । ସେହି ସମୟର ବିଦ୍ୱାନ୍ କହିଲେ କେତେଜଣ ସଂସ୍କୃତ ପଣ୍ଡିତ ଓ ଗ୍ରନ୍ଥକର୍ତ୍ତାଙ୍କୁ ବୁଝାଉଥିଲା । ବିଭିନ୍ନ ରାଜଦରବାରରେ ବହୁ ବିଖ୍ୟାତ ପଣ୍ଡିତ ଓ ସଂସ୍କୃତ ଗ୍ରନ୍ଥକର୍ତ୍ତା ରାଜପୃଷ୍ଠପୋଷକତା ଲାଭ ପୂର୍ବକ ସଂସ୍କୃତ ସାହିତ୍ୟ ଚର୍ଚ୍ଚା ତଥା ସଂସ୍କୃତ ଗ୍ରନ୍ଥ ପ୍ରଣୟନରେ ମନୋନିବେଶ କରୁଥିଲେ । ଏ ପ୍ରସଙ୍ଗରେ କହିବା ଆବଶ୍ୟକ ଯେ, ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ ରଚିତ ହେବା ପୂର୍ବରୁ ଓଡ଼ିଶାରେ ସଂସ୍କୃତ ରାମାୟଣ, ସଂସ୍କୃତ ମହାଭାରତ ଓ ସଂସ୍କୃତ ଭାଗବତ ଆଲୋଚନା କରାଯାଉଥିଲା । ବିଭିନ୍ନ ଗ୍ରାମରେ ପ୍ରତିଷ୍ଠିତ ଚତୁଷ୍ପାଠୀ ଓ ମଠମାନଙ୍କରେ ସଂସ୍କୃତ ପଣ୍ଡିତମାନେ ସଂସ୍କୃତଭାଷାର ଉକ୍ତ ଗ୍ରନ୍ଥରାଜ ପାରାୟଣ ପୂର୍ବକ ଉପସ୍ଥିତ ଶ୍ରୋତାମାନଙ୍କୁ ତାହାର ଅର୍ଥ ବୁଝାଉଥିଲେ । ଏହି କାରଣରୁ ଭକ୍ତକବି ଜଗନ୍ନାଥ ଦାସ ଯେତେବେଳେ ଓଡ଼ିଆ ଭାଷାରେ ପ୍ରଥମକରି ଭାଗବତ ରଚନା କଲେ, ସେତେବେଳେ ଓଡ଼ିଶାର ସଂସ୍କୃତାଭିମାନୀ ପଣ୍ଡିତମାନେ ତାହାଙ୍କର ପ୍ରବଳ ବିରୁଦ୍ଧାଚରଣ କଲେ । ସେମାନେ ଓଡ଼ିଆ ଭାଗବତକୁ 'ତେଲି ଭାଗବତ' ବୋଲି କହି ଏହାକୁ ଅତି ନିମ୍ନ ସ୍ତରର ରଚନା ରୂପେ ପ୍ରଚାର କଲେ । ମହାକବି ସାରଳା ଦାସ ଓ ବଳରାମ ଦାସ ପ୍ରମୁଖ କବିମାନଙ୍କୁ ମଧ୍ୟ ତତ୍କାଳୀନ ସଂସ୍କୃତାଭିମାନୀ ପଣ୍ଡିତମାନଙ୍କର କୋପ ଦୃଷ୍ଟିର ଶିକାର ହେବାକୁ ପଡ଼ିଥିଲା ।

ସେତେବେଳେ ଉତ୍କଳରେ ଏପରି କେତେ ପଣ୍ଡିତମାନେ ଥିଲେ, ଯେଉଁମାନେ ସଂସ୍କୃତ ଭାଷାର ବିଭିନ୍ନ ସରଳ କାବ୍ୟ ପ୍ରତି ଅଗ୍ରହ ପ୍ରକାଶ କରୁ

ନ ଥିଲେ । ଶବ୍ଦାଡମ୍ବର ବହୁଳ, ଚମତ୍କାର ଅର୍ଥପ୍ରତିପାଦକ ଓ ଆଳଙ୍କାରିକ ଛନ୍ଦବିମଣ୍ଡିତ ପାଣ୍ଡିତ୍ୟପୂର୍ଣ୍ଣ ରଚନା ପ୍ରତି ସେମାନେ ବିଶେଷ ଆଗ୍ରହୀ ଥିଲେ । ମହାକବି ଶ୍ରୀହର୍ଷଙ୍କ 'ନୈଷଧ' ଭଳି ବିଖ୍ୟାତ କୃତି ସେମାନଙ୍କର ହସ୍ତଗତ ହେବାପରେ ମହାକବି କାଳିଦାସଙ୍କ କାବ୍ୟନିଚୟ ସେମାନଙ୍କ ଦୃଷ୍ଟିରେ ଅତି ନଗଣ୍ୟ ବୋଧ ହେଲା । ଯାହା ଫଳରେ କାଳିଦାସଙ୍କ 'ରଘୁବଂଶ' କାବ୍ୟ ଉପରେ ମଲ୍ଲିନାଥ ସୂରି ଯେତେବେଳେ ଟୀକା ପ୍ରଣୟନ କଲେ, ସେତେବେଳେ ଓଡ଼ିଶାର ପଣ୍ଡିତଗଣ ତାହା ଦେଖି ସେଥିପ୍ରତି ତାଚ୍ଛଲ୍ୟଭାବ ପ୍ରଦର୍ଶନ ପୂର୍ବକ କହିଥିଲେ—

"ରଘୁରିତି କାବ୍ୟମ୍
ତଦୁପରି ଟୀକା
ସାଽପି ଚ ଭବ୍ୟା ।"

ଏହି ଉକ୍ତି ଅଦ୍ୟାବଧି ଓଡ଼ିଶାର ପ୍ରାଚୀନ ସାହିତ୍ୟ ଆଲୋଚକମାନଙ୍କ ମଧ୍ୟରେ କିମ୍ବଦନ୍ତୀ ଆକାରରେ ପ୍ରଚଳିତ ହୋଇ ଆସୁଛି । କେବଳ ଏତିକି ନୁହେଁ, ମହାକବି ମାଘଙ୍କ 'ଶିଶୁପାଳ ବଧ' ମହାକାବ୍ୟ ମଧ୍ୟ ପରବର୍ତ୍ତୀ କାଳରେ ଉତ୍କଳୀୟ ପଣ୍ଡିତମାନଙ୍କ ଦୃଷ୍ଟିରେ ବିଶେଷ ପାଣ୍ଡିତ୍ୟପୂର୍ଣ୍ଣ ବୋଧ ହୋଇ ନଥିଲା, ଯାହା ଫଳରେ ସେମାନେ କହୁଥିଲେ—

"ନବ ସର୍ଗେ ଗତେ ମାଘେ ନବ ଶବ୍ଦୋ ନ ବିଦ୍ୟତେ ।"

ଅର୍ଥାତ୍, ମାଘକାବ୍ୟର ନଅଗୋଟି ସର୍ଗ ଅଧ୍ୟୟନ କରିବା ପରେ ପରବର୍ତ୍ତୀ ଅନ୍ୟାନ୍ୟ ସର୍ଗରେ କୌଣସି ନୂତନ ଶବ୍ଦ ଦେଖିବାକୁ ମିଳେନାହିଁ । ଏହି ପରିପ୍ରେକ୍ଷୀରେ ତତ୍କାଳୀନ ଉତ୍କଳରେ କିପରି ବହୁ ଧୁରୀଣ ଓ ପ୍ରତିଭାସମ୍ପନ୍ନ ପଣ୍ଡିତ ଜନ୍ମଲାଭ କରି ସଂସ୍କୃତ ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ ପୂର୍ବକ ଉକ୍ତ ସାହିତ୍ୟର ପୃଷ୍ଠପୋଷକତା କରିଥିଲେ ଏବଂ ଏହାର ବ୍ୟାପକ ପ୍ରଚାର ଓ ପ୍ରସାର ନିମିତ୍ତ ଯତ୍ନଶୀଳ ଥିଲେ ତାହା ସହଜରେ ହୃଦୟଙ୍ଗମ କରିହେବ ।

ସଂସ୍କୃତ ଭାଷାରେ ରଚିତ ବିଭିନ୍ନ କାବ୍ୟ ଓ ଶାସ୍ତ୍ର ଇତ୍ୟାଦି ସେତେବେଳେ ଓଡ଼ିଶାରେ କେବଳ ଯେ ଆଲୋଚିତ ହେଉଥିଲା, ତାହା ନୁହେଁ, ଉତ୍କଳର ବହୁ ପଣ୍ଡିତ ସଂସ୍କୃତ ଭାଷାରେ ଅନେକ ଉଚ୍ଚାଙ୍ଗ କାବ୍ୟ, ନାଟକ, ଅଳଙ୍କାର ଓ

କୋଷଗ୍ରନ୍ଥ ପ୍ରଣୟନ କରିଥିଲେ । ତନ୍ମଧ୍ୟରୁ କେତେଜଣ ଗ୍ରନ୍ଥକର୍ତ୍ତା ଓ ସେମାନଙ୍କ କୃତିର ନାମ ନିମ୍ନରେ ଉଲ୍ଲେଖ କରାଗଲା—

୧ । ମୁରାରି ମିଶ୍ର—ଅନର୍ଘ ରାଘବ ନାଟକମ୍
୨ । ପୁରୁଷୋତ୍ତମଦେବ (ଉତ୍କଳର ଗଜପତି ନୃପତି)—ତ୍ରିକାଣ୍ଡ ଶେଷଃ, ହାରାବଳୀ, ଏକାକ୍ଷର କୋଷଃ, ଶବ୍ଦମାଳା
୩ । ଶ୍ରୀହର୍ଷ—ନୈଷଧ
୪ । କୃଷ୍ଣ ମିଶ୍ର—ପ୍ରବୋଧ ଚନ୍ଦ୍ରୋଦୟଃ
୫ । ନାରାୟଣ—ରାମାଭ୍ୟୁଦୟ କାବ୍ୟମ୍
୬ । ଜୟଦେବ—ଗୀତଗୋବିନ୍ଦ
୭ । ଶଙ୍ଖଧର—ହାସ୍ୟାର୍ଣ୍ଣବ, କବି କର୍ପଟୀ
୮ । ବିଦ୍ୟାଧର—ଏକାବଳୀ
୯ । କୃଷ୍ଣାନନ୍ଦ—ସହୃଦୟାନନ୍ଦଃ
୧୦ । ବିଶ୍ୱନାଥ କବିରାଜ—ସାହିତ୍ୟ ଦର୍ପଣମ୍, ରାଘବବିଳାସମହାକାବ୍ୟମ୍, ପ୍ରଭାବତୀ ପରିଣୟମ୍, ଚନ୍ଦ୍ରକଳା ନାଟିକା, ନରସିଂହ ବିଜୟଃ, କୁବଳୟାଶ୍ୱ ଚରିତମ୍, କଂସବଧ କାବ୍ୟମ୍
୧୧ । କପିଳେନ୍ଦ୍ରଦେବ—ପରଶୁରାମ ବିଜୟ ବ୍ୟାୟୋଗଃ
୧୨ । ପୁରୁଷୋତ୍ତମଦେବ—ଜାନକୀ ପ୍ରମୋଦ, ଅଭିନବ ବେଣୀସଂହାରଃ, ଆନନ୍ଦବିଳାସଃ ।
୧୩ । ଜୀବଦେବାଚାର୍ଯ୍ୟ—ଭକ୍ତି ଭାଗବତ ମହାକାବ୍ୟମ୍, ଭକ୍ତିବୈଭବ ନାଟକମ୍, ଉଷାହରଣ ରୂପକମ୍
୧୪ । ପ୍ରତାପ ରୁଦ୍ରଦେବ—ସରସ୍ୱତୀ ବିଳାସଃ, କୌତୁକ ଚିନ୍ତାମଣିଃ, ପ୍ରତାପ ମାର୍ତ୍ତଣ୍ଡଃ
୧୫ । ରାୟ ରାମାନନ୍ଦ—ଜଗନ୍ନାଥବଲ୍ଲଭ ନାଟକମ୍
୧୬ । ଦିବାକର ମିଶ୍ର—ଭାରତାମୃତ ମହାକାବ୍ୟମ୍, ଲକ୍ଷଣାଦର୍ଶ ମହାକାବ୍ୟମ୍, ପ୍ରଭାବତୀ ନାଟକମ୍ ପାରିଜାତହରଣ ନାଟକମ୍, ହରଚରିତ ଚମ୍ପୂଃ, ଦେବୀ ଚରିତମ୍, ଅଭିନବ ଗୀତ ଗୋବିନ୍ଦମ୍

୧୭ । ମାର୍କଣ୍ଡେୟ ମିଶ୍ର—ଦଶଗ୍ରୀବ ବଧ ମହାକାବ୍ୟମ୍, ପ୍ରାକୃତସର୍ବସ୍ୱମ୍
୧୮ । କହ୍ନାଇ ଖୁଣ୍ଟିଆ—ମହାର୍ଣ୍ଣବ ପ୍ରକାଶଃ
୧୯ । ଜୟଦେବାଚାର୍ଯ୍ୟ—ପୀୟୂଷ ଲହରୀ, ବୈଷ୍ଣବାମୃତମ୍
୨୦ । ଚିନ୍ତାମଣି ମିଶ୍ର— ଚନ୍ଦ୍ରସ୍ୟ ବିବେକଃ, ଶମ୍ବରାରି ଚରିତମ୍, କାଦମ୍ବରୀସାରଃ, କଂସବଧଃ, କିଶିରା ବଧଃ
୨୧ । ପୁରୁଷୋତ୍ତମ ମିଶ୍ର—ନାଳାବ୍ଧିଶତକମ୍, ରାମଚନ୍ଦ୍ରୋଦୟମ୍, ସଂଗୀତ ନାରାୟଣଃ
୨୨ । ଗଜପତି ନାରାୟଣ ଦେବ—ଅଳଙ୍କାର ଚନ୍ଦ୍ରିକା, ବଳଭଦ୍ରୋଦୟଃ
୨୩ । ନରସିଂହ ମିଶ୍ର—ଭଞ୍ଜମହୋଦୟ ନାଟକମ୍
୨୪ । ନିତ୍ୟାନନ୍ଦ କବି—ଶିବଲୀଳାମୃତ ମହାକାବ୍ୟମ୍, ଶ୍ରୀକୃଷ୍ଣ ଲୀଳାମୃତମ୍
୨୫ । ରଘୁନାଥ ରଥ—ନାଟ୍ୟମନୋରମା, ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକା
୨୬ । ଗଙ୍ଗାଦାସ—ଛନ୍ଦୋମଞ୍ଜରୀ, ଅଚ୍ୟୁତ ଶତକମ୍, ଦିନେଶ ଶତକମ୍, କଂସାରି ଶତକମ୍
୨୭ । ଜଗନ୍ନାଥ ମିଶ୍ର— ରସକଳ୍ପଦ୍ରୁମଃ

ଏତଦ୍‌ବ୍ୟତୀତ ସଂସ୍କୃତ ଭାଷାରେ ବହୁ ଧର୍ମଶାସ୍ତ୍ର, ଜ୍ୟୋତିଷ, ତନ୍ତ୍ର ଓ ଟୀକାଗ୍ରନ୍ଥ ମଧ୍ୟ ପ୍ରଣୀତ ହୋଇଥିଲା । ରୀତିଯୁଗୀୟ କାବ୍ୟକାରଗଣ ଏହି ସମସ୍ତ ଗ୍ରନ୍ଥଦ୍ୱାରା ଅନୁପ୍ରାଣିତ ହୋଇଥିବା ଜଣାଯାଏ । ଉତ୍କଳରେ ସଂସ୍କୃତ ସାହିତ୍ୟର ଏହି ଉନ୍ନତ ପରମ୍ପରା ପାଣ୍ଡିତ୍ୟପୂର୍ଣ୍ଣ ରୀତି ସାହିତ୍ୟର ସୃଷ୍ଟି ଓ ବିକାଶ ଦିଗରେ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା ।

## ରୀତିଯୁଗର କାବ୍ୟାଦର୍ଶ :—

ପ୍ରତ୍ୟେକ ଯୁଗର ସାହିତ୍ୟ କେତେଗୁଡ଼ିଏ ଆଙ୍ଗିକ ଓ ଆତ୍ମିକ ବିଭବକୁ ନେଇ ସ୍ୱକୀୟ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିଥାଏ । ଏହାକୁ ସେହି ଯୁଗର କାବ୍ୟାଦର୍ଶ ବୋଲି କୁହାଯାଏ । ଓଡ଼ିଆ ରୀତି ସାହିତ୍ୟର ସ୍ରଷ୍ଟାଗଣ ସେହିପରି ନିଜ ନିଜର କୃତିରାଜି ମଧ୍ୟରେ କେତେକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ବା କାବ୍ୟିକ ଆଦର୍ଶ ଫୁଟାଇ ଯାଇଛନ୍ତି । ସେମାନଙ୍କ ରଚନାବଳୀକୁ ଅଧ୍ୟୟନ ଓ ଅନୁଶୀଳନ କଲେ, ଉକ୍ତ କାବ୍ୟିକ ଆଦର୍ଶ ବା ରୀତି କାବ୍ୟର ବୈଶିଷ୍ଟ୍ୟ ସହଜରେ ଅବଧାରଣ କରିହେବ । ନିମ୍ନରେ ତନ୍ମଧ୍ୟରୁ କେତେକ ମୁଖ୍ୟ ବୈଶିଷ୍ଟ୍ୟ ଆଲୋଚିତ ହେଲା ।

## (୧) କାବ୍ୟକବିତାର ବିଷୟବସ୍ତୁ :

ସାରଳା ଓ ପଞ୍ଚସଖାଯୁଗରେ ରଚନାର ବିଷୟବସ୍ତୁ ଥିଲା ପୁରାଣଭିତ୍ତିକ । କବିମାନେ ସଂସ୍କୃତ ପୁରାଣ ଓ ବିଭିନ୍ନ ଆଧ୍ୟାତ୍ମିକ ତତ୍ତ୍ୱମୂଳକ ଗ୍ରନ୍ଥର ଅବଲମ୍ବନରେ ଓଡ଼ିଆ ଭାଷାରେ ପୁରାଣ ଓ ତତ୍ତ୍ୱମୂଳକ ଗ୍ରନ୍ଥ ପ୍ରଣୟନ କରୁଥିଲେ । କିନ୍ତୁ ରୀତିଯୁଗରେ ପୁରାଣ ଓ ତତ୍ତ୍ୱମୂଳକ ଗ୍ରନ୍ଥ ପରିବର୍ତ୍ତେ କାବ୍ୟ କବିତାମାନ ରଚିତ ହେଲା । ତଥାପି ଏହି ଯୁଗର ସାରସ୍ୱତ ସୃଷ୍ଟି ପୌରାଣିକ ପ୍ରଭାବରୁ ସଂପୂର୍ଣ୍ଣ ମୁକ୍ତ ହୋଇ ନ ଥିଲା । କବିମାନେ ପୁରାଣକୁ ଭିତ୍ତି କରି ପୌରାଣିକ କାବ୍ୟ ଏବଂ ତତ୍ ସଙ୍ଗେସଙ୍ଗେ କାଳ୍ପନିକ ବିଷୟକୁ ନେଇ କାଳ୍ପନିକ କାବ୍ୟ କବିତା ସୃଷ୍ଟି କଲେ । ଏହି ଦୃଷ୍ଟିରୁ ରୀତିଯୁଗରେ କାଳ୍ପନିକ ଓ ପୌରାଣିକ—ଏହିପରି ଦୁଇ ପ୍ରକାର କାବ୍ୟ ସୃଷ୍ଟି ହେଲା । ପୌରାଣିକ କାବ୍ୟ ମଧ୍ୟରୁ କେତେକ କୃଷ୍ଣ ଚରିତ ମୂଳକ ଓ କେତେକ ରାମ ଚରିତମୂଳକ ଥିଲା । ଭାଗବତ ଓ ହରିବଂଶର ବିଷୟକୁ ଭିତ୍ତିକରି କୃଷ୍ଣ କାବ୍ୟ ଏବଂ ରାମାୟଣକୁ ଭିତ୍ତି କରି ରାମକାବ୍ୟ ରଚିତ ହୋଇଥିଲା ।

## (୨) ଅଳଙ୍କାରର ପ୍ରାଧାନ୍ୟ :

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କବିମାନଙ୍କର ଅଳଙ୍କାର ପରିବେଷଣ ଶୃଙ୍ଖଳା ଅନ୍ୟତମ ଉଲ୍ଲେଖଯୋଗ୍ୟ ବିଷୟ । ରୀତି କାବ୍ୟରେ ଅଳଙ୍କାର ପ୍ରୟୋଗ କୌଶଳ ଆଲୋଚନା କରିବାକୁ ଗଲାବେଳେ ମୂଳତଃ ଦୁଇଗୋଟି ବିଷୟପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ଗୋଟିଏ ହେଉଛି—ଭାରତୀୟ ଅଳଙ୍କାର ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ବିଷୟ ବିନ୍ୟାସ ଏବଂ ଅନ୍ୟଟି ହେଉଛି କାବ୍ୟ ମଧ୍ୟରେ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସମାବେଶ । କାବ୍ୟ ଓ ମହାକାବ୍ୟରେ କେଉଁକେଉଁ ବିଷୟ କିପରି ଭାବରେ ବର୍ଣ୍ଣିତ ହେବ, ସେ ସମ୍ପର୍କରେ ଭାରତୀୟ ଅଳଙ୍କାର ଶାସ୍ତ୍ରକାରଗଣ କେତେକ ନିୟମ ପ୍ରଣୟନ କରି ଯାଇଛନ୍ତି । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟସ୍ରଷ୍ଟାଗଣ ଅଳଙ୍କାର ଶାସ୍ତ୍ର ନିର୍ଦ୍ଦିଷ୍ଟ ନିୟମରାଜିକୁ ଦୃଷ୍ଟି ସମକ୍ଷରେ ରଖି ସେମାନଙ୍କ ସାରସ୍ୱତକୃତିର କଳେବର ମଣ୍ଡନ କରୁଥିଲେ । ଏହା ସଙ୍ଗେ ସଙ୍ଗେ ସେମାନେ କାବ୍ୟ ମଧ୍ୟରେ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ବହୁଳ ସମାବେଶ ଘଟାଉଥିଲେ । ଏହି କାରଣରୁ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟରାଜିକୁ ଅଳଙ୍କାରଶାସ୍ତ୍ରର କାବ୍ୟିକ ସଂସ୍କରଣ ବୋଲି କୁହାଯାଇଥାଏ ।

## (୩) ରସପରିବେଷଣ ଚାତୁରୀ :

ଭାରତବର୍ଷରେ ଯେଉଁ ଗୋଟି ସାହିତ୍ୟକବାଦ ସୃଷ୍ଟି ହୋଇଥିଲା, ତନ୍ମଧ୍ୟରୁ ରସବାଦ ଅନ୍ୟତମ । ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ଓ ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ଏହାର ମୁଖ୍ୟ ପ୍ରବକ୍ତାରୂପେ ବିବେଚିତ ହୋଇଥାନ୍ତି । ବିଶ୍ୱନାଥ କବିରାଜ କାବ୍ୟରେ ରସର ପ୍ରାଧାନ୍ୟକୁ ସ୍ୱୀକାର କରିବାକୁ ଯାଇ ଲେଖିଛନ୍ତି—"ବାକ୍ୟଂ ରସାତ୍ମକଂ କାବ୍ୟମ୍" । ଅର୍ଥାତ୍, ରସାତ୍ମକ ବାକ୍ୟ ହେଉଛି କାବ୍ୟ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ସ୍ରଷ୍ଟାଗଣ ସ୍ୱସ୍ୱ ରଚନାବଳୀ ମଧ୍ୟରେ ରସବାଦକୁ ବିଶେଷ ପ୍ରାଧାନ୍ୟ ଦେଇଥିବା ଦେଖାଯାଏ । ଘଟଣା ଅନୁଯାୟୀ ବିଭିନ୍ନ ସ୍ଥାନରେ ବିଭିନ୍ନ ରସ ପରିବେଷିତ ହୋଇଛି । ଏଥି ମଧ୍ୟରେ ଶୃଙ୍ଗାର ରସ ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଶୃଙ୍ଗାରରସର ଉତ୍କର୍ଷ ପ୍ରତିପାଦନ କରିବାକୁ ଯାଇ କୁହାଯାଇଛି :—

> "ଶୃଙ୍ଗାରୀ ଚେତ୍ କବିଃ କାବ୍ୟେ ଯାତଂ ରସମୟଂ ଜଗତ୍ ।
> ସ ଏବ ଚେଦଶୃଙ୍ଗାରୀ ନୀରସଂ ସର୍ବ ମେବ ତତ୍" ॥

କାବ୍ୟ ରଚନା କରିବା ସମୟରେ ରୀତି ଯୁଗୀୟ କବିମାନେ ଏହି ଆଦର୍ଶକୁ ସାଦରେ ଚିତ୍ତରେ ଗ୍ରହଣ କରି ନେଇଥିବା ସ୍ପଷ୍ଟ ଜଣାଯାଏ । ଶୃଙ୍ଗାର ରସ କାବ୍ୟ ମଧ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ମଧ୍ୟ ଅନ୍ୟାନ୍ୟ ବିଭିନ୍ନ ରସ ଗୌଣ ବା ଅଙ୍ଗୀରସ ରୂପେ ରହିଛି ।

## (୪) ଶବ୍ଦ ପ୍ରୟୋଗ କୌଶଳ :

ଶବ୍ଦ ପ୍ରୟୋଗ କୌଶଳ ଓଡ଼ିଆ ରୀତିକାବ୍ୟର ଅନ୍ୟତମ ବିଶିଷ୍ଟ ସ୍ୱଭାବ ରୂପେ ବିବେଚିତ ହୋଇଥାଏ । କବିମାନେ ସେମାନଙ୍କ କୃତିରାଜିରେ ବିବିଧ ଚମତ୍କାର ଶାବ୍ଦିକ କୌଶଳ ପ୍ରତିପାଦନ କରିବା ସଙ୍ଗେସଙ୍ଗେ ନିଜର ଶବ୍ଦ ପାଣ୍ଡିତ୍ୟ ପ୍ରଦର୍ଶନ କରୁଥିଲେ । କାବ୍ୟ ମଧ୍ୟରେ ଶବ୍ଦପାଣ୍ଡିତ୍ୟ ପ୍ରଦର୍ଶନ ଭାରତୀୟ ସାରସ୍ୱତ ପରମ୍ପରାରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଛି । ସଂସ୍କୃତ ସାହିତ୍ୟର ବିଖ୍ୟାତ କବି ମାଘ, ଶ୍ରୀହର୍ଷ, ଭାରବି ଓ ବାଣଭଟ୍ଟ ପ୍ରଭୃତିଙ୍କ ଆଦର୍ଶରେ ରୀତିଯୁଗୀୟ ସାହିତ୍ୟସୌଧ ଗଢ଼ି ଉଠିଥିବାରୁ ଉକ୍ତ ମହାନ୍ କବିମାନଙ୍କ ରଚନାବଳୀର ଶାବ୍ଦିକ କଳାକୌଶଳ ଭଞ୍ଜ, ଅଭିମନ୍ୟୁ ପ୍ରମୁଖ କବିମାନଙ୍କ

କାବ୍ୟରେ ପ୍ରତିଫଳିତ ହୋଇଛି । ସୁତରାଂ, 'ନୈଷଧ, 'ଶିଶୁପାଳବଧ', 'କିରାତା-ର୍ଜୁନୀୟମ୍' ପ୍ରଭୃତି କାବ୍ୟରେ ପ୍ରତିପାଦିତ କବିଙ୍କ ଶବ୍ଦପାଣ୍ଡିତ୍ୟ ଓ ବିଭିନ୍ନ ଶ୍ଳୋକର ବିଚିତ୍ର ଅର୍ଥଗୌରବ ଓଡ଼ିଆ ରୀତିକାବ୍ୟର ଛତ୍ରେଛତ୍ରେ ଉପଲବ୍ଧ ହୋଇଥାଏ ।

## (୫) ସାଂଗୀତିକତା :

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟସୁନ୍ଦରୀ ନାନାବିଧ ସାଂଗୀତିକ ରାଗରାଗିଣୀର ମଧୁର ଝଙ୍କାରରେ ମୁଖରିତ ହୋଇ ଉଠିଥିଲେ । ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ, ପୁରାଣଯୁଗର କବିମାନେ ଦାଣ୍ଡିବୃତ୍ତ, ନବାକ୍ଷରୀ ବୃତ୍ତ ବା ଚତୁର୍ଦ୍ଦଶାକ୍ଷରୀ ବୃତ୍ତ ମଧ୍ୟରୁ କୌଣସି ଗୋଟିଏ ମାତ୍ର ବୃତ୍ତରେ ସମଗ୍ର ଗ୍ରନ୍ଥଟି ରଚନା କରୁଥିଲେ ; କିନ୍ତୁ ଭଞ୍ଜଯୁଗରେହିଁ କବିମାନେ ସମଗ୍ର କାବ୍ୟଟିକୁ ଗୋଟିଏ ମାତ୍ର ଛନ୍ଦ ବା ବୃତ୍ତରେ ରଚନା ନକରି ବିଭିନ୍ନ ଛାନ୍ଦକୁ ଭିନ୍ନଭିନ୍ନ ବୃତ୍ତରେ ରଚନା କଲେ । ଛନ୍ଦପ୍ରୟୋଗ କ୍ଷେତ୍ରରେ ସ୍ଥାନେସ୍ଥାନେ କବିମାନେ ନିଜର ସ୍ୱର ଓ ତାଳ ଇତ୍ୟାଦି ଜ୍ଞାନର ପରିଚୟ ଦେଇ ଯାଇଛନ୍ତି । ବହୁ ସ୍ଥାନରେ ବର୍ଣ୍ଣିତ ବିଷୟବସ୍ତୁ ଅନୁଯାୟୀ ତାଦୃଶ ଭାବବ୍ୟଞ୍ଜକ ରାଗ ପ୍ରୟୋଗ କରାଯାଇଛି । ସ୍ୱରଲୟ ସାହାଯ୍ୟରେ ଯେପରି ଛାନ୍ଦଗୁଡ଼ିକ ଗାନ କରାଯାଇ ପାରିବ, ସେ ଦିଗରେ କବିମାନେ ସଚେତନ ଥିଲେ ।

## (୬) କବି ମାନଙ୍କର ବିବିଧ ଶାସ୍ତ୍ରଜ୍ଞାନ :

ଭଞ୍ଜଯୁଗର କବିମାନେ ଅଲୌକିକ କବିପ୍ରତିଭାର ଅଧିକାରୀ ହେବା ସଙ୍ଗେସଙ୍ଗେ ବିବିଧ ଶାସ୍ତ୍ରଅଧ୍ୟୟନଜନିତ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ । ଅର୍ଥାତ୍ କବିମାନେ କାବ୍ୟରଚନା କରିବା ପୂର୍ବରୁ ସଂସ୍କୃତ ଭାଷାରେ ରଚିତ ବିଭିନ୍ନ କାବ୍ୟ ଓ ନାଟକ, ବେଦ, ବେଦାନ୍ତ, ପୁରାଣ, ଅଳଙ୍କାର ଗ୍ରନ୍ଥ, ତନ୍ତ୍ରଗ୍ରନ୍ଥ, କୋଷଗ୍ରନ୍ଥ, ଜ୍ୟୋତିଷ, କାମଶାସ୍ତ୍ର, ଧର୍ମଶାସ୍ତ୍ର, ବ୍ୟାକରଣ, ଶିଳ୍ପଶାସ୍ତ୍ର ଓ ଆୟୁର୍ବେଦ ଇତ୍ୟାଦି ଶାସ୍ତ୍ର ଅଧ୍ୟୟନ କରୁଥିଲେ । ସେମାନେ ନିଜର ଉକ୍ତ ଶାସ୍ତ୍ରଜ୍ଞାନକୁ ସ୍ୱରଚିତ କାବ୍ୟ-ରାଜିରେ ପ୍ରତିଫଳନ ପୂର୍ବକ ତତ୍କାଳୀନ ଶାସ୍ତ୍ରଦର୍ଶୀ ପଣ୍ଡିତମାନଙ୍କୁ ମୁଗ୍ଧ କରି ଦେଉଥିଲେ । ଏହି ଦୃଷ୍ଟିରୁ ରୀତିଯୁଗୀୟ କାବ୍ୟରାଜିକୁ ଅଧ୍ୟୟନ ପୂର୍ବକ ସେଗୁଡ଼ିକର ଯଥାର୍ଥ ମର୍ମ ଅବବୋଧ ନିମିତ୍ତ ପାଠକକୁ ମଧ୍ୟ ତାଦୃଶ ଶାସ୍ତ୍ରଜ୍ଞାନର ଅଧିକାରୀ ହେବାକୁ ପଡ଼ିଥାଏ । ଏ ପ୍ରସଙ୍ଗରେ ଭକ୍ତକବି ଅଭିମନ୍ୟୁ

ସାମନ୍ତସିଂହାରଙ୍କ ନିମ୍ନ ଉକ୍ତି ଉଲ୍ଲେଖଯୋଗ୍ୟ ମନେହୁଏ । ତାହାଙ୍କ 'ବିଦଗ୍ଧ ଚିନ୍ତାମଣି' କାବ୍ୟର ପ୍ରଥମ ଛାନ୍ଦରେ କବି ଅଭିମନ୍ୟୁ ଲେଖିଛନ୍ତି—

"ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ କାବ୍ୟ
ନ୍ୟାସକଲି ଲୋକର ଏ ହୋଇବଟି ଭବ୍ୟ ।"

ଏହି ଉକ୍ତି ଖଣ୍ଡଯୁଗର ସମସ୍ତ କାବ୍ୟକ୍ଷେତ୍ରରେ ପ୍ରଯୁକ୍ତ ହୋଇଥାଏ । ଏଥିରୁ ତତ୍‌କାଳୀନ କବିମାନଙ୍କର ଶାସ୍ତ୍ରଜ୍ଞାନ ସମ୍ବନ୍ଧରେ ଅନୁମାନ କରାଯାଇପାରେ ।

## (୭) ବର୍ଣ୍ଣନାବିଳାସ :

ମଧ୍ୟଯୁଗୀୟ କାବ୍ୟଗୁଡ଼ିକରେ ଅଳ୍ପମାତ୍ରାରେ ବର୍ଣ୍ଣନା-ବିଳାସ ପ୍ରକଟିତ ହୋଇଥିବା ଦେଖାଯାଏ । କବିମାନେ ନାୟକନାୟିକାଙ୍କ ଶୋଭା ବର୍ଣ୍ଣନା, ବିରହାନୁଚିନ୍ତା, ଜଳକ୍ରୀଡ଼ା ତଥା ବିଭିନ୍ନ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ ନିଜର ଅତ୍ୟଧିକ କଳାକୁଶଳତା ଫୁଟାଇ ପାରିଛନ୍ତି । ସ୍ଥାନେସ୍ଥାନେ ଦୀର୍ଘ ବର୍ଣ୍ଣନାମାନ ସମାବେଶିତ ହୋଇଛି । ଏପରିକି ଏକ ନିର୍ଦ୍ଦିଷ୍ଟ ବର୍ଣ୍ଣନା ନିମିତ୍ତ କବି ଗୋଟିଏ ଗୋଟିଏ ଦୀର୍ଘ ଛାନ୍ଦ ରଚନା କରିଥିବା ଦେଖାଯାଏ । ନାୟିକାର ନଖାଗ୍ରଠାରୁ ଆରମ୍ଭ କରି ଶିଖାଗ୍ର ପର୍ଯ୍ୟନ୍ତ ସମସ୍ତ ଅଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଙ୍କର ଅଦ୍ଭୁତ କଳ୍ପନାବିଳାସ, କଳାକୁଶଳତା ଓ ବର୍ଣ୍ଣନାନୈପୁଣ୍ୟ ପ୍ରକଟିତ ହୋଇଛି । ବର୍ଣ୍ଣନାରେ ବହୁ ସ୍ଥଳରେ ରସାଦର୍ଶ ଓ ଆଳଙ୍କାରିକ କୌଶଳ ଫୁଟି ଉଠିଥିବା ଦେଖାଯାଏ ।

ମୋଟ ଉପରେ କହିବାକୁ ଗଲେ, ଏହି କେତେଗୋଟି ବୈଶିଷ୍ଟ୍ୟ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଫୁଟି ଉଠିଥିଲା । ଏଗୁଡ଼ିକୁ ସେହି ଯୁଗର ସାହିତ୍ୟାଦର୍ଶ ବୋଲି କୁହାଯାଇଥାଏ । ଭଞ୍ଜଯୁଗର ଯେ କୌଣସି କବିଙ୍କ ସାରସ୍ୱତ କୃତିର ମୂଲ୍ୟ କଳନା କରିବାକୁ ଗଲାବେଳେ ଉକ୍ତ ବୈଶିଷ୍ଟ୍ୟଗୁଡ଼ିକ ବିଷୟରେ ସଚେତନ ହେବା ଏକାନ୍ତ ଆବଶ୍ୟକ ।

# 'ବୈଦେହୀଶ ବିଳାସ'ର
# ବିଭିନ୍ନ ଛାନ୍ଦର ବିଷୟବସ୍ତୁ

'ବୈଦେହୀଶ ବିଳାସ' ସମୁଦାୟ ୫୨ ଛାନ୍ଦରେ ସଂପୂର୍ଣ୍ଣ ହୋଇଛି । ରାବଣ ଓ କୁମ୍ଭକର୍ଣ୍ଣ ଜନ୍ମଠାରୁ ଆରମ୍ଭ କରି କବି ରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ରାମାଭିଷେକ ପର୍ଯ୍ୟନ୍ତ ରାମାୟଣର ବିଷୟବସ୍ତୁ ଏଥିରେ ସଂଯୋଜନା କରିଛନ୍ତି । ଉକ୍ତ କାବ୍ୟର ଛାନ୍ଦ ସଂଖ୍ୟା ୫୨ ରଖିବାରେ କବିଙ୍କର ଅସାଧାରଣ ଚାତୁରୀ ପ୍ରକଟିତ ହୋଇଛି । କବି ୫୦ କିମ୍ବା ୫୧ କିମ୍ବା ୫୪ ବା ୫୫ ଏହିପରି ଅନ୍ୟ କୌଣସି ସଂଖ୍ୟା ସ୍ଥିର ନ କରି ୫୨ ସଂଖ୍ୟାରେ କାହିଁକି ତାହାଙ୍କର 'ବିଜସିଦ୍ଧି' 'ବୈଦେହୀଶ ବିଳାସ'କୁ ଶେଷ କଲେ ? ଏହି ପ୍ରଶ୍ନର ଉତ୍ତର ନିମ୍ନ ପ୍ରକାରେ ବିଚାର କରାଯାଇପାରେ—

(କ) ପ୍ରଥମତଃ ଉକ୍ତ କାବ୍ୟ 'ବ' ଆଦ୍ୟ ନିୟମରେ ରଚିତ । କାବ୍ୟର ନାମକରଣ ମଧ୍ୟ 'ବ'ରେ ଆରମ୍ଭ ହୋଇଛି । ପୁନଶ୍ଚ ପ୍ରତ୍ୟେକ ଛାନ୍ଦକୁ କବି 'ବ' ସଂଖ୍ୟକ ପଦରେ (୩୨, ୪୨, ୫୨, ୬୨ ଇତ୍ୟାଦି) ଶେଷ କରିଛନ୍ତି । ଏହି ଦୃଷ୍ଟିରୁ କାବ୍ୟଟିକୁ ମଧ୍ୟ 'ବ' ଆଦ୍ୟରେ ଥିବା ଛାନ୍ଦ ସଂଖ୍ୟା ଦ୍ୱାରା ଶେଷ କରାଯାଇଛି ।

(ଖ) ସମଗ୍ର ବାଲ୍ମୀକି ରାମାୟଣ ହେଉଛି ସପ୍ତକାଣ୍ଡ ବିଶିଷ୍ଟ । '୫୨' ଏପରି ଏକ ସଂଖ୍ୟା, ଯହିଁରେ ଥିବା ୫ ଓ ୨କୁ ମିଶାଇ ଦେଲେ ମିଶାଣ ଫଳ ୭ ହେବ । ଏହା ସପ୍ତକାଣ୍ଡ ରାମାୟଣର ଦ୍ୟୋତକ ।

(ଗ) ଭାରତବର୍ଷର କେତେକ ଅଞ୍ଚଳର ପଣ୍ଡିତମାନେ କହିଥାନ୍ତି ଯେ, ରାମାୟଣର ବାଳକାଣ୍ଡ ଓ ଉତ୍ତରକାଣ୍ଡ ପ୍ରକୃତରେ ବାଲ୍ମୀକିଙ୍କ ଦ୍ୱାରା ରଚିତ ହୋଇନାହିଁ । ଅନ୍ୟ ପାଞ୍ଚଗୋଟି କାଣ୍ଡ ପ୍ରକୃତରେ ବାଲ୍ମୀକି ରଚନା କରିଛନ୍ତି । '୫୨' ସଂଖ୍ୟାରେ '୫' ଓ '୨' ଦୁଇଟି ସଂଖ୍ୟା ଭିନ୍ନ ଭିନ୍ନ ଭାବରେ ରହିଛି ।

ଏହା କବିଙ୍କ ସୂକ୍ଷ୍ମ ବିଚାର ଶକ୍ତିର ପରିଚାୟକ ।

'ବୈଦେହୀଶ ବିଳାସ'ରେ କବିଙ୍କ ପ୍ରତିଭାର ବିଭିନ୍ନ ଦିଗଉପରେ ଆଲୋକପାତ କରିବା ପୂର୍ବରୁ ଏହାର ବିଷୟବସ୍ତୁ ସମ୍ପର୍କରେ ମନରେ ଏକ ସ୍ଥୂଳ ଧାରଣା ସୃଷ୍ଟିହେବା ଏକାନ୍ତ ଆବଶ୍ୟକ । ନିମ୍ନରେ ପ୍ରତ୍ୟେକ ଛାନ୍ଦର ବିଷୟବସ୍ତୁ ସଂକ୍ଷେପରେ ଉଲ୍ଲେଖ କରାଗଲା ।

**ପ୍ରଥମ ଛାନ୍ଦ :**

ଏହା ହେଉଛି 'ମଙ୍ଗଳାଚରଣ ଛାନ୍ଦ' । ଏହାର ପ୍ରଥମ ଦୁଇ ପଦରେ କବି ବିଭିନ୍ନ ଦେବଦେବୀଙ୍କୁ ସ୍ତୁତି କରିଛନ୍ତି । 'ବୈଦେହୀଶ ବିଳାସ'ର ସୁବିଖ୍ୟାତ ଟୀକାକାର ଲୋକନାଥ ଦାସ ଏହି ଦୁଇଟି ପଦକୁ ଶ୍ଳେଷାତ୍ମକ ରୀତିରେ ସୂର୍ଯ୍ୟ ଓ ବିଷ୍ଣୁଙ୍କ ପକ୍ଷରେ ଅର୍ଥ କରିଥିଲେ । ଗତ କିଛି ବର୍ଷ ପୂର୍ବେ ଓଡ଼ିଶା ସାହିତ୍ୟ ବ୍ୟାପାର ବିଭାଗଦ୍ୱାରା ପ୍ରକାଶିତ ବୈଦେହୀଶ ବିଳାସରେ ଅଧ୍ୟାପକ ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମା ଉକ୍ତ ଦୁଇଟି ପଦକୁ ଆଠ ଦେବଦେବୀଙ୍କ ପକ୍ଷରେ ଅର୍ଥକରି କବିଙ୍କର ବିଲକ୍ଷଣ ଶବ୍ଦପ୍ରୟୋଗଚାତୁରୀର ଭୂରି ଭୂରି ପ୍ରଶଂସା କରିଛନ୍ତି ।

'ରାମତାରକ ମନ୍ତ୍ର'ରେ ସିଦ୍ଧିଲାଭ କରିବାପରେ ରାମଚରିତ ବିଷୟକ କାବ୍ୟ ରଚନା କରିବାକୁ କବିଙ୍କ ମନରେ ବାସନା ଜାତ ହେଲା । ସୁତରାଂ ସେ ଲେଖିଛନ୍ତି—

× × ×

"ବିନାଇ ଚିତ୍ତ ଅନବରତ ଭାଗ୍ୟେ ଗ୍ରହଣ ତାରକମନ୍ତ୍ର
ସୀତା ଶ୍ରୀରାମ ଚରିତ ଗୀତ କୃତେ ଲାଳସ ଯେ ॥
ବାଲ୍ମୀକି ବ୍ୟାସ କବି ଯହିଁରେ ମହାକାବ୍ୟ କେ ପୁରାଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ
ବହିଲେ କାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜ ନରେଶେ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ଛାଡ଼ିଲି ଶଙ୍କା ଯେ,
ବିବେକ ହିଁ ଉଦୟ ଏମନ୍ତ ଧ୍ୟାୟି
ବ୍ୟୋମେ ତାରକା ଯେବେ ଝଲସୁ ଥାଇ
ବିଭାବରୀରେ ଜ୍ୟୋତିରିଙ୍ଗଣ— ଗଣଜ୍ୟୋତିକ ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ॥"
(୩ ଓ ୪ ପଦ)

ଏଥିରେ କବି ବାଲ୍ମୀକି, ବ୍ୟାସ, ମହାନାଟକ ରଚୟିତା ହନୁମାନ, କାଳିଦାସ, ଭୋଜ ଓ କୃପାସିନ୍ଧୁ ବଳରାମ ଦାସ ପ୍ରମୁଖ ପୂର୍ବବର୍ତ୍ତୀ ରାମାୟଣ ଗ୍ରନ୍ଥ ରଚୟିତାମାନଙ୍କୁ ସ୍ମରଣପୂର୍ବକ ନିଜର ନମ୍ରତା ଓ ଉଦାରତା ପ୍ରକାଶ କରିଛନ୍ତି । ତତ୍ପରେ ରାମାୟଣର ବିଷୟବସ୍ତୁ ଆରମ୍ଭ ହୋଇଛି ।

ବିଦ୍ୟୁତ୍‌କେଶ ନାମକ ରାକ୍ଷସର ବଂଶରେ ସୁମାଳୀ, ମାଳୀ ଓ ମାଲ୍ୟବନ୍ତ ନାମକ ତିନିଭାଇ ଜନ୍ମଲାଭ କଲେ । ଏମାନେ ସ୍ୱର୍ଗପୁରକୁ ଲୁଣ୍ଠନ କରିବାରୁ ଇନ୍ଦ୍ର ଭଗବାନ ବିଷ୍ଣୁଙ୍କର ସାହାଯ୍ୟ ଭିକ୍ଷାକଲେ । ବିଷ୍ଣୁ ଗରୁଡ଼ ଉପରେ ବସି ଚକ୍ରଦ୍ୱାରା ମାଳୀ ଓ ମାଲ୍ୟବନ୍ତକୁ ନିଧନ କଲେ । ଏହା ଫଳରେ ସୁମାଳୀ ଭୟଭୀତ ହୋଇ ଲଙ୍କା ତ୍ୟାଗ କଲା ଏବଂ ପାତାଳପୁରରେ ଯାଇ ବାସକଲା । ଲଙ୍କା ନିକଟବର୍ତ୍ତୀ ସୁବଳ ପର୍ବତର ନିମ୍ନ ଦେଶରେ ପୁଲସ୍ତ୍ୟ ଋଷିଙ୍କ ପୁତ୍ର ବିଶ୍ରବା ଆଶ୍ରମ ସ୍ଥାପନ କରି ରହୁଥିଲେ । ସୁମାଳୀ ଦୂତ ମୁଖରୁ ଏହି ସମ୍ବାଦ ପାଇ ନିଜର ରୂପବତୀ କନ୍ୟା ନିକଷାକୁ ନେଇ ତାହାଙ୍କ ନିକଟରେ ଉପସ୍ଥିତ ହେଲେ । ସୁମାଳୀର ପ୍ରସ୍ତାବ କ୍ରମେ ବିଶ୍ରବା ଋଷିଙ୍କ ସହିତ ନିକଷାର ବିବାହ ହେଲା । ବିଶ୍ରବା ଋଷିଙ୍କ ଔରସରେ ନିକଷାଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ଓ ଶୂର୍ପଣଖା ଜନ୍ମଲାଭ କଲେ । ବିଭୀଷଣକୁ ଛାଡ଼ି ଦେଲେ ଅନ୍ୟ ଦୁଇଭାଇ ଓ ଭଉଣୀ ଶୂର୍ପଣଖା ଅତି ଭୟଙ୍କର ରୂପ ଧାରଣ କରିଥିଲେ ।

ଏହାପରେ ବ୍ରହ୍ମାଙ୍କଠାରୁ ରାବଣ ଓ କୁମ୍ଭକର୍ଣ୍ଣର ବରପ୍ରାପ୍ତି ଏବଂ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ସେମାନେ କପରି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ ଆପଣାର ବୀରତ୍ୱ ପ୍ରକାଶ ପୂର୍ବକ ଦେବତା, ମନୁଷ୍ୟ ଓ ନାଗ ପ୍ରଭୃତିଙ୍କୁ ଭୟଭୀତ କରାଇ ଦେଲେ, ସେହି ବିଷୟ କବି ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି ।

## ଦ୍ୱିତୀୟ ଛାନ୍ଦ:

ରାବଣର ଅତ୍ୟାଚାର ଅସହ୍ୟ ହେବାରୁ ବ୍ରହ୍ମା, ଶିବ, ଇନ୍ଦ୍ର, ବୃହସ୍ପତି ଓ ଅନ୍ୟାନ୍ୟ ଦେବଗଣ କ୍ଷୀରସିନ୍ଧୁ ତୀରକୁ ଯାଇ ଭଗବାନ ବିଷ୍ଣୁଙ୍କୁ ସ୍ତୁତି କଲେ । ୪ର୍ଥ ଠାରୁ ୧୦ମ ପଦ ମଧ୍ୟରେ ଦେବତାମାନଙ୍କ ସ୍ତୁତି ମାଧ୍ୟମରେ ଭଗବାନଙ୍କର ମତ୍ସ୍ୟ, କଚ୍ଛପ, ବରାହ, ନରସିଂହ, ବାମନ ଓ ପରଶୁରାମ—ଏହି ଛଅ ଗୋଟି ଅବତାର ବର୍ଣ୍ଣିତ ହୋଇଅଛି । ରାବଣର ଅତ୍ୟାଚାରରୁ ସେମାନଙ୍କୁ ରକ୍ଷା କରିବା

ନିମିତ୍ତ ଦେବଗଣ ପ୍ରାର୍ଥନା କରିବାରୁ ଭଗବାନ ବିଷ୍ଣୁ ବ୍ରହ୍ମାଙ୍କୁ ପ୍ରଶ୍ନକଲେ—"ରାକ୍ଷସଗଣ ତ ଅତ୍ୟନ୍ତ ଶକ୍ତିଶାଳୀ । ସେଥିରେ ପୁଣି ଆପଣ ସେମାନଙ୍କୁ କାହିଁକି ଏପରି ବର ପ୍ରଦାନ କରୁଛନ୍ତି ?" ବିଷ୍ଣୁଙ୍କ ମୁଖରୁ ଏହା ଶ୍ରବଣ କରି ବ୍ରହ୍ମା ଭକ୍ତି ବିନମ୍ର ଚିତ୍ତରେ ତାହାଙ୍କୁ କହିଲେ—

"ବିଲୋକନ ହେବ ନବନବ ଅବତାର
ବିଧୁର ବିଧୁର ଲୀଳା ହୋଇବ ବିସ୍ତାର ଯେ ।"

ଅର୍ଥାତ୍, "ହେ ପ୍ରଭୁ ଆପଣଙ୍କର ନୂତନ ନୂତନ ଅବତାର ଦର୍ଶନ ଓ ମଧୁରଲୀଳା ବିସ୍ତାର ନିମିତ୍ତ ମୁଁ ରାକ୍ଷସମାନଙ୍କୁ ଏହିପରି ବର ପ୍ରଦାନ କରୁଛି ।

ଅନନ୍ତର ମହାଦେବ କହିଲେ—"ହେ ପୁରୁଷୋତ୍ତମ ! ଆପଣଙ୍କର ଯେଉଁ ନାମ ଉପରେ ତାରକମନ୍ତ୍ର ଆଧାରିତ, ସେହି କୋଟି କନ୍ଦର୍ପ ବିଜୟୀ ରାମ ଅବତାର ଆପଣ ଗ୍ରହଣ କରନ୍ତୁ । ଆପଣଙ୍କର ସେହି ମୂର୍ତ୍ତି ଦର୍ଶନ କରିବା ନିମିତ୍ତ ମୁଁ ଉତ୍କଣ୍ଠିତ ହୋଇ ରହିଛି । ମୋର ମନସ୍କାମନା ପୂରଣ କରନ୍ତୁ ।"

ଏହାପରେ ବିଷ୍ଣୁ ସହାସ୍ୟ ବଦନରେ ବ୍ରହ୍ମାଦି ଦେବଗଣଙ୍କୁ କହିଲେ ଯେ, ସେ ଖୁବ୍ ଶୀଘ୍ର ମର୍ତ୍ତ୍ୟଭୂମିରେ ଅବତୀର୍ଣ୍ଣ ହୋଇ ମାନୁଷଲୀଳା ବିସ୍ତାର ପୂର୍ବକ ରାକ୍ଷସ ସଂହାର କରିବେ । ଏହି ଅବତାରରେ ସେ ଚକ୍ରଧାରଣ କରିବେ ନାହିଁ କିମ୍ବା ଗରୁଡ଼ ପୃଷ୍ଠରେ ବସିବେ ନାହିଁ । ଏହା ଶୁଣି ଦେବଗଣ ଆନନ୍ଦିତ ହୋଇ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ ।

ଦଶରଥଙ୍କର ମନ୍ତ୍ରୀ ସୁମନ୍ତ୍ର ଗଙ୍ଗା କୂଳରେ ସନତ୍‌କୁମାର ଋଷିଙ୍କ ଠାରୁ ଶୁଣିବାକୁ ପାଇଲେ ଯେ, ଭଗବାନ ବିଷ୍ଣୁ ଅଯୋଧ୍ୟାରେ ରାଜା ଦଶରଥଙ୍କ ପୁତ୍ର ରୂପେ ଅବତୀର୍ଣ୍ଣ ହେବେ । ଏହି ଶୁଭ ସମ୍ବାଦ ସେ ରାଜା ଦଶରଥଙ୍କୁ ଜଣାଇଲେ । ରାଜା ଦଶରଥ, ବଶିଷ୍ଠ, ଯାବାଳି ଓ ବାମଦେବ ପ୍ରଭୃତି ଏହି ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସେହିଦିନ ଠାରୁ ରାଜ୍ୟରେ ଶୁଭାନୁଷ୍ଠାନ ଅନୁଷ୍ଠିତ ହେଲା ।

## ତୃତୀୟ ଛାନ୍ଦ—

ମିଥିଳାର ରାଜା ଜନକଙ୍କର କନ୍ୟାପ୍ରାପ୍ତି ବୃତ୍ତାନ୍ତ ଏହି ଛାନ୍ଦରେ ବର୍ଣ୍ଣିତ । ଦିନେ ମିଥିଳାଧିପତି ଯଜ୍ଞଶାଳା ନିର୍ମାଣ କରିବା ନିମିତ୍ତ ଭୂମି କର୍ଷଣ କରୁଥିଲେ ।

ସେହି ସମୟରେ ସ୍ୱର୍ଗଅପ୍‌ସରା ମେନକା ଇନ୍ଦ୍ରଶାପରୁ ମୁକ୍ତପାଇ ଆକାଶମାର୍ଗରେ ଗତି କରୁଥିଲା । ତାହାକୁ ଦେଖି ସେହିପରି ଏକ ସୁନ୍ଦରୀ କନ୍ୟା ଲାଭ କରିବା ନିମିତ୍ତ ଜନକ ମନ ମଧ୍ୟରେ ଅଭିଳାଷ ପୋଷଣ କଲେ । ମେନକା ଜନକଙ୍କ ମନୋଭାବ ଜ୍ଞାତ ହୋଇ ସେ କ୍ଷେତ୍ରରୁ ଏକ ସୁନ୍ଦରୀ କନ୍ୟା ପ୍ରାପ୍ତ ହେବେ ବୋଲି କହିଲା । ରାଜର୍ଷି ଜନକ ଭୂମି କର୍ଷଣ କରୁଥିବା ବେଳେ ଭୂମିଭିତରୁ ଏକ ପେଟିକା ପ୍ରାପ୍ତହେଲେ ଏବଂ ତନ୍ମଧ୍ୟରେ ଏକ ପରମା ସୁନ୍ଦରୀ ଶିଶୁ କନ୍ୟା ଥିବା ଦେଖିବାକୁ ପାଇଲେ । କୃପଣଲୋକଙ୍କୁ ବସୁ ପ୍ରାପ୍ତି ହେଲା ଭଳି କନ୍ୟାଟିକୁ ଲାଭ କରି ଜନକ ଅତ୍ୟନ୍ତ ଆନନ୍ଦିତ ହେଲେ । ସେଠାରେ ଥିବା ଋଷିମାନେ ଉକ୍ତ କନ୍ୟାକୁ ସୀତା, ପାର୍ଥିବୀ, ମୈଥିଳୀ, ବୈଦେହୀ, ଜାନକୀ ଓ ଯୋଜନଗନ୍ଧା— ଏହିପରି ଛଅଗୋଟି ନାମରେ ନାମିତ କରାଇଲେ ।

ଏହାପରେ କବି ୨୧ ପଦଠାରୁ ୪୮ ପଦ ମଧ୍ୟରେ ସୀତାଙ୍କର ବାଲ୍ୟ, ପୌଗଣ୍ଡ ଓ ଯୌବନକାଳୀନ ସୌନ୍ଦର୍ଯ୍ୟ ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ସୁବର୍ଣ୍ଣା ସୀତାଙ୍କ ବିବାହ ନିମିତ୍ତ ଜନକ ସ୍ୱୟମ୍ବରର ଆୟୋଜନ କଲେ । ବାଲ୍ମୀକଙ୍କ ପରାମର୍ଶ କ୍ରମେ ଯେଉଁ ବ୍ୟକ୍ତି ଶିବଧନୁକୁ ଉଠାଇ ପାରିବ, ସୀତାଙ୍କ ସହିତ ତାହାର ବିବାହ ହେବ ବୋଲି ସେ ସ୍ଥିର କଲେ ।

## ଚତୁର୍ଥ ଛାନ୍ଦ :

ଏହି ଛାନ୍ଦରେ ଋଷ୍ୟଶୃଙ୍ଗ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ଚମ୍ପାବତୀ ପୁରରେ ଅନାବୃଷ୍ଟି ହେତୁ ରାଜା ଲୋମପାଦଙ୍କ ନିର୍ଦ୍ଦେଶ କ୍ରମେ ଋଷ୍ୟଶୃଙ୍ଗମୁନିଙ୍କୁ ଆଣିବା ନିମିତ୍ତ ଜରତାଦି ବାରାଙ୍ଗନାଗଣ ବିଭାଣ୍ଡକ ଋଷିଙ୍କ ଆଶ୍ରମ ନିକଟକୁ ଯାତ୍ରାକଲେ । ବିଭାଣ୍ଡକ ଋଷିଙ୍କ ପୁତ୍ର ଋଷ୍ୟଶୃଙ୍ଗଙ୍କୁ ସେମାନେ ବଶୀଭୂତ କରାଇ ଚମ୍ପାବତୀପୁରକୁ ଆଣିଲେ । ଫଳରେ ସେହି ରାଜ୍ୟରେ ବର୍ଷା ହେଲା । ଏହି ସମ୍ବାଦ ପାଇ ଅଯୋଧ୍ୟା ନୃପତି ଦଶରଥ ଚମ୍ପାବତୀ ପୁରରେ ପ୍ରବେଶ ହେଲେ ଏବଂ ଋଷ୍ୟଶୃଙ୍ଗ ଋଷିଙ୍କର ଦର୍ଶନ ଲାଭକଲେ । ସେହି ସମୟରେ ଜରତା ବେଶ୍ୟା ରାଜା ଦଶରଥଙ୍କୁ ପରାମର୍ଶ ଦେଲା—"ଆପଣଙ୍କ କନ୍ୟା ଶାନ୍ତାସହିତ ଋଷିଙ୍କୁ ବିବାହ କରାଇ ଦେଲେ ଆପଣ ପୁତ୍ର ଲାଭ କରିବେ ।"

କବିଭାବବିଳାସ ଦୃଷ୍ଟିରୁ ଛାନ୍ଦଟିର ୧୮, ୧୯, ୨୨ ଠାରୁ ୩୮ ପଦ, ୪୩ ଓ ୪୪ ପଦ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

## ପଞ୍ଚମ ଛାନ୍ଦ :

ରାଜା ଦଶରଥ ଋଷ୍ୟଶୃଙ୍ଗଙ୍କୁ ନିଜର ଜାମାତା ରୂପରେ ବରଣ କରି ତାହାଙ୍କ ସହିତ ଶାନ୍ତାକନ୍ୟାର ବିବାହ ସମ୍ପାଦନ କଲେ । ତତ୍ପରେ ଋଷ୍ୟଶୃଙ୍ଗ ଦଶରଥଙ୍କ ନିମିତ୍ତ ପୁତ୍ରେଷ୍ଟି ଯଜ୍ଞ କରି କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କୁ ଚରୁ ପ୍ରଦାନ କଲେ । ଫଳରେ ବିଷ୍ଣୁ ଚତୁର୍ଦ୍ଧାମୂର୍ତ୍ତି ଧାରଣ କରି ଚୈତ୍ରମାସ ଶୁକ୍ଳ ନବମୀ ତିଥିରେ କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କ ଗର୍ଭରୁ ଜନ୍ମଲାଭ କଲେ । ବଶିଷ୍ଠଙ୍କଦ୍ୱାରା ଚାରି ପୁତ୍ରଙ୍କ ନାମ ରାମ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ରଖାଗଲା । ଛାନ୍ଦର ଶେଷଭାଗରେ ଉକ୍ତ ଚାରି ପୁତ୍ରଙ୍କର ବାଲ୍ୟଲୀଳା ବର୍ଣ୍ଣିତ ହୋଇଛି । ୬ଷ୍ଠ ପଦଠାରୁ ଦ୍ୱାଦଶ ପଦ ମଧ୍ୟରେ କବି ଶାନ୍ତାକନ୍ୟାର ଅପୂର୍ବ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି ।

## ଷଷ୍ଠ ଛାନ୍ଦ :

ସିଦ୍ଧବନରେ ଋଷିମାନଙ୍କ ଉପରେ ସୁବାହୁ, ମାରୀଚ ପ୍ରଭୃତି ରାକ୍ଷସ ଅତ୍ୟାଚାର ଚଳାଇ ଥିଲେ । ଫଳରେ ମୁନି ବିଶ୍ୱାମିତ୍ର ଅଯୋଧ୍ୟା ଆସି ରାକ୍ଷସମାନଙ୍କୁ ବିନାଶ କରାଇବା ନିମିତ୍ତ ରାମ ଓ ଲକ୍ଷ୍ମଣଙ୍କୁ ନିଜ ସହିତ ବନକୁ ନେଲେ । ବନରେ ରାମଚନ୍ଦ୍ରଙ୍କ ଦ୍ୱାରା ତାଡ଼କା ଅସୁରୀ ବଧ ହୋଇ ଦିବ୍ୟଧାମର ଯାତ୍ରୀ ହେଲା । ଅନନ୍ତର ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଜୟା ଓ ବିଜୟା ନାମକ ମନ୍ତ୍ର ପ୍ରଦାନ କରିଥିବା ବିଷୟ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

ତୃତୀୟ ପଦଠାରୁ ଦଶମ ପଦ ମଧ୍ୟରେ ଅଯୋଧ୍ୟା ନଗରୀର ଶୋଭା ବର୍ଣ୍ଣନା, ୨୬ଶ ପଦଠାରୁ ୩୧ଶ ପଦ ମଧ୍ୟରେ ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି ।

## ସପ୍ତମ ଛାନ୍ଦ :

ଏହି ଛାନ୍ଦର ପ୍ରାରମ୍ଭ ଭାଗରେ ସିଦ୍ଧବନର ବର୍ଣ୍ଣନା ପ୍ରଦତ୍ତ ହୋଇଛି । ଦ୍ୱିତୀୟ ପଦଠାରୁ ଆରମ୍ଭ କରି ଚତୁର୍ଦ୍ଦଶ ପଦ ମଧ୍ୟରେ କବି ସିଦ୍ଧବନର ଯେଉଁ ବର୍ଣ୍ଣନା ପ୍ରଦାନ କରିଛନ୍ତି, ସେଥିରେ ତାହାଙ୍କର ଅପୂର୍ବ କଳ୍ପନାଚାତୁରୀ ପ୍ରକଟିତ ହୋଇଛି । ଏହାପରେ ରାମଚନ୍ଦ୍ରଙ୍କୁ ଦେଖିବା ନିମିତ୍ତ ମୁନିଋଷିମାନଙ୍କ ଆଗମନ, ସୁବାହୁ ରାକ୍ଷସର ବଧ ଓ ମାରୀଚ ବିକ୍ଷେପଣ, ଅହଲ୍ୟାଶାପ ଉଦ୍ଧାର ପ୍ରସଙ୍ଗ ବର୍ଣ୍ଣିତ

ହୋଇଛି । ୩୪ଶ ପଦଠାରୁ ୩୮ଶ ପଦମଧ୍ୟରେ ସବ୍ୟମକ ଅଳଙ୍କାର ମାଧ୍ୟମରେ ଅହଲ୍ୟାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କବିଙ୍କର ଅଲୌକିକ ପ୍ରତିଭାର ପରିଚୟ ପ୍ରଦାନ କରିଥାଏ । ଏହାପରେ ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଅହଲ୍ୟା ପ୍ରସଙ୍ଗ କହିବା ସଙ୍ଗେ ସଙ୍ଗେ ସୀତା ସ୍ୱୟମ୍ବର ବିଷୟ ପ୍ରକାଶ କରିଛନ୍ତି ।

**ଅଷ୍ଟମ ଛାନ୍ଦ:—**

ଏହା କବିଙ୍କର ଅପୂର୍ବ କଳ୍ପନା ବିଳସିତ ଏକ ମନୋରଥ ଛାନ୍ଦ । କବି ବିଶ୍ୱାମିତ୍ରଙ୍କ ମୁଖରେ ସୀତାଙ୍କର ଅପୂର୍ବ ଶୋଭା ବର୍ଣ୍ଣନା କରାଇଛନ୍ତି ।

ପ୍ରଥମ ପଦଠାରୁ ଆରମ୍ଭ କରି ୩୧ଶ ପଦ ମଧ୍ୟରେ ସୀତାଙ୍କ ମୁଖର ବିଭିନ୍ନ ଅଂଶର ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଛି ।

ସମଗ୍ର ଭଞ୍ଜସାହିତ୍ୟରେ ଏହି ଛାନ୍ଦଟି ଏକ ପ୍ରସିଦ୍ଧ ଓ ଜନପ୍ରିୟ ଛାନ୍ଦ । ଏଥିରେ ସଂସ୍କୃତ କବି ଶ୍ରୀହର୍ଷଙ୍କ ବିଖ୍ୟାତ 'ନୈଷଧ'ର ପ୍ରଭାବ ପଡ଼ିଥିବା ଜଣାଯାଏ । ଏତାଦୃଶ କଳ୍ପନା ବିଳସିତ ଛାନ୍ଦ ସମଗ୍ର ପ୍ରାଚ୍ୟସାହିତ୍ୟରେ ଏକାନ୍ତ ଦୁର୍ଲଭ ।

**ନବମ ଛାନ୍ଦ :**

'ବୈଦେହୀଶ ବିଳାସ'ର ନବମ ଛାନ୍ଦ ଓଡ଼ିଶାର ଭଞ୍ଜସାହିତ୍ୟରସିକମାନଙ୍କର ଏକ ଅତ୍ୟନ୍ତ ଆଦରଣୀୟ ଛାନ୍ଦ । ଏହାକୁ କେହିକେହି "ହିତଳକୁ ଆଲିଙ୍ଗନ ଛାନ୍ଦ" ବୋଲି ମଧ୍ୟ କହିଥାନ୍ତି । ଉକ୍ତଛାନ୍ଦର ପ୍ରଥମ ଦୁଇଟି ପଦରେ କବି ଗଙ୍ଗାନଦୀର ବର୍ଣ୍ଣନା ଅତି ଚମତ୍କାର ଭାବରେ ପ୍ରଦାନ କରିଛନ୍ତି । ଓଡ଼ିଶାର ଛାନ୍ଦାର୍ଥୀ ଓ ଆଲୋଚକଗଣ ଉକ୍ତ ଦୁଇଟି ପଦକୁ ସ୍ୱର୍ଗଗଙ୍ଗା, ମର୍ତ୍ତ୍ୟଗଙ୍ଗା ଓ ପାତାଳଗଙ୍ଗା—ଏହି ତିନି ଗଙ୍ଗା ପକ୍ଷରେ ଅର୍ଥ କରିଥାନ୍ତି । (୨୩)

ଦ୍ୱିତୀୟପଦର ଶେଷଭାଗରୁ ଆରମ୍ଭ କରି ଚତୁର୍ଥପଦ ମଧ୍ୟରେ କବି କୈବର୍ତ୍ତ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ସପ୍ତମ ପଦଠାରୁ ୨୧ ପଦମଧ୍ୟରେ ମିଥିଳା ନଗରୀରେ ରାମ, ଲକ୍ଷ୍ମଣ ଓ ବିଶ୍ୱାମିତ୍ରଙ୍କ ଯାତ୍ରା, ରାମଙ୍କ ସୌନ୍ଦର୍ଯ୍ୟ ଦେଖି

---

(୨୩) ଦ୍ରଷ୍ଟବ୍ୟ—ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ସମ୍ପାଦିତ ଓ ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗ ପ୍ରକାଶିତ "ବୈଦେହୀଶ ବିଳାସ" ।

ମିଥିଳାନାରୀ ଓ ସୀତାଙ୍କ ମନୋଭାବ ବର୍ଣ୍ଣିତ ହୋଇଛି । କବିଙ୍କ ଶବ୍ଦପ୍ରୟୋଗ ଚାତୁରୀ, ବର୍ଣ୍ଣନାବିଳାସ ଓ କଳ୍ପନାବିକାଶ ଦୃଷ୍ଟିରୁ ଉକ୍ତ ପଦଗୁଡ଼ିକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଛାନ୍ଦଟିର ପରବର୍ତ୍ତୀ ଅଂଶଟିରେ ରାମଙ୍କ ବୀରତ୍ୱ ସମ୍ପର୍କରେ ବିଶ୍ୱାମିତ୍ର ଓ ଜନକଙ୍କ ମଧ୍ୟରେ ଯୁକ୍ତିତର୍କ ଏବଂ ଶିବଧନୁଭଙ୍ଗ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

## ଦଶମ ଛାନ୍ଦ—

ଏହା 'ବେଶବର୍ଣ୍ଣନା ଛାନ୍ଦ' ବା 'ବିଭୂଷଣପୁଷ୍ପେ ଯା କାନ୍ତ ଜାଣ ଛାନ୍ଦ" ନାମରେ ଓଡ଼ିଶାର ଭଞ୍ଜସାହିତ୍ୟରସିକମାନଙ୍କ ମଧ୍ୟରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଛି । ହରଧନୁଭଙ୍ଗ ପରେ ରାମଚନ୍ଦ୍ରଙ୍କୁ ବରଣ କରିବା ନିମିତ୍ତ ସୀତାଙ୍କୁ ଆଣିବାକୁ ବିଶ୍ୱାମିତ୍ର କହିଲେ । ଫଳରେ ସୀତାଙ୍କ ସଖୀମାନେ ତାହାଙ୍କୁ ବିଭିନ୍ନ ବେଶଭୂଷାରେ କିପରି ସଜ୍ଜିତ କରାଇଥିଲେ, ତାହା ମୂଳତଃ ଉକ୍ତ ଛାନ୍ଦରେ ବର୍ଣ୍ଣିତ ହୋଇଛି । ତତ୍‌କାଳୀନ ଓଡ଼ିଶାର ରାଜପରିବାରର ନାରୀମାନଙ୍କଦ୍ୱାରା ବ୍ୟବହୃତ ବିଭିନ୍ନ ଅଳଙ୍କାରର ନାମ ଏହି ଛାନ୍ଦରେ ଦେଖିବାକୁ ମିଳେ ।

## ଏକାଦଶ ଛାନ୍ଦ—

ସୀତାଙ୍କ ସଖୀମାନେ ତାହାଙ୍କୁ ବିଭିନ୍ନ ବେଶଭୂଷାରେ ମଣ୍ଡନ କରାଇ ସ୍ୱୟମ୍ବରସଭାକୁ ଆଣିଲେ ଏବଂ ସୀତା ରାମଚନ୍ଦ୍ରଙ୍କ କଣ୍ଠାଗ୍ରରେ ବରମାଳା ଅର୍ପଣ କଲେ । ସ୍ୱୟମ୍ବର ସଭା ଭଙ୍ଗହେଲା । ଏହାପରେ ଜନକ ବିଶ୍ୱାମିତ୍ରଙ୍କୁ "ବିଭା ମଙ୍ଗଳ କାଳି ପରି କରିବା" ବୋଲି କହିବାରୁ ଲକ୍ଷ୍ମଣ ଏଥିରେ ସମ୍ମତ ହେଲେନାହିଁ । ପିତାଙ୍କୁ ନଜଣାଇ ବିବାହ ଉତ୍ସବ କରିବା ଉଚିତ ନୁହେ ବୋଲି ସେ କହିଲେ । ଏହା ଶୁଣି ଜନକମହର୍ଷି ଶତାନନ୍ଦଙ୍କୁ ଦୂତରୂପେ ଅଯୋଧ୍ୟା ପ୍ରେରଣ କଲେ ।

## ଦ୍ୱାଦଶ ଛାନ୍ଦ—

ବିବାହ କାର୍ଯ୍ୟ ବିଳମ୍ବ ହେବ ବୋଲି ଜାଣିବା ପରେ ସୀତା ଓ ରାମଚନ୍ଦ୍ରଙ୍କ ମନରେ କିପରି ବିରହ ବେଦନା ସୃଷ୍ଟି ହୋଇଥିଲା, ତାହାର ଏକ ମନୋଜ୍ଞ ଚିତ୍ର ଏହି ଛାନ୍ଦରେ ଅଙ୍କିତ ହୋଇଛି । ଯୁବକ ଓ ଯୁବତୀଙ୍କ ମନସ୍ତତ୍ତ୍ୱ ବିଚାର ଦୃଷ୍ଟିରୁ ଏହା ଏକ ଉପାଦେୟ ଛାନ୍ଦ ।

## ତ୍ରୟୋଦଶ ଛାନ୍ଦ--

ଶତାନନ୍ଦ ଅଯୋଧ୍ୟାରେ ରାଜା ଦଶରଥଙ୍କ ଦରବାରରେ ପ୍ରବେଶ ହୋଇ ରାମଚନ୍ଦ୍ରଙ୍କ ଦ୍ୱାରା ବିବିଧ ରାକ୍ଷସରାକ୍ଷସୀ ବଧ, ଅହଲ୍ୟା ଉଦ୍ଧାର ଓ ହରଧନୁଭଙ୍ଗ ଇତ୍ୟାଦି କପରି ସମ୍ଭବ ହୋଇଥିଲା ବଖାଣ କଲେ । ଏହା ଶୁଣି ଦଶରଥ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ନିଜର ପୁରଜନମାନଙ୍କ ସହିତ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରାରେ ଯାଇ ମିଥିଳାରେ ପହଞ୍ଚିଲେ । ସେଠାରେ ନିଜର ଚାରିପୁତ୍ରଙ୍କ ସହିତ ସୀତା ଓ ତାହାଙ୍କର ଅନ୍ୟାନ୍ୟ ଭଗିନୀବର୍ଗଙ୍କର ବିବାହ ପ୍ରସ୍ତାବ ଶୁଣି ଆହୁରି ପ୍ରସନ୍ନଚିତ୍ତ ହୋଇ ଉଠିଲେ । ତତ୍ପରେ କନ୍ୟାଦେଖା ଉତ୍ସବ ଅନୁଷ୍ଠିତ ହେଲା ।

ଏହି ଛାନ୍ଦର ୩୧୧ ପଦଠାରୁ ୪୯ ପଦ ମଧ୍ୟରେ ସୀତା, ଉର୍ମିଳା ପ୍ରଭୃତି ଚାରିକନ୍ୟାଙ୍କର ସୌନ୍ଦର୍ଯ୍ୟ କବିତ୍ୱପୂର୍ଣ୍ଣ ଭାଷାରେ ପ୍ରତିପାଦିତ ହୋଇଛି ।

## ଚତୁର୍ଦ୍ଦଶ ଛାନ୍ଦ—

ଏହି ଛାନ୍ଦରେ ରାମଙ୍କ ସହିତ ସୀତାଙ୍କର ତଥା ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କ ସହିତ ଯଥାକ୍ରମେ ଉର୍ମିଳା, ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କ ବିବାହ ଉତ୍ସବ ବର୍ଣ୍ଣିତ ହୋଇଛି । ଛାନ୍ଦର ପ୍ରାରମ୍ଭଭାଗରେ ବିବାହ ନିମିତ୍ତ ନଗର ଓ ବେଦିକାର ସାଜସଜ୍ଜା ବର୍ଣ୍ଣନା କରାଯାଇଛି ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାର ରାଜପରିବାରରେ ପ୍ରଚଳିତ ସାମାଜିକ ପ୍ରଥା ଅନୁଯାୟୀ ବିବାହ ଉତ୍ସବର ଚିତ୍ର ଉପସ୍ଥାପିତ ହୋଇଛି ।

## ପଞ୍ଚଦଶ ଛାନ୍ଦ—

ରାମସୀତାଙ୍କର ମଧୁଶଯ୍ୟା ପ୍ରସଙ୍ଗ ମୁଖ୍ୟତଃ ଏହିଛାନ୍ଦରେ ବର୍ଣ୍ଣିତ ହୋଇଛି ।

## ଷୋଡ଼ଶ ଛାନ୍ଦ—

ଜାମାତାଗଣଙ୍କ ସହିତ ଜନକଙ୍କର କନ୍ୟାବିଦାୟ ପ୍ରସଙ୍ଗ ଏହି ଛାନ୍ଦର ପ୍ରାରମ୍ଭରେ ବର୍ଣ୍ଣିତ । ଦଶରଥ ନିଜର ପୁତ୍ର ଓ ପୁତ୍ରବଧୂଙ୍କ ସହିତ ବିପୁଳ ଆଡ଼ମ୍ବରରେ ଅଯୋଧ୍ୟା ଫେରୁଥିଲା ବେଳେ ମାର୍ଗରେ କ୍ଷତ୍ରିୟକୁଳାନ୍ତକ

ଧନୁକୁ ପରଶୁରାମ ତାହାଙ୍କର ମାର୍ଗରୋଧ କରିଛନ୍ତି ଏବଂ ରାମଚନ୍ଦ୍ରଙ୍କଦ୍ୱାରା ତାଙ୍କର ଦର୍ପ ଖଣ୍ଡିତ ହୋଇଛି । ଅଯୋଧ୍ୟାରେ ପ୍ରବେଶ କରିବାର କିଛିଦିନ ପରେ ଗଣ୍ଡାଶିକାର ନିମିତ୍ତ ରାମଙ୍କର ବନକୁ ଯାତ୍ରା ଓ ଗୁହକଙ୍କ ସହିତ ମିତ୍ରତା ସ୍ଥାପନ ଛାନ୍ଦର ଶେଷଭାଗରେ ଉପ୍ତାପିତ ହୋଇଛି । ଏହାପରେ ଭରତ ଓ ଶତ୍ରୁଘ୍ନଙ୍କ ମାତୁଳାଳୟକୁ ଗମନ ଏବଂ ସୀତାଙ୍କ ସହ ରାମଚନ୍ଦ୍ରଙ୍କର ସୁଖମୟ ଦାମ୍ପତ୍ୟ ବିଳାସର ଚିତ୍ର ଦେଖିବାକୁ ମିଳେ ।

## ସପ୍ତଦଶ ଛାନ୍ଦ—

ଏହା ମଧ୍ୟ 'ବୈଦେହୀଶ ବିଳାସ'ର ଅନ୍ୟତମ ଜନପ୍ରିୟ ଛାନ୍ଦ । ରାଜା ଦଶରଥ ନିଜର ରାଜଦରବାରରେ ବଶିଷ୍ଠ, ଜାବାଳି, ବାମଦେବ, କଶ୍ୟପ ଓ ସୁମନ୍ତ ସହିତ ବିଚାର ପୂର୍ବକ ରାମଚନ୍ଦ୍ରଙ୍କୁ ରାଜା କରିବା ନିମିତ୍ତ ସ୍ଥିରକରିଛନ୍ତି । ମାତ୍ର ପରେ କୈକେୟୀଙ୍କ ଯୋଗୁ ରାମ, ଲକ୍ଷ୍ମଣ ଓ ସୀତା କିପରି ବନକୁ ଯାତ୍ରା କରିଥିଲେ, ସେହି ପ୍ରସଙ୍ଗ ଏହି ଛାନ୍ଦରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । ଏହା 'ବନଗମନଛାନ୍ଦ' ନାମରେ ବିଖ୍ୟାତ । ବିଭିନ୍ନ ସ୍ଥାନରେ ଉପମାଳଙ୍କାରର ପ୍ରୟୋଗ ଛାନ୍ଦଟିର ସୌନ୍ଦର୍ଯ୍ୟ ବର୍ଦ୍ଧନ କରିଛି । ବିଶେଷତଃ ୩୯ଶ ଓ ୪୦ଶ ପଦ କବିଙ୍କ ବିଚିତ୍ର କଳ୍ପନାଚାତୁରୀର ପରିଚାୟକ—

"ବାହୁଡ଼ି ନଗ୍ରକୁ ବୋଲୁଁ ଯେ ଘେନିଲେ ବେଢ଼ି ଗଡ଼ ଅତି ଉର
ବସନ୍ତ ଗୁଣ୍ଡିଚା ଏକାମ୍ରବନେ କି ଯାତ୍ରୀ ଅନୁଗତ ପର
ବଧୂଚୂଡ଼ି ଗଜରାଜ, ବିଭାତି କି ରାମ ସୀତା ଧରି
ବିଲେପିତ ଭୂତି ଏଣୁ ଶୁଭ୍ରକାନ୍ତି ଚନ୍ଦ୍ରାର୍ଦ୍ଧ ଛବି ମୁକୁଟ
ବିରବର୍ଣ୍ଣିମା ନାନା ରତ୍ନଭୂଷଣ ପାରୁଶରେ ଝଟଝଟ
ବାହକ ଯେ ସୁମନ୍ତ, ବ୍ରହ୍ମଚାରୀ ଲକ୍ଷ୍ମଣ ବନ୍ଦିତ ।"

ଏଥିରେ ରାମ ଓ ସୀତା ବନଗମନକାଳୀନ ଦୃଶ୍ୟକୁ 'ବସନ୍ତଗୁଣ୍ଡିଚା' (ଭୁବନେଶ୍ୱରର ଅଶୋକାଷ୍ଟମୀ ଯାତ୍ରା)ର ହରପାର୍ବତୀଙ୍କ ଶୋଭା ରୂପରେ ବର୍ଣ୍ଣନା କରିଛନ୍ତି ।

## ଅଷ୍ଟାଦଶ ଛାନ୍ଦ—

ରାମ, ଲକ୍ଷ୍ମଣ ଓ ସୀତାଙ୍କର ଚିତ୍ରକୂଟ ପର୍ବତରେ ଅବସ୍ଥାନ, ପୁତ୍ର ଚିନ୍ତାରେ ଦଶରଥଙ୍କ ସ୍ୱର୍ଗାରୋହଣ, ଚିତ୍ରକୂଟରେ ରାମ-ଭରତ ମିଳନ ଏବଂ ରାମଚନ୍ଦ୍ରଙ୍କ

ପାଦୁକାସହିତ ଭରତଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ସିଂହାସନରେ ସ୍ଥାପନ ପ୍ରସଙ୍ଗ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

## ଊନବିଂଶ ଛାନ୍ଦ—

ଏହି ଛାନ୍ଦଟି ମଧ୍ୟ ବୈଦେହୀଶ ବିଳାସର ଏକ ବିଖ୍ୟାତ ଅଂଶ । କବିଙ୍କ ଆଳଙ୍କାରିକତା ଓ କଳ୍ପନାବିଳାସ ଏଥିରେ ସ୍ପଷ୍ଟ ପ୍ରତିଫଳିତ ହୋଇଛି । ପ୍ରାରମ୍ଭ-ଭାଗରେ ମାଳଯମକରେ ଚିତ୍ରକୂଟର ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି । ଦିନେ ଚିତ୍ରକୂଟରେ କାକରୂପରେ ଇନ୍ଦ୍ରଙ୍କ ପୁତ୍ର ସୀତାଙ୍କୁ ଆଘାତ କରିବାରୁ ରାମଚନ୍ଦ୍ର କାଶଶର ପ୍ରୟୋଗ ପୂର୍ବକ କାକମାନଙ୍କର ଚକ୍ଷୁ ବିଦ୍ଧ କରିଦେଲେ । ସୀତା ଓ ରାମଙ୍କର ବନବିହାର ଓ ବିବିଧ ପ୍ରେମାଳାପ ଏଥିରେ ବର୍ଣ୍ଣିତ ହୋଇଛି ।

ଛାନ୍ଦଟିରେ ବିଭିନ୍ନ ପ୍ରକାର ଯମକଅଳଙ୍କାର, ବ୍ୟାଘ୍ରଗତି, ଶୃଙ୍ଖଳା, ଗୋମୂତ୍ର ଛନ୍ଦ, ଅନ୍ତର୍ଲିପି, ବହିର୍ଲିପି, ଲୋମବିଲୋମ, ମେଷଯୁଦ୍ଧ, ବକ୍ରୋକ୍ତି ଇତ୍ୟାଦି ଅଳଙ୍କାରର ସମାବେଶ ଏହାକୁ ବୁଧମନୋରଞ୍ଜନକାରୀ କରିଛି ।

## ବିଂଶ ଛାନ୍ଦ—

ଏହି ଛାନ୍ଦଟିରେ ସୀତା ଓ ରାମଙ୍କର କଥୋପକଥନ ଅତ୍ୟନ୍ତ ଚାତୁର୍ଯ୍ୟ-ପୂର୍ଣ୍ଣ ହୋଇଛି । ଦିନେ ସୀତାଂଶୁମୁଖୀ ସୀତା ଦୁଃଖିନୀ ହୋଇ ରାମଚନ୍ଦ୍ରଙ୍କ ସମକ୍ଷରେ ନିଜର ବନବାସଜନିତ ମନୋବେଦନା ପ୍ରକାଶ କଲେ । ରାମଚନ୍ଦ୍ର ଅତି ସୁନ୍ଦର ଭାବରେ କିପରି ତାହାଙ୍କୁ ସାନ୍ତ୍ୱନା ପ୍ରଦାନ କରିଥିଲେ, ତାହା କବି ବର୍ଣ୍ଣନା କରିଛନ୍ତି ।

## ଏକବିଂଶ ଛାନ୍ଦ—

ରାମ, ଲକ୍ଷ୍ମଣ ଓ ସୀତାଙ୍କର ଚିତ୍ରକୂଟ ତ୍ୟାଗକରି ଦଣ୍ଡକାରଣ୍ୟରେ ପ୍ରବେଶ, ବିରାଧ ପ୍ରଭୃତି ରାକ୍ଷସବଧ, ତତ୍ପରେ ବିଭିନ୍ନ ତୀର୍ଥଭ୍ରମଣ, ଫଲ୍‌ଗୁନଦୀରେ ସୀତାଙ୍କର ବାଲୁକାପିଣ୍ଡଦାନ, ସେମାନଙ୍କର ଅତ୍ରିମୁନିଙ୍କ ଆଶ୍ରମରେ ପଦାର୍ପଣ, ସୀତାଙ୍କୁ ଅନସୂୟାଙ୍କ ଅମ୍ଳାନବସ୍ତ୍ର ପ୍ରଦାନ, ଦଣ୍ଡକାରଣ୍ୟରେ ଋଷିମାନଙ୍କର କାମନାକାର ଓ ସେମାନଙ୍କୁ ରାମଚନ୍ଦ୍ରଙ୍କ ବରପ୍ରଦାନ ବିଷୟ ଏହି ଛାନ୍ଦରେ ବର୍ଣ୍ଣିତ ।

## ଦ୍ୱାବିଂଶ ଛାନ୍ଦ—

ଦଣ୍ଡକାରଣ୍ୟରେ ଅବସ୍ଥିତ ଅଗସ୍ତ୍ୟଋଷିଙ୍କ ଆଶ୍ରମର ଏକ ଚମତ୍କାର ବର୍ଣ୍ଣନା ଏହି ଛାନ୍ଦରେ ଦେଖିବାକୁ ମିଳେ । ରାମଚନ୍ଦ୍ରଙ୍କୁ ଅଗସ୍ତ୍ୟ ମୁନି ବ୍ରହ୍ମାସ୍ତ୍ର, ଧନୁ ଓ ଅକ୍ଷୟ ତୂଣୀର ପ୍ରଦାନ କଲେ ଏବଂ ତଦ୍ଦ୍ୱାରା ରାବଣବଧ ହେବ ବୋଲି କହିଲେ । ଋଷିଙ୍କ ପରାମର୍ଶ କ୍ରମେ ରାମଚନ୍ଦ୍ର ଗୋଦାବରୀତୀରସ୍ଥ ପଞ୍ଚବଟୀରେ କୁଟୀର ନିର୍ମାଣ ପୂର୍ବକ ଅବସ୍ଥାନ କଲେ । ସେଠାରେ ଜଟାୟୁପକ୍ଷୀ ସହିତ ରାମଚନ୍ଦ୍ରଙ୍କ ମିତ୍ରତା ସ୍ଥାପିତ ହେଲା ।

## ତ୍ରୟୋବିଂଶ ଛାନ୍ଦ—

ଏହି ଛାନ୍ଦରେ ଲକ୍ଷ୍ମଣଙ୍କଦ୍ୱାରା ରାବଣର ଭଗ୍ନୀ ଶୂର୍ପଣଖାର ନାସା ଓ କର୍ଣ୍ଣ ଛେଦନ ଏବଂ ଖର, ଦୂଷଣ, ତ୍ରିଶିର ରାକ୍ଷସ ବଧ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

## ଚତୁର୍ବିଂଶ ଛାନ୍ଦ—

ଶୂର୍ପଣଖା ଅପମାନିତା ହୋଇ ରାବଣ ନିକଟରେ ଉପସ୍ଥିତ ହେଲା ଏବଂ ତା ସମକ୍ଷରେ ନିଜର ଦୁର୍ଦ୍ଦଶା ବର୍ଣ୍ଣନା କଲା । ଫଳରେ ରାବଣ କ୍ରୋଧାନ୍ୱିତ ହୋଇ ମାରୀଚ ରାକ୍ଷସକୁ ମାୟା ସ୍ୱର୍ଣ୍ଣମୃଗ କରି ପଠାଇଲା । ସୀତାଙ୍କ ଅଭିଳାଷ ପୂରଣ ନିମିତ୍ତ ରାମଚନ୍ଦ୍ର ଧନୁର୍ବାଣ ଧରି ମାୟାମୃଗକୁ ମାରିବା ପାଇଁ ଅଗ୍ରସର ହେଲେ । ମୃଗର 'ହାହି ଲକ୍ଷ୍ମଣ' ଡାକ ଶୁଣି ସୀତା ଲକ୍ଷ୍ମଣଙ୍କୁ ରାମଙ୍କ ନିକଟକୁ ପଠାଇଲେ । ଏହି ସୁଯୋଗରେ ରାବଣ ଯୋଗୀବେଶରେ ସୀତାଙ୍କୁ ପର୍ଣ୍ଣକୁଟୀରରୁ ହରଣ କଲା । ମାର୍ଗମଧ୍ୟରେ ଜଟାୟୁ ରାବଣର ପଥରୋଧ କରି ଆହତ ହେଲା । ରାବଣ ସୀତାଙ୍କୁ ନେଇ ଲଙ୍କାର ଅଶୋକବନରେ ରଖିଲା ।

ଏହାହିଁ ୨୪ଶ ଛାନ୍ଦର ପ୍ରତିପାଦ୍ୟ ବିଷୟ ।

## ପଞ୍ଚବିଂଶ ଛାନ୍ଦ—

ମାୟାମୃଗକୁ ବଧ କରି ଲକ୍ଷ୍ମଣଙ୍କ ସହ ରାମଚନ୍ଦ୍ର କୁଟୀରକୁ ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ ସୀତାଙ୍କୁ ନଦେଖି ଦୁଃଖରେ ଅଧୀର ହୋଇପଡ଼ିଲେ । ସୀତା ଅନ୍ୱେଷଣରେ ସେ ଯାଉ ଯାଉ ମାର୍ଗରେ ଜଟାୟୁଠାରୁ ରାବଣଦ୍ୱାରା ସୀତାହରଣ ସମ୍ବାଦ ପ୍ରାପ୍ତ ହେଲେ ଓ ଦକ୍ଷିଣଦିଗକୁ ଯାତ୍ରାକଲେ ।

## ଷଡ଼୍‌ବିଂଶ ଛାନ୍ଦ—

ଅଶ୍ରୁପୂର୍ଣ୍ଣ ନୟନରେ ରାମଚନ୍ଦ୍ରଙ୍କର ସୀତା ଅନ୍ୱେଷଣ ଓ ମାର୍ଗରେ କବନ୍ଧ ରାକ୍ଷସବଧ ବିଷୟ ଏହି ଛାନ୍ଦର ପ୍ରାରମ୍ଭ ଭାଗରେ ବର୍ଣ୍ଣିତ ହୋଇଛି । ତତ୍ପରେ ବୃଦ୍ଧ ଗୋପାଳକୁ ବରଦାନ, ଶବରୀର ପରିଚର୍ଯ୍ୟା ଏବଂ ପମ୍ପା-ସରୋବରରେ ଚକ୍ରବାକ-ଚକ୍ରବାକୀଙ୍କୁ ଲକ୍ଷ୍ମଣଙ୍କର ଅଭିଶାପ ପ୍ରଦାନ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

କରୁଣ ରସର ପରିବେଷଣ ଦୃଷ୍ଟିରୁ ଏହି ଛାନ୍ଦ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଛି ।

## ସପ୍ତବିଂଶ ଛାନ୍ଦ—

ସୀତା ଅନ୍ୱେଷଣରେ ବନମଧ୍ୟରେ ଭ୍ରମଣ କରୁଥିବା ସମୟରେ ଋଷ୍ୟମୂକ ପର୍ବତରେ ସୁଗ୍ରୀବ ସହିତ ରାମଙ୍କର ସାକ୍ଷାତ ଓ ମିତ୍ରତା ସ୍ଥାପନ ପ୍ରସଙ୍ଗ ଏଥିରେ ବର୍ଣ୍ଣିତ ହୋଇଛି ।

## ଅଷ୍ଟବିଂଶ ଛାନ୍ଦ—

ବାଳିସୁଗ୍ରୀବ ଯୁଦ୍ଧ, ରାମଙ୍କ ଶରରେ ବାଳିବଧ ଓ ସୁଗ୍ରୀବଙ୍କର କିଷ୍କିନ୍ଧ୍ୟା ସିଂହାସନ ଆରୋହଣ ପ୍ରସଙ୍ଗ ଏହି ଛାନ୍ଦରେ କବି ବର୍ଣ୍ଣନା କରିଛନ୍ତି ।

ଏହି ଛାନ୍ଦରେ ଗୋଟିଏ 'ନାଗବନ୍ଧ' ଓ ଗୋଟିଏ 'ଚକ୍ରବନ୍ଧ' ରହିଛି । ସପ୍ତଶାଳର ବର୍ଣ୍ଣନା ପ୍ରସଙ୍ଗରେ ନାଗବନ୍ଧ ଓ ଚକ୍ରବନ୍ଧରେ ସୁଗ୍ରୀବଙ୍କର ରାମଙ୍କୁ ସ୍ତୁତି ଅତ୍ୟନ୍ତ ଚମତ୍କାର ହୋଇଛି ।

## ଊନତ୍ରିଂଶ ଛାନ୍ଦ—

ବର୍ଷାଋତୁରେ ରାମଚନ୍ଦ୍ରଙ୍କ ବିରହ ଅବସ୍ଥାର ଚିତ୍ର ଏଥିରେ ଅଙ୍କିତ ହୋଇଛି । ଛାନ୍ଦଟି ବିରୋଧାଭାଷ ଅଳଙ୍କାରରେ ରଚିତ ହୋଇଛି । ବର୍ଷାଋତୁରେ ଜଳ, ସ୍ଥଳ ଓ ଆକାଶର ସୌନ୍ଦର୍ଯ୍ୟ ଅତି ଚମତ୍କାର ଭାବରେ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

## ବିଂଶ ଛାନ୍ଦ—

ଏହି ଛାନ୍ଦରେ ଶରତ ଋତୁର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ରାମଚନ୍ଦ୍ରଙ୍କ ବିରହ ବର୍ଣ୍ଣିତ ହୋଇଛି । ଏହି ଛାନ୍ଦର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ଯେ, ଏହାର ପ୍ରତ୍ୟେକ ପାଦର ଆରମ୍ଭ ଓ ଶେଷରେ କବି 'ବର' ଶବ୍ଦ ବ୍ୟବହାର କରିଛନ୍ତି । ଏହା 'ଚନ୍ଦ୍ରସିଂହାବଲୋକନ' ଛାନ୍ଦରେ ରଚିତ । ଏ ସମ୍ପର୍କରେ ଛନ୍ଦର ଶେଷପଦରେ କବି ଲେଖିଛନ୍ତି—

> "ବର ଆଦ୍ୟ ପାଦଆଦ୍ୟ ପ୍ରାନ୍ତଛାନ୍ଦ ବୁଧରଞ୍ଜନ ଭବର
> ବରତେ ଚନ୍ଦ୍ରସିଂହାବଲୋକେ କହେ ଉପଇନ୍ଦ୍ର ବୀରବର" ।

## ଏକବିଂଶ ଛାନ୍ଦ—

ବୈଦେହୀଶ ବିଳାସର ଏହି ଛାନ୍ଦ ମଧ୍ୟ ଲୋକପ୍ରିୟତା ଅର୍ଜନ କରିଛି । ବକ ଓ କୁକ୍କୁଟଠାରୁ ସୀତାଙ୍କ ସମ୍ବାଦ ପାଇ ରାମଚନ୍ଦ୍ର କିପରି ସେମାନଙ୍କୁ ବର ପ୍ରଦାନ କରିଥିଲେ, ସେହି ବିଷୟ ଏଥିରେ ବର୍ଣ୍ଣିତ ହୋଇଛି । ଅନନ୍ତର ଅଗସ୍ତ୍ୟ ଓ ମାର୍କଣ୍ଡେୟ ଋଷିଙ୍କ ସହିତ ଶ୍ରୀରାମଙ୍କ ସାକ୍ଷାତ ଏବଂ ରାବଣଦ୍ୱାରା ସୀତାହରଣର କାରଣ ଅଗସ୍ତ୍ୟ ଋଷିଙ୍କ ମୁଖରେ କବି ପ୍ରକାଶ କରାଇଛନ୍ତି । ପରିଶେଷରେ ରାବଣକୁ ବଧ କରିବା ନିମିତ୍ତ ରାମଚନ୍ଦ୍ର ପ୍ରତିଜ୍ଞା କରିଛନ୍ତି ।

## ଦ୍ୱାବିଂଶ ଛାନ୍ଦ—

ଶ୍ରୀରାମଙ୍କଠାରୁ ଆଦେଶ ପାଇ ଲକ୍ଷ୍ମଣ କିଷ୍କିନ୍ଧ୍ୟାରେ ଉପସ୍ଥିତ ହେଲେ ଏବଂ ସୁଗ୍ରୀବ ନିକଟକୁ ନିଜର ଆଗମନ ବାର୍ତ୍ତା ପ୍ରେରଣ କଲେ । ସୁଗ୍ରୀବ ପ୍ରଥମେ ଲକ୍ଷ୍ମଣଙ୍କୁ ଚିହ୍ନି ନପାରି ଅବଜ୍ଞା ପ୍ରକାଶ କରିବାରୁ ଲକ୍ଷ୍ମଣ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ପଡ଼ିଲେ । ସେତେବେଳେ ସୁଗ୍ରୀବ ରାଣୀ ତାରା ସହିତ ପ୍ରମୋଦ ଦୋଳାରେ ବସିଥିଲେ । ଲକ୍ଷ୍ମଣଙ୍କ ଶର ଆସି ପ୍ରମୋଦଦୋଳାକୁ ଭେଦ କରିବାରୁ ସୁଗ୍ରୀବ ମୂର୍ଚ୍ଛିତ ହୋଇ ପଡ଼ିଲେ । ଅନନ୍ତର ତାରାର ବନ୍ଦାପନା ଓ ବିନୟୋକ୍ତି ଫଳରେ ଲକ୍ଷ୍ମଣଙ୍କ କ୍ରୋଧ ପ୍ରଶମିତ ହେଲା । ତତ୍ପରେ ସୁଗ୍ରୀବ ବାନର ସୈନ୍ୟମାନଙ୍କୁ ସଜ୍ଜିତ କରି ରାମଚନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହେବା ବିଷୟ ଏଥିରେ ବର୍ଣ୍ଣିତ ହୋଇଛି ।

## ତ୍ରୟସ୍ତ୍ରିଂଶ ଛାନ୍ଦ--

ଚତୁର୍ଦ୍ଦିଗକୁ ରାମଚନ୍ଦ୍ର ଦୂତ ପ୍ରେରଣ କଲେ । ଦକ୍ଷିଣ ଦିଗକୁ ହନୁମାନ, ଅଙ୍ଗଦ, ଜାମ୍ବବାନ୍ ପ୍ରଭୃତି ଯାଇଥିଲେ । ସେମାନଙ୍କର ଯାତ୍ରା ପୂର୍ବରୁ ରାମଚନ୍ଦ୍ର ନିଜ ହସ୍ତର ମୁଦ୍ରିକା ପ୍ରଦାନ କଲେ । ତତ୍ପରେ ଧବପୃଷ୍ଠରେ ଶୀତଋତୁ ଉପଗତ ହେଲା ।

ସ୍ୱୟଂପ୍ରଭା ଓ ସମ୍ପାତି ସହିତ ବାନରମାନଙ୍କ ସାକ୍ଷାତ ଓ ସମ୍ପାତିର ପୂଷ୍ଠଦ୍ୱାରା ବାନରମାନେ କିପରି ଲଙ୍କାକୁ ଯିବା ମାର୍ଗ ଦର୍ଶନ କଲେ, ସେହି ବିଷୟ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି । ଛାନ୍ଦର ଶେଷ ଭାଗରେ ଶୀତଋତୁରେ ରାମଚନ୍ଦ୍ରଙ୍କ ବିରହାବସ୍ଥାର ଚିତ୍ର ସଂକ୍ଷେପରେ ଉପସ୍ଥାପିତ ହୋଇଛି ।

## ଚତୁସ୍ତ୍ରିଂଶ ଛାନ୍ଦ—

ଏହି ଛାନ୍ଦର ପ୍ରାରମ୍ଭ ଭାଗରେ ବସନ୍ତଋତୁର ବର୍ଣ୍ଣନା ପ୍ରଦତ୍ତ ହୋଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ହନୁମାନଙ୍କର ଲଙ୍କାରେ ପ୍ରବେଶ ଏବଂ ସୀତାପାପ୍ତି ବିଷୟ ବର୍ଣ୍ଣିତ ହୋଇଛି ।

## ପଞ୍ଚତ୍ରିଂଶ ଛାନ୍ଦ—

ସୀତାଙ୍କ ସହିତ ହନୁମାନଙ୍କ ସାକ୍ଷାତ ଓ ରାମଙ୍କ ପ୍ରଦତ୍ତ ମୁଦ୍ରିକା ସୀତାଙ୍କୁ ପ୍ରଦାନ ଓ ସୀତାଙ୍କଠାରୁ ତାହାଙ୍କ ମଥାମଣି ନେଇ ହନୁମାନ ତାହାଙ୍କଠାରୁ ବିଦାୟ ନେଇଥିବା ପ୍ରସଙ୍ଗ ଏଥିରେ ଉପସ୍ଥାପିତ ହୋଇଛି ।

## ଷଟ୍‌ତ୍ରିଂଶ ଛାନ୍ଦ—

ଲଙ୍କାରୁ ଫେରିଯିବା ପୂର୍ବରୁ ହନୁମାନ ଶତ୍ରୁକୁ ନିଜର ଶକ୍ତି ଦେଖାଇବା ନିମିତ୍ତ ଇଚ୍ଛା ପ୍ରକାଶ କଲେ । ସେ ମଧୁବନ ମଧ୍ୟରେ ପ୍ରବେଶ ପୂର୍ବକ ମଧୁବନ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ରାବଣର ପୁତ୍ର ଅକ୍ଷୟ କୁମାରକୁ ବଧ କଲେ । ପରେ ତାହାଙ୍କଦ୍ୱାରା ଲଙ୍କାପୁର ଦାହ ଓ ହନୁମାନଙ୍କର ଲଙ୍କାରୁ ପ୍ରତ୍ୟାବର୍ତ୍ତନ ବିଷୟ ଏହି ଛାନ୍ଦରେ କବି ବର୍ଣ୍ଣନା କରିଛନ୍ତି ।

## ସପ୍ତତ୍ରିଂଶ ଛାନ୍ଦ—

ଲଙ୍କାରୁ ଫେରିଆସି ହନୁମାନ ବନ୍ୟଦେଵତାରେ ଉପସ୍ଥିତ ହେଲେ ଏବଂ ଅଙ୍ଗଦ ପ୍ରଭୃତିଙ୍କ ସମକ୍ଷରେ ଲଙ୍କାର ସମସ୍ତ ଘଟଣା ବର୍ଣ୍ଣନା କଲେ । ସୀତାଙ୍କ ସନ୍ଦେଶ ଲାଭ କରିଥିବାରୁ ବାନରମାନେ ଆନନ୍ଦିତ ହୋଇ କିଷ୍କିନ୍ଧ୍ୟାର ମଧୁବନରେ ପଶି ଫଳ ଖାଇବାକୁ ଲାଗିଲେ ।

## ଅଷ୍ଟତ୍ରିଂଶ ଛାନ୍ଦ—

ଏହି ସମ୍ବାଦ ଲାଭ କରି ସୁଗ୍ରୀବ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଏହା ଶ୍ରୀରାମଙ୍କୁ ଜଣାଇଲେ । ଅନନ୍ତର ହନୁମାନ ଲଙ୍କାର ସମସ୍ତ ଘଟଣା ଓ ସୀତାଙ୍କ ବିଷୟ ରାମଚନ୍ଦ୍ରଙ୍କ ସମକ୍ଷରେ ବର୍ଣ୍ଣନା କଲେ ଏବଂ ସୀତାଙ୍କ ପ୍ରଦତ୍ତ ମଥାମଣି ପ୍ରଦାନ କଲେ । ସୀତାଙ୍କ ବିଷୟ ସ୍ମରଣ କରି ରାମଚନ୍ଦ୍ର ସେତେବେଳେ ଅତ୍ୟନ୍ତ ଶୋକାକୁଳ ହୋଇ ପଡ଼ିଲେ ।

## ଊନଚତ୍ୱାରିଂଶ ଛାନ୍ଦ—

ରାମଚନ୍ଦ୍ର, ସୁଗ୍ରୀବ ଓ ଲକ୍ଷ୍ମଣ ପ୍ରଭୃତି ଶୁଭ ମୂହୂର୍ତ୍ତରେ ଲଙ୍କା ଅଭିଯାନ ନିମିତ୍ତ ଆୟୋଜନ ଆରମ୍ଭ କରନ୍ତି । ବାନର ଓ ଭଲ୍ଲୁକମାନଙ୍କ ସହିତ ରାମଚନ୍ଦ୍ର ସିନ୍ଧୁତଟରେ ଉପସ୍ଥିତ ହେବା ସମ୍ବାଦ ରାବଣ ଦୂତମୁଖରୁ ଶୁଣି ଉପହାସ କରିବାକୁ ଲାଗିଲା । ସୀତାଙ୍କୁ ଫେରାଇ ଦେବା ନିମିତ୍ତ ବିଭୀଷଣ ତାହାକୁ କହିବାରୁ ସେ ବିଭୀଷଣଙ୍କୁ ଅପମାନ ଦେଇ ତଡ଼ିଦେଲା । ବିଭୀଷଣ ବ୍ୟଥିତ ହୋଇ ଶ୍ରୀରାମଙ୍କ ଶରଣାପନ୍ନ ହେଲେ । ରାମଚନ୍ଦ୍ର ବିଭୀଷଣ ଉପରେ ସନ୍ତୁଷ୍ଟ ହୋଇ ତାହାକୁ ଅମରବର ପ୍ରଦାନ କରିବା ସଙ୍ଗେ ସଙ୍ଗେ ଲଙ୍କାପୁରର ରାଜା କରାଇଦେବେ ବୋଲି ଘୋଷଣା କଲେ ।

## ଚତ୍ୱାରିଂଶ ଛାନ୍ଦ—

ରାମଚନ୍ଦ୍ରଙ୍କଦ୍ୱାରା ସେତୁବନ୍ଧ ନିର୍ମାଣ ପ୍ରସଙ୍ଗ ଏହି ଛାନ୍ଦରେ ଅତି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି ।

## ଏକ ଚତ୍ୱାରିଂଶ ଛାନ୍ଦ—

ଏହି ଛାନ୍ଦରେ ଯୁଦ୍ଧ ନିମିତ୍ତ ରାମଚନ୍ଦ୍ର ଓ ରାବଣର ପ୍ରସ୍ତୁତ ବିଷୟ ମୂଳତଃ ବର୍ଣ୍ଣିତ ହୋଇଛି । ରାବଣଦ୍ୱାରା ପ୍ରେରିତ ଶୁକ, ସାରଣ ମନ୍ତ୍ରୀ ରାମଚନ୍ଦ୍ରଙ୍କ ପକ୍ଷର ସୈନ୍ୟମାନଙ୍କଦ୍ୱାରା ବନ୍ଦୀ ହୋଇଛନ୍ତି । ରାବଣ ପୁଷ୍ପକ ବିମାନରେ ଆରୋହଣ ପୂର୍ବକ ଆକାଶମାର୍ଗରେ ରହି ରାମଚନ୍ଦ୍ରଙ୍କ ସୈନ୍ୟ କଳନା କରୁଥିବା ବେଳେ ରାମଚନ୍ଦ୍ର ତାହାର ଛତ୍ର, ଚାମର ପ୍ରଭୃତି ଛେଦନ କରିଛନ୍ତି । ରାବଣର ଦରବାରରେ ଅଙ୍ଗଦର ଦୌତ୍ୟ ଏବଂ ସୀତାଙ୍କୁ ରାବଣ ରାମଚନ୍ଦ୍ରଙ୍କର କର୍ତ୍ତିତ ମାୟା ମସ୍ତକ ପ୍ରଦର୍ଶନ ପ୍ରସଙ୍ଗ ଏହି ଛାନ୍ଦରେ ବର୍ଣ୍ଣନା କରାଯାଇଛି ।

## ଦ୍ୱିଚତ୍ୱାରିଂଶ ଛାନ୍ଦ—

ଲଙ୍କାର ରାକ୍ଷସ ସୈନ୍ୟମାନଙ୍କ ସହିତ ରାମଚନ୍ଦ୍ରଙ୍କ ପକ୍ଷର ସୈନ୍ୟମାନଙ୍କ ମଧ୍ୟରେ ଯୁଦ୍ଧ, ଇନ୍ଦ୍ରଜିତର ଶରଦ୍ୱାରା ଲକ୍ଷ୍ମଣଙ୍କ ମୋହ ଓ ପୁନର୍ବାର ଚେତନା ପ୍ରାପ୍ତି ପ୍ରଭୃତି ବିଷୟ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

## ତ୍ରିଚତ୍ୱାରିଂଶ ଛାନ୍ଦ—

ନିକୁମ୍ଭିଲ ନାମକ ବଟବୃକ୍ଷମୂଳରେ ଇନ୍ଦ୍ରଜିତର ଯଜ୍ଞ ଓ ଦୈବଦଳନ ବିମାନପ୍ରାପ୍ତି ବିଷୟ ଏହି ଛାନ୍ଦର ଆଦ୍ୟଭାଗରେ ବର୍ଣ୍ଣିତ ହୋଇଛି । ତତ୍ପରେ ଇନ୍ଦ୍ରଜିତ ସହିତ ରାମ ଓ ଲକ୍ଷ୍ମଣଙ୍କର ଭୟଙ୍କର ଯୁଦ୍ଧ, ଇନ୍ଦ୍ରଜିତର ନାଗପାଶ ଶର ପ୍ରୟୋଗଫଳରେ ରାମ ଓ ଲକ୍ଷ୍ମଣଙ୍କ କଷ୍ଟ, ଗରୁଡ଼ଙ୍କୁ ସ୍ମରଣ କରିବା ପରେ ଗରୁଡ଼ଙ୍କ ଆଗମନ ଓ ରାମଚନ୍ଦ୍ରଙ୍କର ନାଗପାଶରୁ ମୁକ୍ତି ଇତ୍ୟାଦି ପ୍ରସଙ୍ଗ ଏଥିରେ ପ୍ରତିପାଦିତ ହୋଇଛି । ତତ୍ପରେ ହନୁମାନଦ୍ୱାରା ରାବଣର ସେନାପତି ଅକମ୍ପନର ବଧ, ସୁଗ୍ରୀବଦ୍ୱାରା ବଜ୍ରଦଂଷ୍ଟ୍ର ରାକ୍ଷସର ବଧ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ରାମଚନ୍ଦ୍ରଙ୍କ ରୂପ ଦେଖି ଲଙ୍କାର ନାରୀମାନେ ମୁଗ୍ଧ ହୋଇପଡ଼ିଛନ୍ତି । ରାବଣର ସୈନ୍ୟ ଓ ସେନାପତିଗଣ କପିର ପୃଷ୍ଠଭଙ୍ଗ ଦେଇଛନ୍ତି, ସେହି ବିଷୟ ମଧ୍ୟ କବି ଏହି ଛାନ୍ଦରେ ବର୍ଣ୍ଣନା କରିଛନ୍ତି ।

## ଚତୁଶ୍ଚତ୍ୱାରିଂଶ ଛାନ୍ଦ —

କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ ଓ ବଧ ପ୍ରସଙ୍ଗ ଏହି ଗ୍ରନ୍ଥର ପ୍ରଥମ ଭାଗରେ ବର୍ଣ୍ଣିତ ହୋଇଛି । ଅନନ୍ତର ନରାନ୍ତକ, ଦେବାନ୍ତକ, ଓ ତ୍ରିଶିର ପ୍ରଭୃତି ରାକ୍ଷସଙ୍କୁ ଯଥାକ୍ରମେ ଅଙ୍ଗଦ, ହନୁମାନ ଓ ନୀଳ ବଧ କରିଛନ୍ତି । ଇନ୍ଦ୍ରଜିତର ବ୍ରହ୍ମାସ୍ତ୍ର ପ୍ରୟୋଗ ଫଳରେ ଲକ୍ଷ୍ମଣଙ୍କ ସମୋହ, ହନୁମାନଙ୍କର ଗନ୍ଧମାର୍ଦ୍ଦନ ଆନୟନ ଏବଂ ଲକ୍ଷ୍ମଣଙ୍କ ଚେତନା ପ୍ରାପ୍ତି ପ୍ରଭୃତି ପ୍ରସଙ୍ଗ ଏଥିରେ କବି ବର୍ଣ୍ଣନା କରିଛନ୍ତି ।

## ପଞ୍ଚଚତ୍ୱାରିଂଶ ଛାନ୍ଦ —

ଲକ୍ଷ୍ମଣଙ୍କର ଚେତନା ପ୍ରାପ୍ତି ପରେ ହନୁମାନ ଗନ୍ଧମାର୍ଦ୍ଦନକୁ ଯଥାସ୍ଥାନରେ ରଖି ପ୍ରତ୍ୟାବର୍ତ୍ତନ କଲେ । ଉଭୟ ପକ୍ଷ ମଧ୍ୟରେ ପୁନର୍ବାର ଯୁଦ୍ଧ ଆରମ୍ଭ ହେଲା । ବାନରମାନଙ୍କ ଆକ୍ରମଣ ଫଳରେ ଲଙ୍କାର ନାରୀମାନେ ଭୟଭୀତ ହୋଇପଡ଼ିଲେ । ସୁଗ୍ରୀବଙ୍କ ଦ୍ୱାରା କୁମ୍ଭ ଓ ନିକୁମ୍ଭ ରାକ୍ଷସ ଏବଂ ରାମଙ୍କଦ୍ୱାରା ଖର ରାକ୍ଷସର ପୁତ୍ର ମକରାକ୍ଷର ବିନାଶ ସାଧିତ ହେଲା । ବିଦ୍ୟୁଜ୍ଜିହ୍ୱ ନାମକ ରାକ୍ଷସ ମାୟାସୀତାଙ୍କୁ ନେଇ ଯୁଦ୍ଧଭୂମିରେ ଉପସ୍ଥିତ କରାଇବା ପରେ ଇନ୍ଦ୍ରଜିତ ଖଡ୍ଗଦ୍ୱାରା ଉକ୍ତ ମାୟାସୀତାଙ୍କୁ ଦୁଇଖଣ୍ଡ କରି ଛେଦନ କଲା । ଏହା ଦେଖି ରାମଚନ୍ଦ୍ର ଓ ହନୁମାନ ଶୋକ କରିବାକୁ ଲାଗିଲେ । ପରିଶେଷରେ ରାମଚନ୍ଦ୍ର ଏହି ରହସ୍ୟ ଜ୍ଞାତ ହୋଇ ଆଶ୍ୱସ୍ତି ଲାଭ କଲେ ।

## ଷଟ୍‌ଚତ୍ୱାରିଂଶ ଛାନ୍ଦ —

ରାବଣର ପୁତ୍ର ଇନ୍ଦ୍ରଜିତ ପ୍ରତିପଦନ ଯଜ୍ଞକରି ଦେବଦଳନ ରଥ ପ୍ରାପ୍ତ ହେଏ ଓ ସେଥିରେ ରହି ଯୁଦ୍ଧକରେ । ବିଭୀଷଣଙ୍କ ପରାମର୍ଶ ଅନୁସାରେ ରାମଚନ୍ଦ୍ର ପ୍ରାତଃକାଳ ପୂର୍ବରୁ ଯୁଦ୍ଧ ଆରମ୍ଭ କରିଦେଲେ । ଫଳରେ ଇନ୍ଦ୍ରଜିତ ଆଉ ଯଜ୍ଞ କରି ନ ପାରି ଯୁଦ୍ଧକଲା ଏବଂ ସେଥିରେ ସେ ନିହତ ହେଲା । ଏହାପରେ ରାବଣ କ୍ରୋଧାନ୍ୱିତ ହୋଇ ସୀତାଙ୍କୁ ବଧ କରିବା ନିମିତ୍ତ ଉଦ୍ୟତ ହେଲା; କିନ୍ତୁ ବିଜଟାର ବାରଣ ହେତୁ ସେ ସେଥିରୁ ନିବୃତ୍ତ ହେଲା । ଉଭୟପକ୍ଷର ଯୁଦ୍ଧରେ ରାବଣର ବହୁ ପୁତ୍ର ଓ ସେନାପତି ନିହତ ହେଲେ ।

## ସପ୍ତଚତ୍ୱାରିଂଶ ଛାନ୍ଦ—

ଏହି ଛାନ୍ଦରେ ରାମ-ରାବଣ ଯୁଦ୍ଧ, ଲକ୍ଷ୍ମଣ ଶକ୍ତିଭେଦ, ବିଶଲ୍ୟକରଣୀ ପ୍ରୟୋଗ ଫଳରେ ଲକ୍ଷ୍ମଣଙ୍କ ସଂଜ୍ଞା ପ୍ରାପ୍ତି, ହନୁମାନ ଭରତ ସାକ୍ଷାତ, ରାମଙ୍କ ଦ୍ୱାରା ରାବଣପୁତ୍ର ସୁଲୋକଙ୍କର ବଧ ଏବଂ ଏହି ଫଳରେ ରାବଣର ଶୋକ ଇତ୍ୟାଦି ବିଷୟ ବର୍ଣ୍ଣିତ ହୋଇଛି ।

## ଅଷ୍ଟଚତ୍ୱାରିଂଶ ଛାନ୍ଦ –

ଅନ୍ତଃପୁରରେ ମନ୍ଦୋଦରୀ ଓ ଇନ୍ଦୁମତୀ ପ୍ରଭୃତି ରାଣୀ ସୀତାଙ୍କୁ ଫେରାଇ ଦେଇ ରାମଙ୍କ ଶରଣାପନ୍ନ ହେବାପାଇଁ ରାବଣକୁ ପରାମର୍ଶ ଦିଅନ୍ତି । ରାବଣ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ସେମାନଙ୍କ ସମକ୍ଷରେ ବଖାଣ କରେ । ସେ ଓ କୁମ୍ଭକର୍ଣ୍ଣ କିପରି ପୂର୍ବଜନ୍ମରେ ଜୟବିଜୟ ଥିଲେ ଏବଂ ଅଭିଶାପ ଫଳରେ ରାକ୍ଷସ ହୋଇ ଜନ୍ମଲାଭ କରିଛନ୍ତି, ସେହି ବିଷୟ ରାବଣ ପ୍ରକାଶ କରିଛି । ରାମଚନ୍ଦ୍ରଙ୍କ ହସ୍ତରେ ମୃତ୍ୟୁ ଲାଭକଲେ ସେ ପାପମୁକ୍ତ ହୋଇ ବୈକୁଣ୍ଠକୁ ଫେରିଯିବ ବୋଲି ପ୍ରକାଶ କରିଛି ।

## ଊନପଞ୍ଚାଶତ୍ ଛାନ୍ଦ—

ଏହି ଛାନ୍ଦରେ ରାମ ଓ ରାବଣ ମଧ୍ୟରେ ସଂଘଟିତ ଯୁଦ୍ଧର ଚିତ୍ର ଅତି ସୁନ୍ଦର ଭାବରେ ଅଙ୍କିତ ହୋଇଛି । ଯୁଦ୍ଧ ବର୍ଣ୍ଣନା ପ୍ରସଙ୍ଗରେ କବି ୧୩ଶ ଠାରୁ ୨୮ଶ ପଦ ମଧ୍ୟରେ ଯଥାକ୍ରମେ ଗୋମୂତ୍ରିଛନ୍ଦ, ସର୍ବଯମକ, ଶୃଙ୍ଖଳା, ବିଲୋମବିଲୋମ, ବିଲୋମଅନୁଲୋମ, ବୃକ୍ଷବନ୍ଧ, ଗଦାବନ୍ଧ ଓ ଶରବନ୍ଧର ସମାବେଶ ଘଟାଇଛନ୍ତି । ସେହିପରି ୮୭ ଠାରୁ ୯୦ ପଦ ପର୍ଯ୍ୟନ୍ତ ଚାରିଗୋଟି ପଦ ରଥବନ୍ଧରେ ରଚିତ ହୋଇଛି ।

## ପଞ୍ଚାଶତ୍ ଛାନ୍ଦ—

ରାମରାବଣ ଯୁଦ୍ଧ ଓ ରାମଙ୍କ ବ୍ରହ୍ମାସ୍ତ୍ରଦ୍ୱାରା ରାବଣର ବଧ ପ୍ରସଙ୍ଗ ଏହି ଛାନ୍ଦର ପ୍ରାରମ୍ଭ ଭାଗରେ ବର୍ଣ୍ଣିତ ହୋଇଛି । ଏହାପରେ ଯୁଦ୍ଧର ଅବସାନ ଘଟିଲା ଏବଂ ବିଭୀଷଣ ଲଙ୍କାର ରାଜପଦରେ ଅଭିଷିକ୍ତ ହେଲେ । ରାମଙ୍କ ପରାମର୍ଶ ଅନୁସାରେ ମନ୍ଦୋଦରୀ ତାହାଙ୍କର ପାଟରାଣୀ ହେଲେ । ସୀତାଙ୍କୁ ଆଣିବା ନିମିତ୍ତ

ରାମଚନ୍ଦ୍ର ଆଦେଶ ଦେବାରୁ ମନ୍ଦୋଦରୀ ପ୍ରଭୃତ ରାଣୀମାନେ ସୀତାଙ୍କୁ ବେଶ-ଭୂଷାରେ ସଜ୍ଜିତ କଲେ ।

## ଏକପଞ୍ଚାଶତ୍ ଛାନ୍ଦ—

ରାମଚନ୍ଦ୍ର ଓ ସୀତାଙ୍କ ସାକ୍ଷାତ, ସୀତାଙ୍କ ଅଗ୍ନି ପରୀକ୍ଷା, ରାମଚନ୍ଦ୍ରଙ୍କୁ ଦେବତାଙ୍କ ସ୍ତୁତି ଓ ରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ବିଷୟ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

## ଦ୍ୱିପଞ୍ଚାଶତ୍ ଛାନ୍ଦ—

ଏହି ଛାନ୍ଦରେ ରାମଚନ୍ଦ୍ରଙ୍କ ଅଭିଷେକୋତ୍ସବର ବର୍ଣ୍ଣନା ଅତି ଚମତ୍କାର ଭାବରେ ପ୍ରଦତ୍ତ ହୋଇଛି । ଅଭିଷେକୋତ୍ସବ ବର୍ଣ୍ଣନା ଓ ସୀତାଙ୍କ ସହିତ ରାମଚନ୍ଦ୍ରଙ୍କ ବିଳାସ ବିଷୟ ଉଲ୍ଲେଖିତ ହେବା ପରେ କାବ୍ୟର ବିଷୟ ବସ୍ତୁ ପରିସମାପ୍ତ ହୋଇଛି ।

ବାଲ୍ମୀକି ରାମାୟଣର ଉତ୍ତରକାଣ୍ଡ ବର୍ଣ୍ଣିତ ସୀତାନିର୍ବାସନ, ବାଲ୍ମୀକି ଆଶ୍ରମରେ ସୀତାଙ୍କ ଅବସ୍ଥାନ, ଲବକୁଶ ଜନ୍ମ ଇତ୍ୟାଦି ପ୍ରସଙ୍ଗ କବି 'ବୈଦେହୀଶ ବିଳାସ'ରେ ବର୍ଣ୍ଣନା କରିନାହାଁନ୍ତି । ଏ ପ୍ରସଙ୍ଗରେ କବି ଲେଖିଛନ୍ତି—

"ବାଲ୍ମୀକି ସଦନେ ଯାଇ ଜାନକୀ ରହିବା
ବଧି ଲକ୍ଷ୍ମଣର କୁଶ ଲବ ଜନ୍ମହେବା ଯେ ।
ବିରଚିବା ଯାଗ ରାମସୁତ ଗୀତଗାନ
ବୈଦେହୀ ଆଣିବା ପୁଣି ପାତାଳେ ଗମନ ଯେ ॥
ବଧିର ହେବା ଲକ୍ଷ୍ମଣ ରାମ ମାତଭ୍ରାତ
ବହ୍ନିରେ ପଶିବା ଯେନ ସ୍ୱାମୀର ସଙ୍କେତ ଯେ ॥
ବସୁଧାଭୃତ କରଣ ଲବକୁଶ ବେନି ॥
ବୈକୁଣ୍ଠେ ଗମିବା ରାମ ସ୍ୱଜନଙ୍କୁ ଘେନି ଯେ ॥
ବିଭଙ୍ଗ ରସ ବୋଲିଣ ନ ବର୍ଣ୍ଣିଲି ଏତେ
ବୁଧେ ବୋଲିଛନ୍ତି ଏହା ଦୋଷ ଛାନ୍ଦଗୀତେ ଯେ ॥

(୪୧—୪୬)

୪୭ ଠାରୁ ୫୨ ପଦ ମଧ୍ୟରେ କବି ନିଜର ବଂଶ ପରିଚୟ ଓ ବୈଦେହୀଶ ବିଳାସ ରଚନା ନିମିତ୍ତ ଶ୍ରୀରାମଙ୍କ କୃପା ବିଷୟ ଉଲ୍ଲେଖ କରିଛନ୍ତି ।

ସଂକ୍ଷେପରେ ଏହା ହେଉଛି ବୈଦେହୀଶ ବିଳାସର ବିଭିନ୍ନ ଛାନ୍ଦର ବିଷୟ-ବସ୍ତୁ । ବିଷୟ ବିନ୍ୟାସରେ କବି ବାଲ୍ମୀକି ରାମାୟଣ, ଅଧ୍ୟାତ୍ମ ରାମାୟଣ, ରଘୁବଂଶ, ଚମ୍ପୂ ରାମାୟଣ, ମହାନାଟକ ଓ ବଳରାମଦାସଙ୍କ ଦାଣ୍ଡି ରାମାୟଣର ସହାୟତା ଗ୍ରହଣ କରିଥିବା ଦେଖାଯାଏ ।



# କବିଙ୍କ ଶବ୍ଦପାଣ୍ଡିତ୍ୟ ଓ ବର୍ଣ୍ଣନା ଅର୍ଥବିନ୍ୟାସ ଚାତୁରୀ

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟାଦର୍ଶ ବିଷୟକ ଆଲୋଚନା ପ୍ରସଙ୍ଗରେ ପୂର୍ବରୁ କୁହାଯାଇଛି ଯେ, ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଥିଲା ସଂସ୍କୃତ ସାହିତ୍ୟର ଅନୁସାରୀ । ସଂସ୍କୃତ ଭାଷାର ବିଖ୍ୟାତ କାବ୍ୟରାଜିରେ ଯେଉଁ ବୈଶିଷ୍ଟ୍ୟସମୂହ ପ୍ରକଟିତ ହୋଇ ଭାରତୀୟ ପଣ୍ଡିତମଣ୍ଡଳୀର ସାରସ୍ୱତ ପିପାସା ଚରିତାର୍ଥ କରୁଥିଲା, ଓଡ଼ିଆ କାବ୍ୟରାଜିରେ ସେହି ବୈଶିଷ୍ଟ୍ୟ ପରିସ୍ଫୁଟନ ପୂର୍ବକ ଉତ୍କଳୀୟ କାବ୍ୟରସ ପିପାସୁ ବିଦ୍ୱାନ୍ ପଣ୍ଡିତମାନଙ୍କର ତୃପ୍ତି ବିଧାନ ଥିଲା ମଧ୍ୟଯୁଗୀୟ କାବ୍ୟସ୍ରଷ୍ଟା-ମାନଙ୍କର ମୂଳଲକ୍ଷ୍ୟ । ସଂସ୍କୃତ ସାହିତ୍ୟର ମହାକବି ଶ୍ରୀହର୍ଷଙ୍କ ନୈଷଧ, ମାଘଙ୍କ ଶିଶୁପାଳ ବଧ, ଭାରବିଙ୍କ କିରାତାର୍ଜୁନୀୟମ୍ ଓ ବାଣଭଟ୍ଟଙ୍କ କାଦମ୍ବରୀ ପ୍ରଭୃତି ବିଖ୍ୟାତ କୃତିରାଜିରେ ଯେଉଁ କେତୋଟି ମୁଖ୍ୟ ବୈଶିଷ୍ଟ୍ୟ ଫୁଟି ଉଠିଥିଲା, ତନ୍ମଧ୍ୟରୁ ଶବ୍ଦପାଣ୍ଡିତ୍ୟ ଓ ଅର୍ଥଗତ ଚମତ୍କାରିତା ଅନ୍ୟତମ । ଉକ୍ତ ମହାକବି-ଗଣ ସେମାନଙ୍କ କୃତିସମୂହରେ ଏପରି ଶବ୍ଦପ୍ରୟୋଗ କରିଛନ୍ତି, ଯହିଁରେ ଅର୍ଥଗତ ଚାତୁରୀ ପ୍ରକଟିତ ହେବା ସଙ୍ଗେସଙ୍ଗେ କାବ୍ୟସ୍ରଷ୍ଟାଙ୍କ ଶବ୍ଦପାଣ୍ଡିତ୍ୟ ଫୁଟିଉଠିଛି ।

ସଂସ୍କୃତ ସାହିତ୍ୟାନୁସାରୀ ଓଡ଼ିଆ ରୀତିକାବ୍ୟକାରଗଣ ମଧ୍ୟ ସେମାନଙ୍କ କୃତିରାଜିରେ ଅସାଧାରଣ ଶବ୍ଦ ପ୍ରୟୋଗ ଚାତୁରୀ ପ୍ରଦର୍ଶନ କରିଯାଇଛନ୍ତି । ସେମାନେ ସଂସ୍କୃତ ଭାଷାର ବିଭିନ୍ନ କୋଷଗ୍ରନ୍ଥ ସହିତ ଉପର୍ଯ୍ୟୁକ୍ତ ସଂସ୍କୃତ କବିମାନଙ୍କ କୃତିରାଜି ଅଧ୍ୟୟନ କରିଥିଲେ । ସୁତରାଂ, ନୈଷଧ, କିରାତାର୍ଜୁନୀୟମ୍, ଶିଶୁପାଳବଧ ଓ କାଦମ୍ବରୀ ପ୍ରଭୃତି କାବ୍ୟରେ ପ୍ରତିଫଳିତ ଶବ୍ଦପାଣ୍ଡିତ୍ୟ ସେମାନଙ୍କ ରଚନାବଳୀରେ ମଧ୍ୟ ଫୁଟିଉଠିଛି । ଧନଞ୍ଜୟ, ଉପେନ୍ଦ୍ର, ଅଭିମନ୍ୟୁ, ଯଦୁମଣି ଓ ବ୍ରଜନାଥ ପ୍ରମୁଖ ବହୁ କବିଙ୍କ ରଚନାରେ ଅର୍ଥଗତ ଚମତ୍କାରିତା ପ୍ରକଟିତ ହେବା ସଙ୍ଗେ ସଙ୍ଗେ କବିଙ୍କ ଶବ୍ଦପାଣ୍ଡିତ୍ୟର ପରିଚୟ ମିଳିଥାଏ ।

ରୀତିଯୁଗର ପଟ୍ଟପୁରୋଧା ଉପେନ୍ଦ୍ର ଭଞ୍ଜ ଶବ୍ଦଶାସ୍ତ୍ରରେ ଜଣେ ଅଦ୍ୱିତୀୟ ପଣ୍ଡିତ ଥିଲେ । ସେ ଶବ୍ଦସାଗର ପାରି ହୋଇଥିଲେ ବୋଲି ତାହାଙ୍କର ବିଭିନ୍ନ

କାବ୍ୟରେ ଉଲ୍ଲେଖ କରିଛନ୍ତି । ଏ ପ୍ରସଙ୍ଗରେ ନିମ୍ନ ଅଂଶଟି ଅନୁଧ୍ୟାନ ଯୋଗ୍ୟ ମନେହୁଏ—

ଧରଣୀ କୁଳର ସ ର ଆଶ୍ରୟରୁ ନିରନ୍ତର
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଭିଛୁ
ଶବ୍ଦସମୁଦ୍ର ପାର ॥
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୧୪ । ୩୮)

ଏହା ସଙ୍ଗେ ସଙ୍ଗେ ସାଧାରଣ ଶିକ୍ଷା ପ୍ରାପ୍ତ ବ୍ୟକ୍ତି ତାହାଙ୍କ କାବ୍ୟ ବିବେଚନା କରିବା ପାଇଁ ଯୋଗ୍ୟ ନୁହେ ବୋଲି ସେ ଘୋଷଣା କରିଛନ୍ତି । ଶବ୍ଦ-ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିବା ବ୍ୟକ୍ତିହିଁ ତାହାଙ୍କ କାବ୍ୟ ପାଠ ପୂର୍ବକ ତାର ଯଥାର୍ଥ ମର୍ମ ଅବବୋଧ ହୋଇପାରିବ ବୋଲି ସେ ଏକାଧିକବାର ଘୋଷଣା କରିଛନ୍ତି । ଯଥା—

(କ) ବୁଦ୍ଧି ଉତ୍ତମ ଯାହାର କାବ୍ୟ ଅଭିଧାନେ
ଭୁବନ ନାଶ ଚରିତ ଶୁଣ ସାବଧାନେ ।
(ବୈଦେହୀଶ ବିଳାସ, ୪/୧)

(ଖ) ନାନା ଶବ୍ଦଅର୍ଥେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ ।
ସେହି କରୁ ଏ ଛାନ୍ଦ ବିବେଚନା
× × × (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୩ ।୧)

ଭଞ୍ଜସାହିତ୍ୟର ସୁଯୋଗ୍ୟ ଓ ସୁହୃଦ୍ ପାଠକ ମାନେ କବିଙ୍କ ଏହି ଉକ୍ତିର ଯାଥାର୍ଥ୍ୟ ଉପଲବ୍ଧି କରିପାରିବେ । ସ୍ଥାନେ ସ୍ଥାନେ କବି ଏପରି ଶବ୍ଦ ପ୍ରୟୋଗ କରିଛନ୍ତି, ଯଦ୍ଦ୍ୱାରା ରଚନାର ବାସ୍ତବ ଅର୍ଥ ଜ୍ଞାତ ହେବା ନିମିତ୍ତ ବାଖ୍ୟାକାରଙ୍କୁ ବେଳେବେଳେ ଗୋଲକଧନ୍ଦାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ତାହାଙ୍କ ଶବ୍ଦପାଣ୍ଡିତ୍ୟ ପ୍ରଦର୍ଶନ କ୍ଷେତ୍ରରେ ସଂସ୍କୃତ ଭଣ୍ଡାର ବିଭିନ୍ନ କୋଷଗ୍ରନ୍ଥ, ଅଳଙ୍କାର ଶାସ୍ତ୍ର ତଥା ଭାରବି, ମାଘ, ଶ୍ରୀହର୍ଷ ଓ ବାଣଭଟ୍ଟ ପ୍ରଭୃତି କବିଙ୍କ ରଚନାବଳୀର ପ୍ରଭାବ ସ୍ପଷ୍ଟ ଅନୁଭୂତ ହୋଇଥାଏ । ଏହି ଦୃଷ୍ଟିରୁ ଭଞ୍ଜସାହିତ୍ୟରେ ଶବ୍ଦ ପାଣ୍ଡିତ୍ୟ ସମ୍ପର୍କରେ ଆଲୋଚନା କରିବାକୁ ଗଲାବେଳେ ଉପର୍ଯୁକ୍ତ ସଂସ୍କୃତ

ଗ୍ରନ୍ଥରଚନାରେ ପ୍ରକଟିତ ବିବିଧ ଶବ୍ଦ ପ୍ରୟୋଗ କୌଶଳ ବିଷୟରେ ସଚେତନ ହେବା ଆବଶ୍ୟକ ।

କବିଙ୍କ 'ବୈଦେହୀଶ ବିଳାସ' ତାହାଙ୍କ ଶବ୍ଦପାଣ୍ଡିତ୍ୟର ଅନ୍ୟତମ ବଳିଷ୍ଠ ନିଦର୍ଶନ । ଉକ୍ତ କାବ୍ୟର ଏହି ଦିଗବି ସମ୍ପର୍କରେ ଆଲୋଚନା କରିବାକୁ ଗଲବେଳେ ପ୍ରଧାନତଃ ନିମ୍ନ କେତୋଟି ବିଷୟ ପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ ।

## ୧ । ବର୍ଣ୍ଣାଦ୍ୟ ନିୟମରେ କାବ୍ୟ ରଚନା —

ପୂର୍ବରୁ କୁହାଯାଇଛି ଯେ, 'ବୈଦେହୀଶ ବିଳାସ' 'ବ' ଆଦ୍ୟ ନିୟମରେ ରଚିତ । ଅର୍ଥାତ୍, ପ୍ରତ୍ୟେକ ପାଦର ଆଦ୍ୟରେ 'ବ' ବର୍ଣ୍ଣ ବ୍ୟବହୃତ ହୋଇଛି । ଏହିପରି 'ବ' ବର୍ଣ୍ଣକୁ ଆଦ୍ୟରେ ବ୍ୟବହାର ପୂର୍ବକ କାବ୍ୟ ରଚନା କରିବା କବିଙ୍କର ଏକ ଅସାଧାରଣ କୃତିତ୍ୱ । ଶବ୍ଦଶାସ୍ତ୍ରରେ ଅସାଧାରଣ ପାଣ୍ଡିତ୍ୟ ନଥିଲେ ଏହି ରୀତିରେ କାବ୍ୟରଚନା କରିବା ଏକାନ୍ତ ଦୁରୁହ ବ୍ୟାପାର । ଏଥିରୁ କବିଙ୍କ ଶବ୍ଦପାଣ୍ଡିତ୍ୟ ସହଜରେ ଅନୁମାନ କରାଯାଇପାରେ ।

ସ୍ଥାନେ ସ୍ଥାନେ 'ବ' ବର୍ଣ୍ଣକୁ ଆଦ୍ୟରେ ରଖିବା ନିମିତ୍ତ କବି ନିଜର ବିଚିତ୍ର ଚିନ୍ତାଶକ୍ତିଭୁଗ ଫୁଟାଇଛନ୍ତି । ଏହିପରି କେତେଗୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

(କ) ତୃତୀୟ ଛାନ୍ଦରେ ସୀତାଙ୍କ କେଶପାଶର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ବେଣି ଗୁରୁରେ ଶୁକ୍ଳ ରଙ୍ଗ ଫୁଲ ଯତନ
ବେଣୀ ତ୍ରିପୂର୍ବକ ନଭରୁ ହେଉଛନ୍ତି ପତନ ।
(୩/୧୮)

ଅର୍ଥାତ୍, ସୀତା କେଶପାଶରେ ଶୁକ୍ଳ ଓ ଲାଲ ପୁଷ୍ପଗୁଚ୍ଛ ଧାରଣ କରିଥିଲେ । ଫଳରେ କୃଷ୍ଣକେଶ ସହିତ ଶୁକ୍ଳ ଓ ଲାଲବର୍ଣ୍ଣ ମିଳିତ ହୋଇ ତ୍ରିବେଣୀ (ଗଙ୍ଗା, ଯମୁନା ଓ ସରସ୍ୱତୀ)ର ଧାରଣା ମନରେ ସୃଷ୍ଟି ହେଉଥିଲା । କବି ଏ କ୍ଷେତ୍ରରେ 'ତ୍ରିବେଣୀ' ଶବ୍ଦ ବ୍ୟବହାର କରିଥାନ୍ତେ । ମାତ୍ର ତ୍ରିବେଣୀ ଶବ୍ଦର ଆଦ୍ୟବର୍ଣ୍ଣ 'ବ' ନୁହେଁ, 'ତ' । ପୁନଶ୍ଚ ସମଗ୍ର ତୃତୀୟଛାନ୍ଦ ଆଦ୍ୟ ଯମକରେ ରଚିତ ହୋଇଥିବାରୁ

ଉଭୟ ପାଦର ପ୍ରଥମ ପଦଟି ସମାନ । ଉପର୍ଯ୍ୟୁକ୍ତ ଉକ୍ତିରେ ପ୍ରଥମପାଦର ଆଦ୍ୟରେ 'ବେଣୀ' ଶବ୍ଦ ବ୍ୟବହୃତ ହୋଇଛି । ଅତଏବ ଦ୍ୱିତୀୟପାଦର ଆଦ୍ୟରେ ମଧ୍ୟ ଉକ୍ତ 'ବେଣୀ' ଶବ୍ଦ ଭିନ୍ନ ଅର୍ଥରେ ବ୍ୟବହୃତ ହେବା କଥା । ମାତ୍ର ସୀତାଙ୍କ ମସ୍ତକରେ ତିନଗୋଟି ରଙ୍ଗର ଏକତ୍ର ସମାବେଶ ହୋଇଥିବାରୁ ତାହାକୁ ତ୍ରିବେଣୀର ଏକତ୍ର ଅବସ୍ଥାନ ବୋଲି ବର୍ଣ୍ଣନା କରିବା କବିଙ୍କ ଲକ୍ଷ୍ୟ । ସୁତରାଂ, କବି ଅତି ଚତୁରତାର ସହିତ 'ତ୍ରିବେଣୀ' ଶବ୍ଦ ପରିବର୍ତ୍ତେ 'ବେଣୀତ୍ରି ପୂର୍ବ' ବୋଲି ଲେଖିଛନ୍ତି (ଯାହାର ଅର୍ଥ 'ବେଣୀ' ଶବ୍ଦର ପୂର୍ବରେ'ତ୍ରି'ଯୁକ୍ତ ହୋଇଛି) । ଶବ୍ଦ ପ୍ରୟୋଗ ଓ ଅର୍ଥବିନ୍ୟାସ କ୍ଷେତ୍ରରେ କବିଙ୍କର ଏହିପରି କୌଶଳ ତାହାଙ୍କର ଅଭିନବ କଳ୍ପନାର ପରିଚାୟକ ।

(ଖ) ଉନବିଂଶ ଛାନ୍ଦରେ ଏହିପରି ଅନ୍ୟ ଏକ ଦୃଷ୍ଟାନ୍ତ ରହିଛି । କବି ଲେଖିଛନ୍ତି—

"ବର୍ଗାର୍ଣ୍ଣ ଅପୂର୍ବ ହୋଇ କେତେ ନ ଗବାକ୍ଷୀ
ବାଲ୍ମିକୀ ତଳେ ଶପ୍ତନ ଗୃମଣି ଆବଳୀ ଯେ" ।

(୧୯ / ୯)

ପ୍ରକୃତ ପକ୍ଷରେ କହିବାକୁ ଗଲେ, 'ଅବଗାର୍ଣ୍ଣ' ଶବ୍ଦ ବ୍ୟବହାର କରିବା ହେଉଛି କବିଙ୍କର ଅଭିପ୍ରାୟ । ମାତ୍ର ଉକ୍ତ ଶବ୍ଦର ଆଦ୍ୟରେ 'ଅ' ବର୍ଣ୍ଣ ରହିଛି ('ବ' ବର୍ଣ୍ଣ ନାହିଁ) । ଅତଏବ ଏ କ୍ଷେତ୍ରରେ କବି ଅତି ଚତୁରତାର ସହିତ 'ଅବଗାର୍ଣ୍ଣ' ଶବ୍ଦ ପରିବର୍ତ୍ତେ 'ବଗାର୍ଣ୍ଣ ଅପୂର୍ବ ହୋଇ' ବୋଲି ଉଲ୍ଲେଖ କରିଛନ୍ତି । ଏହାର ଅର୍ଥ ହେଉଛି—'ବଗାର୍ଣ୍ଣ' ଶବ୍ଦର ପୂର୍ବ ବା ଆଦ୍ୟରେ 'ଅ' ରହି ।

(ଗ) ଏହିପରି ତୃତୀୟ ଦୃଷ୍ଟାନ୍ତ ରହିଛି କାବ୍ୟର ୩୧ଶ ଛାନ୍ଦରେ । ସେ ଅଂଶଟି ହେଉଛି—

"ବାରଣ ନାମ ଆଦ୍ୟ ପ୍ରାନ୍ତାକ୍ଷରେ
ବ୍ୟକ୍ତ ମହାସୁର ନାମ ମଧ୍ୟରେ
ବର୍ତ୍ତିଛି ଏ ନାମ
ବାମା ବଞ୍ଚୁଦେ ଅତି ପ୍ରୀତିଧାମ ।" (୩୧/୨୮)

ଏ କ୍ଷେତ୍ରରେ 'ଦମୟନ୍ତୀ' ଶବ୍ଦ ବ୍ୟବହାର କରିବା କବିଙ୍କ ଲକ୍ଷ୍ୟ। ମାତ୍ର ଏହା 'ବ' ଆଦ୍ୟାତ୍ମକ ଶବ୍ଦ ହୋଇନଥିବାରୁ 'ଦମୟନ୍ତୀ' ପରିବର୍ତ୍ତେ ଉପର୍ଯ୍ୟୁକ୍ତ ପଦର ପ୍ରଥମ ଦୁଇଟି ପାଦ କବିଙ୍କୁ ଲେଖିବାକୁ ପଡ଼ିଲା। ଏହାର ଅର୍ଥ ହେଉଛି—'ବାରଣ' (ହସ୍ତୀ) ଶବ୍ଦର ଅନ୍ୟଏକ ପ୍ରତିଶବ୍ଦ ହୋଇଥିବ, ତାହାର ମଧ୍ୟଭାଗରେ ଏକ ରାକ୍ଷସର ନାମ ଯୋଗ କରାଯିବ। ଏହି ଉଭୟ ଶବ୍ଦ ପ୍ରତ୍ୟେକ ଦୁଇଅକ୍ଷର ବିଶିଷ୍ଟ ହୋଇଥିବ।

ଉକ୍ତ 'ବାରଣ' ବା 'ହସ୍ତୀ' ଶବ୍ଦର ଅନ୍ୟ ଏକ ଦୁଇ ଅକ୍ଷରିଆ ପ୍ରତିଶବ୍ଦ ହେଉଛି 'ଦନ୍ତୀ'। ଏହି ଦୁଇ ଅକ୍ଷରର ମଧ୍ୟଭାଗରେ ଏକ ରାକ୍ଷସର ନାମ—'ମୟ' ଶବ୍ଦ ଯୋଗକଲେ ପ୍ରକୃତ ଶବ୍ଦଟି 'ଦମୟନ୍ତୀ' ହେବ। କବି ସରଳ ଭାବରେ 'ଦମୟନ୍ତୀ' ଶବ୍ଦ ଉଲ୍ଲେଖ କରିବା ପରିବର୍ତ୍ତେ ଉପର୍ଯ୍ୟୁକ୍ତ ଅଂଶଟି ଲେଖିଛନ୍ତି। ଏହା ତାହାଙ୍କ ଶବ୍ଦପ୍ରୟୋଗ କୌଶଳର ଅନ୍ୟଏକ ଦୃଷ୍ଟାନ୍ତ।

ଏହିପରି 'ବ' ଆଦ୍ୟ ନିମିତ୍ତ କବି ଅନ୍ୟ କେତେକ ଶବ୍ଦ ବ୍ୟବହାର କରିଛନ୍ତି। ଯଥା—ବପ୍ତାଶ୍ୱଶୁର (ମାତାମହ), ବିଭାଣ୍ଡସୂନୁ (ଋଷ୍ୟଶୃଙ୍ଗ), ବାରବେନ (ତଉଦ—୧୨+୨), ବଂଶାର୍ଦ୍ଧ ଆନନ (ଦଶାନନ), ବଂଶସପ୍ତାଧିକ (ସତାଇଶ), ବାହୁଲେୟ (କାର୍ତ୍ତିକେୟ), ବାହଗ୍ରୀବ (ହୟଗ୍ରୀବ), ବଦବତ୍ତ୍ୱେ (ଦୃଢ଼ଭାବରେ), ବାଚଂଯମଭୂତ (ମୌନ ବା ମୂକ ହୋଇଯିବା), ବ୍ୟୋମନାସିକା (ଶୂନ୍ୟନାସିକା), ବନଧବ (ସିଂହ), ବର୍ଷାଭୂ (ବେଙ୍ଗ), ବାସବଦଗଦ୍ରି (ପୂର୍ବ ଦିଗର ପର୍ବତ), ବୃଷାମାଳମଣି (ଇନ୍ଦ୍ରମାଳମଣି), ବିନ୍ଧ୍ୟକରୋଧୀ (ଅଗସ୍ତ୍ୟମୁନି), ବୃତ୍ରଶତ୍ରୁବାହଗ (ପୂର୍ବଦିଗ) ଇତ୍ୟାଦି।

ସମଗ୍ର 'ବୈଦେହୀଶ ବିଳାସ' କାବ୍ୟକୁ ଆମୂଳଚୂଳ ଅଧ୍ୟୟନ କଲେ ଏହିପରି ଶତଶତ ସଂଖ୍ୟକ ଶବ୍ଦ ଦେଖିବାକୁ ମିଳେ। ଏଥି ମଧ୍ୟରୁ ଅଧିକାଂଶ ଶବ୍ଦ ସ୍ୱତନ୍ତ୍ର ଭାବରେ କୌଣସି କୋଷଗ୍ରନ୍ଥରେ ଉପଲବ୍ଧ ହୁଏନାହିଁ। ଏହାଦ୍ୱାରା ଶବ୍ଦପ୍ରୟୋଗ କ୍ଷେତ୍ରରେ କବି ନିଜର ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରିଯାଇଛନ୍ତି।

## ୬। ଶ୍ଳେଷାତ୍ମକ ରୀତିରେ ଶବ୍ଦବିନ୍ୟାସ—

ଶ୍ଳେଷାଳଙ୍କାର ମାଧ୍ୟମରେ ଭାରତୀୟ କବିମାନେ କାବ୍ୟ ମଧ୍ୟରେ ଶବ୍ଦପାଣ୍ଡିତ୍ୟ ପ୍ରଦର୍ଶନ କରିବା ସଙ୍ଗେସଙ୍ଗେ ରଚନାର ଅର୍ଥଗତ ଚମତ୍କାରିତା

ଫୁଟାଇଥିବାର ବହୁ ଦୃଷ୍ଟାନ୍ତ ରହିଛି । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ, ସମଗ୍ର ଭଞ୍ଜସାହିତ୍ୟରେ ଶତାଧିକ ସଂଖ୍ୟକ ଶ୍ଳେଷାଳଙ୍କାରର ଦୃଷ୍ଟାନ୍ତ ରହିଛି । ଏଥି ମଧ୍ୟରୁ 'ବୈଦେହୀଶ ବିଳାସ' କାବ୍ୟର ପ୍ରଥମ ଛାନ୍ଦର ପ୍ରଥମ ଦୁଇଟି ପଦ ଶ୍ଳେଷାଳଙ୍କାରର ଦୁଇଟି ବିଖ୍ୟାତ ଉଦାହରଣ । ଅଭଙ୍ଗ, ସଭଙ୍ଗ ଓ ଭଙ୍ଗାଭଙ୍ଗ, ଏହିପରି ତ୍ରିବିଧ ଶ୍ଳେଷ ମାଧ୍ୟମରେ ଏହାକୁ ବିଭିନ୍ନ ଦେବଦେବୀଙ୍କ ପକ୍ଷରେ ଅର୍ଥ କରାଯାଇଥାଏ । ଉକ୍ତ ଦୁଇଟି ପଦ ହେଉଛି—

"ବନ୍ଦଇ ପୀନବାନ୍ଧବ ହରି        ଯେ ତମ ଚନ୍ଦ୍ରଖଣ୍ଡନକାରୀ
ସଦା କମଳାନନ୍ଦଦାୟୀ ସ୍ୱଭାବେ ଈନ ଯେ
ବିଭୂ ଅନନ୍ତ ଅଙ୍କବିହାରୀ        କରପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ଭୂଜେ ଘୂମନ ଯେ
ବିଜନଚେତ୍ର ଯାହା ଅଗ୍ରତେ ସ୍ଥିତ ଯେ
ବଇକୁଣ୍ଠ ପକ୍ଷକ ଲୋକ ତୋଷିତ ଯେ,
ବିକାଶ ଅଖଣ୍ଡିତ ମଣ୍ଡଳେ        ସିଂହ ଭାବରେ କ୍ରୀଡ଼ିବ କାଳେ
ଭବେ ତରଣୀ ହୋଇ ମଞ୍ଜୁଳେ ଗିର ଉଦିତ ଯେ ।
ବହିତ ଯେହି ରୋହିତ ମୂର୍ତ୍ତି        ଶ୍ରୀ ରଞ୍ଜନ କାରକ ଅତି
ହଂସ ହୋଇଣ ଯାହା ପ୍ରଶସ୍ତି ଅଛି ପ୍ରବର୍ତ୍ତି ଯେ
ବିରାଜ ରୂପ ଯାହାର ପୁଣି        ଦ୍ୱିଜଚନ୍ଦ୍ର ଯା ଦର୍ଶନ ଗୁଣି
ଆତ୍ମଭୂପର ସଂସାରେ ଭଣି କ ଶୁଭ୍ର କୀର୍ତ୍ତି ଯେ,
କୁଧଜନକ-ଶିରୋଭୂଷଣ ଯେହି ଯେ,
ବିନୟରୁ ବଚନ ଆନ ନକହି ଯେ
ବଳି ଯାହାକୁ ସର୍ବଦା ନାହିଁ        ଦୀପ ପ୍ରସନ୍ନ କରନ୍ତା ସେହି
ପୂନିତ ଧର୍ମସ୍ୱରୂପଗ୍ରାହୀ କ ସୁତ ତହିଁ ଯେ ।"

(୧/୧,୨)

ଉକ୍ତ ଦୁଇଗୋଟି ପଦକୁ ଓଡ଼ିଶାର ଭ୍ରାନ୍ତାର୍ଥୀ ପଣ୍ଡିତଗଣ ବ୍ୟାଖ୍ୟାନ ପୂର୍ବକ ବିଭିନ୍ନ ଦେବଦେବୀଙ୍କ ପକ୍ଷରେ ଅର୍ଥ କରିଥାନ୍ତି । ସ୍ୱନାମଧନ୍ୟ ଭଞ୍ଜସାହିତ୍ୟ ଆଲୋଚକ ଅଧ୍ୟାପକ ଶ୍ରୀଗୌରୀକୁମାର ବ୍ରହ୍ମା ତାହାଙ୍କ ସମ୍ପାଦିତ ବୈଦେହୀଶବିଳାସ ଟୀକାରେ (ଓଡ଼ିଶାସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ପ୍ରକାଶିତ) ଏହି ଦୁଇଟି ପଦକୁ ବିଷ୍ଣୁ, ଶିବ, ଦୁର୍ଗା, ଗଣେଶ, ସୂର୍ଯ୍ୟ, ବ୍ରହ୍ମା,

ରାମଚନ୍ଦ୍ର ଓ ଜଗନ୍ନାଥ—ଏହିି ଆଠ ଦେବଦେବୀଙ୍କ ପକ୍ଷରେ ଅର୍ଥ ବ୍ୟାଖ୍ୟାନ କରିଛନ୍ତି ।

ନବମ ଛାନ୍ଦର ପ୍ରଥମ ପଦରେ କବି ଗଙ୍ଗାଙ୍କ ବର୍ଣ୍ଣନା ପ୍ରଦାନ କରିବାକୁ ଯାଇ ଲେଖିଛନ୍ତି—

"ବିତଳକୁ ଆଲିଙ୍ଗନ          କରି ଜାହ୍ନବୀ ଶୋଭନ
ହରେ ସ୍ୱରବର ତାପ ଗୁରୁଧାରା ବସେ
ବନ୍ଦେ ମକରକେତନ'          ଉତ୍କଳ ରତ୍ତ ସମାନ
ପ୍ରକଟ ହୋଇଲା ପୁଣି ଅଶେଷ ରସେ
ବାଦ୍ୟ ନୈମବର୍ଣ୍ଣ ପଦରେ
ବାଷ୍କଣ୍ଠ ତୋଷଦାମ ବେନି ମତରେ ।"

(୯/୧)

ଉକ୍ତ ପଦଟିକୁ ଛାନ୍ଦାର୍ଥୀମାନେ ସ୍ୱର୍ଗଙ୍ଗା, ମର୍ତ୍ତ୍ୟଗଙ୍ଗା ଓ ପାତାଳଗଙ୍ଗା ଏହି ତ୍ରିବିଧ ଅର୍ଥରେ ଅତି ସରସ ଭାବରେ ବ୍ୟାଖ୍ୟାନ କରିଥାନ୍ତି ।

ଏହିପରି ଅନ୍ୟ ଏକ ଦୃଷ୍ଟାନ୍ତ ବଇଦେହୀଶ ବିଳାସ ଛାନ୍ଦରେ ଦେଖିବାକୁ ମିଳେ । ରାମ, ଲକ୍ଷ୍ମଣ ଓ ଶୂର୍ପଣଖା ପ୍ରସଙ୍ଗକୁ ଭିତ୍ତିକରି କବି ଶ୍ଳେଷାଳଙ୍କାର ମୂଳକ ଏକ ଚମତ୍କାର ପଦ ଉଲ୍ଲେଖ କରିଛନ୍ତି—

"ବାବୁ ନାକ ଶିରିଦାନ ଯୋଗ୍ୟ ଯୋଷାକୁ
ବିହର କାନନ କର ଆଲିଙ୍ଗନକୁ ସେ ।"

(୨୩/୫୮)

ରାମଚନ୍ଦ୍ର ଶୂର୍ପଣଖାଦ୍ୱାରା ଲକ୍ଷ୍ମଣଙ୍କ ନିକଟକୁ ପଠାଇଥିବା ପଦଟିକୁ ଚତୁର କବି ଉପେନ୍ଦ୍ର ଭଞ୍ଜ ଶ୍ଳେଷାଳଙ୍କାରରେ ଏହିପରିଭାବେ ଲେଖାଇଛନ୍ତି, ଯଦ୍ଦ୍ୱାରା ତାହାର ଅର୍ଥ ଶୂର୍ପଣଖା ଭିନ୍ନ ପ୍ରକାର ବୁଝିଲା ବେଳେ ଲକ୍ଷ୍ମଣ ତାହାର ପ୍ରକୃତ ଅର୍ଥ ହୃଦୟଙ୍ଗମ କରି ପାରିବେ । ଶୂର୍ପଣଖା ପାଇଁ ଏହାର ଅର୍ଥ ଥିଲା— "ବାବୁ ଲକ୍ଷ୍ମଣ ! ସ୍ୱର୍ଗସୁଖଦାନଯୋଗ୍ୟ ଏହି ରମଣୀକୁ ଆଲିଙ୍ଗନ ପୂର୍ବକ ତୁମେ ବନମଧ୍ୟରେ ବିହାର କର ।" ମାତ୍ର ଲକ୍ଷ୍ମଣଙ୍କ ପାଇଁ ଏହାର ପ୍ରକୃତ ଅର୍ଥ ହେଉଛି—"ବାବୁ ଲକ୍ଷ୍ମଣ ! ଏହି ନାରୀପାଇଁ ତାହାର ନାସିକା ଛେଦନ ଦଣ୍ଡ ଆବଶ୍ୟକ । ଏହାକୁ ଆଲିଙ୍ଗନ କରନାହିଁ ଏବଂ ଏହାର କର୍ଣ୍ଣ ଛେଦନ କର ।"

ଶ୍ଳିଷ୍ଟ ପଦବିନ୍ୟାସ ଦ୍ୱାରହିଁ ଏହିପରି ରଚନାର ଚମତ୍କାରିତା ଓ ଯଥାର୍ଥତା ଏଠାରେ ସମ୍ଭବ ହୋଇଛି । 'ବୈଦେହୀଶ ବିଳାସ'ରେ ଏହିପରି ବହୁ ଦୃଷ୍ଟାନ୍ତ ରହିଛି । ଏତାଦୃଶ ରଚନା ମାଧ୍ୟମରେ କବିଙ୍କ ଶବ୍ଦପାଣ୍ଡିତ୍ୟ ସ୍ପଷ୍ଟ ପ୍ରକଟିତ ହୋଇଥିବା ଅନୁଭୂତ ହୁଏ ।

## ବିଭିନ୍ନ ଘଟଣାବିନ୍ୟାସ କ୍ଷେତ୍ରରେ ଶବ୍ଦରାଜିର ପାଣ୍ଡିତ୍ୟପୂର୍ଣ୍ଣ ପ୍ରୟୋଗ—

କାବ୍ୟର ବିଭିନ୍ନ ସ୍ଥାନରେ କେତେକ ଘଟଣା ବିନ୍ୟାସ କ୍ଷେତ୍ରରେ ମଧ୍ୟ କବିଙ୍କ ଶବ୍ଦ ପ୍ରୟୋଗ ଗୁରୁତ୍ୱ ଲକ୍ଷ୍ୟ କରିବା କଥା । ସେ ଏକ ପ୍ରକାର ଶବ୍ଦକୁ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର କରିଛନ୍ତି, ଯାହା ତାଙ୍କର ଶବ୍ଦ ପାଣ୍ଡିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ ରୂପେ ବିବେଚିତ ହୋଇଥାଏ । ଏ ପ୍ରସଙ୍ଗରେ ନିମ୍ନ କେତେକ ଅଂଶ ଦୃଷ୍ଟାନ୍ତ ସ୍ୱରୂପ ବିଚାର କରାଯାଇପାରେ । ପ୍ରଥମ ଛାନ୍ଦରେ ମାଳୀ, ସୁମାଳୀ ଓ ମାଲ୍ୟବନ୍ତଙ୍କ ସମ୍ପର୍କରେ କବି ଲେଖିଛନ୍ତି—

"ବିଦ୍ୟୁତ କେଶ ବଂଶରେ ଜାତ        ସୁମାଳୀ, ମାଳୀ ଯେ ମାଲ୍ୟବନ୍ତ
ସ୍ୱର୍ଗ ଲୁଣ୍ଠନେ ଅହି ଅହିତ ଧିଆନ କରି ଯେ
ବିଧି ସମରେ ଜ୍ୟୋତି ଜ୍ୱଳିତ        ବିଧି ସମରେ ହେଲେ ଆଗତ
ସେ ଆରୋହିତ ଅହି-ଅହିତ ଗଦା ବଜ୍ରଧର ଯେ
ବଜାଇଣ ଶଙ୍ଖାରି କରଣେ ଘାତ ଯେ
ବଧ କଲେ ଶଙ୍ଖାରି ହିଂସ୍ର ଭ୍ରାତ ଯେ
ବଡଖି ଲଭି ପାତାଳେ ଲୁଚି        ଲଙ୍କା ବଡ଼ଭପୁରକୁ ମୁଞ୍ଚି
ଲଙ୍କା ସେ ଦଣ୍ଡପାଣିରେ ରଚି ଭୟ ଯେମନ୍ତ ଯେ ॥
ବାହାର ପୂଣ୍ୟଜନେ ହୋଇଲେ        ବିହାର ପୂଣ୍ୟଜନେ ବହିଲେ
ରଞ୍ଜନ ପୁଣ୍ୟଜନେ କୁବେରରେ ସେ ସମ୍ପ୍ରିମାନ ଯେ
ବାସ ନଗର ପାଶ ନଗର        ନଚିରେ ତଳେ କରି ସତ୍ୱର
ଜଗତତାତ ସୁତକୁମର କଲେ ସେ ସ୍ଥାନ ଯେ
ବହୁ ସମୟ ଅନ୍ତେ ଏହି ପ୍ରକାରେ ଯେ
ବାର୍ତ୍ତା ପାଇ ସୁମାଳୀ ଏମାନ ଗୃହରେ ଯେ
ବିଶ୍ରବାଋଷିର ସନ୍ନିଧିକ        ନେଲା ଦୁହିତା ରସନାଧିକ
ଶୋଭରେ କରେ ସେ ଧିକଧିକ ନାସି ମାତର ଯେ ॥" (୧।୫,୭)

ଉକ୍ତ ଦୁଇଟି ପଦରେ ଅହି, ବପ୍ନ, ସମରେ, ଶଙ୍କରେ, ବଡ଼ଭୂ, ପୁଣ୍ୟଜନ, ନଗର ପ୍ରଭୃତି ଶବ୍ଦ ଏକାଧିକ ବାର ବ୍ୟବହୃତ ହୋଇଥିଲେ ମଧ୍ୟ ପ୍ରତ୍ୟେକର ଅର୍ଥ ଭିନ୍ନ ଭିନ୍ନ ପ୍ରକାର । ଏହିପରି ଶବ୍ଦ ପ୍ରୟୋଗଦ୍ୱାରା ବର୍ଣ୍ଣନା ଅତ୍ୟନ୍ତ ଚିତ୍ତାକର୍ଷକ ଓ ପ୍ରଭାବଶାଳୀ ହୋଇ ଉଠିଛି ।

ରାବଣର ସାଉନ୍ଦ ବର୍ଣ୍ଣନା ପ୍ରସଙ୍ଗ ଏ ଶୈଳୀରେ ଅନ୍ୟଏକ ଦୃଷ୍ଟାନ୍ତ । ଯଥା—

"ବାମକରରେ ହୋଇଣ ବାମ ବାମଦେବର ଗିରି କୁସୁମ
ପରି ଉପାଡ଼ି ଧରନ୍ତେ କ୍ଷମ ହେବା କାଳରେ ଯେ
ବାହାର ଦରବରେ ଏ ସ୍ୱର ଈଶ୍ୱରଠାରୁ ରାଜେଶ୍ୱର
ଦେଖିଲେ ଅଷ୍ଟଦିଗ୍‌ଗଣ ଶିର ସେ ବହିବାରେ ଯେ
ବସେତ ଦେଖିଲେ ଈକ୍ଷଣ କର ଯେ
ଶିଳାସକୁ ଦୈତ୍ୟର ସ୍ୱର୍ଣ୍ଣନଗର ଯେ
ବଲେକ ରୌପ୍ୟନଗରେ ସ୍ଥିତି ଉପୁଜ ଯାଇ ଏଉଣା ସ୍ଥିତି
ଯୋଗ ତ ବେଦ ଜନେ ବଭୂତି ଆନ ପ୍ରକାର ଯେ

× × ×

ବହୁ କୃପାଣ ସାଧନ କରେ ଛେଦନ ଶଙ୍କା ଜମ୍ବୁ ବୃକ୍ଷରେ
ଆରମ୍ଭ ହୋମକର୍ମ କୁଶରେ ବନ୍ଧନ ସ୍ଥିତ ଯେ
ବାତୂଳ ଧରୁ କ୍ରୌଞ୍ଚ ଚମକେ ଭୋଜନ କାଳେ ଉଦୁଦ ଶାକେ
ଶପ୍ତନେ ତୁଳୀକରଣେ ଶଙ୍କେ ଶାଳ୍ମଳୀ ହତ ଯେ
ବହୁ ଦେବପୂଜନ ପୁଷ୍କରେ ଭୟ ଯେ
ବଳେ ଉପାଡ଼ି ନେବ ହୋଏ ଉଦୟ ଯେ
ସମ୍ଭୋଗକର ପ୍ରତାପେକର କରଇ ହେଲେ ପ୍ରଜାଆକର
ପୃଥ୍ୱୀମଣ୍ଡଳ ରାଜାନ୍ତକର ମହା ଦୁର୍ଜୟ ଯେ ॥"

(୧।୧୪—୧୭)

କାବ୍ୟର ଚତୁର୍ଥ ଛାନ୍ଦରେ ଲକ୍ଷ୍ମଣଙ୍କ ପ୍ରତି ପିତା ଦଶରଥଙ୍କ ଉପଦେଶ ପ୍ରସଙ୍ଗରେ କବି ଯେପରି ଶବ୍ଦ ପ୍ରୟୋଗ କରିଛନ୍ତି, ସମଗ୍ର ଭାରତୀୟ

ନମକାବ୍ୟରେ ତାହା ଏକାନ୍ତ ଦୁର୍ଲ୍ଲଭ କହିଲେ ଅତ୍ୟୁକ୍ତି ହେବନାହିଁ । ସେଥିରେ କବି ଲେଖିଛନ୍ତି—

"ବିଚକ୍ଷଣ ଆସି ପୁତ୍ରେ ଜାନୁରେ ବସାଇ
ବଖାଣ ରଷ୍ୟଅଙ୍ଗରୁ ସୁବାସକୁ ପାଇ ଯେ ।
ବକ୍ଳତା ସକଳ କଥା କତବେ ଭୂଷିତ
ବଭବଶ୍ରୀ-ବେଶ ଯେ ଭକ୍ଷନ୍ତ ତପିସୁତ ଯେ ।
ବ୍ୟବହାର କଲେ ନଷ୍ଟେ ତାହାଙ୍କ ସଙ୍ଗରେ
ବାଲୁ ହେବୁ ଅଗ୍ନି ପ୍ରୀତି ପତଙ୍ଗ ପ୍ରକାରେ ଯେ ।"
(୪।୪୨—୪୩)

ଉକ୍ତ ଉଦ୍ଧୃତର ତୃତୀୟ ଧାଡ଼ିରେ କବି 'କତବେ ଭୂଷିତ' ବୋଲି ଉଲ୍ଲେଖ କରିଛନ୍ତି । ଏଠାରେ ବିଚାର କରିବା କଥା ଯେ, ଏହାପରେ ବିଚକ୍ଷଣ ପୁତ୍ରକୁ ଯେଉଁ ଉପଦେଶ ପ୍ରଦାନ କଲେ, ତାହାର ବାହ୍ୟଅର୍ଥ ପ୍ରକୃତ ଅର୍ଥନୁହେଁ । ପ୍ରକୃତ ଅର୍ଥକୁ ତନ୍ମଧ୍ୟରୁ ବାହାର କରିବାକୁ ପଡ଼ିବ । ବାହ୍ୟଅର୍ଥ ଜରିଆରେ ବେଶ୍ୟାମାନଙ୍କ ସହିତ ନ ମିଶିବା ପାଇଁ ଉଦ୍ଦିଷ୍ଟ ଥିଲେ ମଧ୍ୟ ପ୍ରକୃତ ପକ୍ଷରେ ସେମାନଙ୍କ ସହିତ ମିଶିବା ପାଇଁ ଏଥିରେ ଉପଦେଶ ଦିଆଯାଇଛି । ଏହା କେବଳ ଯଥାର୍ଥ ଶବ୍ଦପ୍ରୟୋଗଦ୍ୱାରା ହିଁ ସମ୍ଭବ ହୋଇଛି ।

ସମଗ୍ର 'ବୈଦେହୀଶ ବିଳାସ' କାବ୍ୟରେ ଏହିପରି ବହୁ ଦୃଷ୍ଟାନ୍ତ ରହିଛି, ଯହିଁରୁ କବିଙ୍କ ଶବ୍ଦପାଣ୍ଡିତ୍ୟର ପରିଚୟ ମିଳିଥାଏ ।

## ୪ । ବିଭିନ୍ନ ଶବ୍ଦାଳଙ୍କାର ଓ ଚିତ୍ରାଳଙ୍କାର ମାଧ୍ୟମରେ ଶବ୍ଦପାଣ୍ଡିତ୍ୟ ପ୍ରଦର୍ଶନ—

କବି ଉପେନ୍ଦ୍ର ଭଞ୍ଜ କାବ୍ୟ ମଧ୍ୟରେ ଅନୁପ୍ରାସ, ଯମକ ଓ ଶ୍ଳେଷ ପ୍ରଭୃତି ଶବ୍ଦାଳଙ୍କାର ତଥା ଅନ୍ତର୍ଲିପି, ବହିର୍ଲିପି, ଗୋମୂତ୍ର, ଶୃଙ୍ଖଳା, ବ୍ୟାଘ୍ରଗତି, ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତ-ଚ୍ୟୁତାକ୍ଷର, ଶେଷଯୁକ୍ତ, ଗୋମୂତ୍ର, ସିଂହାବଲୋକନ ତଥା ବିଭିନ୍ନ ଚିତ୍ରବନ୍ଧ ପ୍ରଭୃତିର ସମାବେଶ ଘଟାଇଛନ୍ତି । ଏହି ଦୃଷ୍ଟିରୁ ବୈଦେହୀଶ ବିଳାସର ନିମ୍ନ କେତେକ ଅଂଶ ବିଶେଷ ଉଲ୍ଲେଖ ଯୋଗ୍ୟ ।

(କ) ଅନୁପ୍ରାସ— ପ୍ରଥମ ଓ ନବମଛାନ୍ଦ
(ଖ) ଯମକ--ସପ୍ତମଛାନ୍ଦ (୩୪—୩୮ ପଦ—ସର୍ବଯମକ)
ଊନବିଂଶଛାନ୍ଦ (ଏହି ଛାନ୍ଦରେ ଆଦ୍ୟଯମକ, ମଧ୍ୟଯମକ, ଭ୍ରାନ୍ତ ଯମକ, ମହାଯମକ, ସର୍ବଯମକ ଓ ମାଳ ଯମକର ସମାବେଶ ଘଟିଛି)
(ଗ) ଶ୍ଳେଷ—ପ୍ରଥମଛାନ୍ଦର ପ୍ରଥମ ଦୁଇଟିପଦ, ୩ୟଛାନ୍ଦର ୫୮ ପଦ, ଦଶମଛାନ୍ଦର ପ୍ରଥମପଦ
(ଘ) ବକ୍ରୋକ୍ତି—ଊନବିଂଶଛାନ୍ଦ
(ଙ) ଦତ୍ତଚ୍ୟୁତାକ୍ଷର—୧୧ଶ ଛାନ୍ଦ—୧୬ଶ ପଦ
(ଚ) ମେଷଯୁଦ୍ଧ —୧୯ଶ ଛାନ୍ଦ—୩୩ଶ ପଦ
(ଛ) ଗୋମୂତ୍ର—୧୯ଶ ଛାନ୍ଦ—୧୮ଶ ଓ ୧୯ଶ ପଦ
(ଜ) ସିଂହାବଲୋକନ—୧୯ଶ ଛାନ୍ଦ—୭ମ ଓ ୮ମ ପଦ
(ଝ) ବ୍ୟାଘ୍ରଗଣ୍ଡ—୧୯ଶ ଛାନ୍ଦ—୧୦ମ ପଦ
(ଞ) ଅନ୍ତର୍ଲିପି—୧୯ଶ ଛାନ୍ଦ—୨୦ଶ ଠାରୁ ୨୫ଶ ପଦ
(ଟ) ବହିର୍ଲିପି—୧୯ଶ ଛାନ୍ଦ —୨୬ଶ ଠାରୁ—୨୮ଶ ପଦ
(ଠ) ନାଗବନ୍ଧ—୨୮ଶ ଛାନ୍ଦ—୩୦ଶଠାରୁ ୩୩ଶ ପଦ
(ଡ) ଚକ୍ରବନ୍ଧ—୨୮ଶ ଛାନ୍ଦ—୩୬ଶଠାରୁ ୪୦ଶ ପଦ
(ଢ) ବୃକ୍ଷବନ୍ଧ—୪୯ଶ ଛାନ୍ଦ—୪୮ଶ ପଦ
(ଣ) ଗଦାବନ୍ଧ—୪୯ଶ ଛାନ୍ଦ—୪୯ଶ ପଦ
(ତ) ଶରବନ୍ଧ—୪୯ଶ ଛାନ୍ଦ—୨୦ଶ ପଦ
(ଥ) ରଥବନ୍ଧ—୪୯ଶ ଛାନ୍ଦ—୮୭ଶ ପଦ ଠାରୁ ୯୦ ପଦ

ଶବ୍ଦଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ନଥିଲେ ଏହି ସମସ୍ତ ଅଳଙ୍କାରର ସମାବେଶ ଘଟାଇବା ନିତାନ୍ତ କଠିନ ବ୍ୟାପାର । ଉକ୍ତ ଅଳଙ୍କାରସମୂହରେ କବିଙ୍କ ଶବ୍ଦପ୍ରୟୋଗ କୌଶଳ ମୁଖ୍ୟତଃ ନିହିତ । ଅତଏବ 'ବୈଦେହୀଶ ବିଳାସ'ର ଉକ୍ତ ବିଭିନ୍ନ ଛାନ୍ଦର ବିଭିନ୍ନ ପଦରେ ନାନାବିଧ ଶବ୍ଦାଳଙ୍କାର ଓ ଚିତ୍ରାଳଙ୍କାର ମାଧ୍ୟମରେ କବିଙ୍କର ଅସାଧାରଣ ଶବ୍ଦପାଣ୍ଡିତ୍ୟ ପ୍ରକଟିତ ହୋଇଛି ।

ଏହା ହେଉଛି 'ବୈଦେହୀଶ ବିଳାସ'ରେ ପ୍ରକଟିତ କବିଙ୍କ ଶବ୍ଦପାଣ୍ଡିତ୍ୟର କେତେଗୋଟି ଦୃଷ୍ଟାନ୍ତ । କବି ଉପେନ୍ଦ୍ରଭଞ୍ଜଙ୍କଠାରେ ଅଲୌକିକ କବିପ୍ରତିଭା ସହିତ ଅସାଧାରଣ ପାଣ୍ଡିତ୍ୟ ମଧ୍ୟ ରହିଥିଲା । ତନ୍ମଧ୍ୟରୁ ଶବ୍ଦପାଣ୍ଡିତ୍ୟ ଏକ ବିଶିଷ୍ଟ ବିଭବ ରୂପେ ବିବେଚିତ ହୋଇଥାଏ । ତାହାଙ୍କର ଉକ୍ତ ଶବ୍ଦପ୍ରୟୋଗ କୌଶଳ ସମସାମୟିକ ତଥା ପରବର୍ତ୍ତୀ କାଳର ବହୁ କବିଙ୍କ ଉପରେ ପ୍ରଭାବ ବିସ୍ତାର କରିଛି । ଭାରବି, ମାଘ ଓ ଶ୍ରୀହର୍ଷ ପ୍ରମୁଖ କବିମାନଙ୍କ ରଚନାବଳୀରେ ପ୍ରକଟିତ ଶବ୍ଦପ୍ରୟୋଗ ଗୁଡ଼ିକୁ ଆଧାର କରି ଓଡ଼ିଆରେ କାବ୍ୟ ରଚନା କରିବା ଅସମ୍ଭବ ବୋଲି ତତ୍କାଳୀନ ସମାଜର ସଂସ୍କୃତାଭିମାନୀ ପଣ୍ଡିତମାନଙ୍କର ଯେଉଁ ଆସ୍ଫାଳନ ଓ ବଦ୍ଧମୂଳ ଧାରଣା, ତାହାକୁ କବି ଉପେନ୍ଦ୍ର ଭଞ୍ଜ ନିଜର ରଚନାବଳୀ ମାଧ୍ୟମରେ ସମ୍ପୂର୍ଣ୍ଣ ନିରର୍ଥକ ପ୍ରମାଣିତ କରି ଦେଇଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ରସ ପରିବେଷଣ ଚାତୁରୀ

ପ୍ରାଚ୍ୟସାହିତ୍ୟରେ ମୁଖ୍ୟତଃ ଛଅଗୋଟି ସାହିତ୍ୟିକବାଦ ପ୍ରତିଷ୍ଠିତ ହୋଇଛି । ତନ୍ମଧ୍ୟରୁ 'ରସବାଦ' ସର୍ବଶ୍ରେଷ୍ଠ ରୂପେ ଗୃହୀତ ହୋଇଛି । ଏହି ବାଦର ମୁଖ୍ୟ ପ୍ରବକ୍ତା ଥିଲେ ଭରତ ମୁନି ଓ ବିଶ୍ୱନାଥ କବିରାଜ । ବିଶ୍ୱନାଥ କବିରାଜ ତାହାଙ୍କ 'ସାହିତ୍ୟଦର୍ପଣ' ଗ୍ରନ୍ଥରେ ରସବାଦର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଯାଇଛନ୍ତି । ସେ ରସକୁ କାବ୍ୟର ଆତ୍ମାରୂପେ ବୁଝାଇବାକୁ ଯାଇ କହିଛନ୍ତି—"ବାକ୍ୟଂ ରସାତ୍ମକଂ କାବ୍ୟମ୍ ।"

ଅର୍ଥାତ୍, ରସାତ୍ମକ ବାକ୍ୟ ହେଉଛି କାବ୍ୟ । ଏହାପରେ ସେ ନବରସର ନାମ, ସଂଜ୍ଞା ଓ ସ୍ୱରୂପ ପ୍ରତିପାଦନ କରିଛନ୍ତି । ତାହାଙ୍କ ମତାନୁସାରେ—

> "ଶୃଙ୍ଗାର ହାସ୍ୟ କରୁଣ ରୌଦ୍ରବୀର ଭୟାନକାଃ
> ବୀଭତ୍ସୋଦ୍‌ଭୂତ ଇତ୍ୟଷ୍ଟୌ ରସାଃ ଶାନ୍ତସ୍ତଥା ମତଃ ।"

ଅର୍ଥାତ୍, ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ (ନାଟକର ଏହି ଆଠଟି ରସ ସହିତ) ଓ ଶାନ୍ତରସକୁ ମିଶାଇ କାବ୍ୟରେ ସର୍ବମୋଟ ନଅଗୋଟି ରସ ରହିଛି ।

ଏହି ନବରସ ମଧ୍ୟରେ ଶୃଙ୍ଗାର ରସକୁ ସର୍ବଶ୍ରେଷ୍ଠ ସ୍ଥାନ ପ୍ରଦାନ କରାଯାଇଛି । ଭୋଜ ଶୃଙ୍ଗାର ରସ ସମ୍ପର୍କରେ କହିଛନ୍ତି—

> "ଶୃଙ୍ଗଂ ହ୍ୟେନ ନୟତେ ସ ଶୃଙ୍ଗାରଃ ।"

—ଅର୍ଥାତ୍ ଯାହା ମନୁଷ୍ୟକୁ ଉତ୍କର୍ଷର ଚରମସୀମାରେ ପହଞ୍ଚାଇଥାଏ, ତାହା ଶୃଙ୍ଗାର । ଏହି ଦୃଷ୍ଟିରୁ କାବ୍ୟ ମଧ୍ୟରେ ଶୃଙ୍ଗାରରସର ଅପରିହାର୍ଯ୍ୟତାକୁ ସ୍ୱୀକାର ପୂର୍ବକ ସେ 'ସରସ୍ୱତୀ କଣ୍ଠାଭରଣ' ନାମକ ବିଖ୍ୟାତ ଅଳଙ୍କାର ଗ୍ରନ୍ଥରେ ଲେଖିଛନ୍ତି—

"ଶୃଙ୍ଗାରୀ ଚେତ୍ କବିଃ କାବ୍ୟେ
ଜାତଂ ରସମୟଂ ଜଗତ୍
ସ ଏବ ଚେଦଶୃଙ୍ଗାରୀ
ନୀରସଂ ସର୍ବମେବ ତତ୍ ।"

(ସରସ୍ୱତୀ କଣ୍ଠାଭରଣ ୫/୩)

ଅର୍ଥାତ୍ କାବ୍ୟସ୍ରଷ୍ଟା ଯଦି ଶୃଙ୍ଗାରୀ ହୁଅନ୍ତି, ତେବେ ଜଗତ ରସମୟ ହୋଇଯାଏ । ମାତ୍ର ସେ ଯଦି ଅଶୃଙ୍ଗାରୀ ହୁଅନ୍ତି, ତେବେ ତାହାଙ୍କର ସମଗ୍ର କାବ୍ୟସୃଷ୍ଟି ନୀରସ ବୋଧହୁଏ ।

ପ୍ରାଚ୍ୟ ପରଂପରାର ଏହି ଆଦର୍ଶକୁ ଅନୁସରଣ ପୂର୍ବକ କବି ଉପେନ୍ଦ୍ର ଭଞ୍ଜ ତାହାଙ୍କ ରଚନାବଳୀରେ ଶୃଙ୍ଗାର ରସର ବହୁଳ ସମାବେଶ ଘଟାଇଛନ୍ତି । ଶାନ୍ତ, ବୀର, ବାତ୍ସଲ୍ୟ ପ୍ରଭୃତି ଅନ୍ୟାନ୍ୟ ରସ ତାହାଙ୍କ କାବ୍ୟସୃଷ୍ଟିରେ ପରିବେଷିତ ହୋଇଥିଲେ ମଧ୍ୟ ଶୃଙ୍ଗାର ରସହିଁ ଏଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଏହି ରସର ଉତ୍କର୍ଷ ସଂପର୍କରେ ସେ ତାହାଙ୍କର ବିଖ୍ୟାତ 'ଲାବଣ୍ୟବତୀ' କାବ୍ୟରେ ଲେଖିଛନ୍ତି--

"ଏ ରସେ ମନ ନ ଘେନଇ ଯାହାର
ସେହି ନର ପଶୁ ଘେନ ।
ଯେଉଁ ରସରେ ବ୍ରହ୍ମା ବଶ ହୋଇଛି
କାହିଁଛି ତାହା ସମାନ ।"

ସେ ଆହୁରି ମଧ୍ୟ କହିଛନ୍ତି—

"ଜାଣି ନଥିଲାକୁ ଏରସ ଏମନ୍ତ
ସ୍ମରକୁ ଦହିଲେ ହର
ଜାଣିଲା ଦିନରୁ ଯୁବତୀକୁ କଲେ
ଅର୍ଦ୍ଧ ଅଙ୍ଗେ ଅଙ୍ଗୀକାର ।
ଆଜନ୍ମ ବ୍ରହ୍ମଚାରୀପଣେ କେ ବଡ଼
ବୁଝ ଋଷ୍ୟଶୃଙ୍ଗଠାରୁ
ନିଜ ଦୀକ୍ଷା ଛାଡ଼ି ଶିକ୍ଷାକଲେ ରସ
ରୂପାଜୀବା କରି ଗୁରୁ ।।"

ଏହିପରି ଶ୍ରୀକରେ ତାହାଙ୍କର ବିଭିନ୍ନ କାବ୍ୟରେ ଶୃଙ୍ଗାରରସର ମହତ୍ତ୍ୱ ପ୍ରତିପାଦିତ ହୋଇଛି ।

ଅଳଙ୍କାର ଶାସ୍ତ୍ରାନୁସାରେ ଶୃଙ୍ଗାରରସ ମୁଖ୍ୟତଃ ଦ୍ୱିବିଧ । ଯଥା—(କ) ସମ୍ଭୋଗ ଶୃଙ୍ଗାର ଓ (ଖ) ବିପ୍ରଲମ୍ଭ ଶୃଙ୍ଗାର । ଯେଉଁଠାରେ ନାୟକ-ନାୟିକାଙ୍କର ପରସ୍ପର ମିଳନ ଘଟି ଶୃଙ୍ଗାରରସ ସୃଷ୍ଟି ହୁଏ, ତାହା 'ସମ୍ଭୋଗ ଶୃଙ୍ଗାର' ରୂପେ ଅଭିହିତ । ମାତ୍ର ଯେଉଁଠାରେ ନାୟକନାୟିକାଙ୍କର ପରସ୍ପର ବିଚ୍ଛେଦ ଘଟିଥିଲେ ମଧ୍ୟ ମିଳନ ନିମିତ୍ତ ସେମାନଙ୍କ ମନରେ ପ୍ରବଳ ଉତ୍କଣ୍ଠା ଓ ଗାଢ଼ ପ୍ରେମଭାବ ରହିଥାଏ, ସେଠାରେ ବିପ୍ରଲମ୍ଭ ଶୃଙ୍ଗାର ହୁଏ । ସମ୍ଭୋଗ ଶୃଙ୍ଗାର ଅପେକ୍ଷା ବିପ୍ରଲମ୍ଭ ଶୃଙ୍ଗାର ଉତ୍କୃଷ୍ଟତର ବୋଲି ବିବେଚନା କରାଯାଇଛି । କାରଣ ବିଚ୍ଛେଦଦ୍ୱାରା ସମ୍ଭୋଗ ଶୃଙ୍ଗାରର ପରିପୁଷ୍ଟି ସାଧିତ ହୋଇଥାଏ । ଏ ପ୍ରସଙ୍ଗରେ କୁହାଯାଇଛି ।

"ନ ବିନା ବିପ୍ରଲମ୍ଭେନ ସମ୍ଭୋଗ
ପୁଷ୍ଟିମଶ୍ନୁତେ ।"

ଅର୍ଥାତ୍ ବିପ୍ରଲମ୍ଭର ବିନା ସହାୟତାରେ ସମ୍ଭୋଗ ଶୃଙ୍ଗାରର ପରିପୁଷ୍ଟି ସାଧିତ ହୋଇପାରେ ନାହିଁ । ଅନ୍ୟ ଭାଷାରେ କହିବାକୁ ଗଲେ, ସ୍ୱର୍ଣ୍ଣ ଯେତେ ପରିମାଣରେ ଦଗ୍‌ଧୀଭୂତ ହୁଏ, ତାହାର ଦୀପ୍ତି ସେତେ ଅଧିକ ପରିମାଣରେ ଫୁଟିଉଠେ । ସେହିପରି ନାୟକନାୟିକା ଯେତେ ପରିମାଣରେ ପରସ୍ପରଠାରୁ ବିଚ୍ଛିନ୍ନ ହୁଅନ୍ତି, ସେମାନଙ୍କର ପରସ୍ପରପ୍ରତି ଆକର୍ଷଣ ସେତେ ଅଧିକ ପରିମାଣରେ ବୃଦ୍ଧିପ୍ରାପ୍ତ ହୋଇଥାଏ । ଏହି କାରଣରୁ ସମ୍ଭୋଗ ଶୃଙ୍ଗାର ଅପେକ୍ଷା ବିପ୍ରଲମ୍ଭ ଶୃଙ୍ଗାରକୁ ସର୍ବାଧିକ ମହତ୍ତ୍ୱ ପ୍ରଦାନ କରାଯାଇଛି ।

କବି ଉପେନ୍ଦ୍ର ଭଞ୍ଜଙ୍କର ସର୍ବଶ୍ରେଷ୍ଠ କାବ୍ୟ "ବୈଦେହୀଶ ବିଳାସ"ରେ ସନ୍ନିବେଶିତ ଏହି ଉଭୟବିଧ ଶୃଙ୍ଗାର ତଥା ଅନ୍ୟାନ୍ୟ ବିଭିନ୍ନ ରସର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

**ସମ୍ଭୋଗ ଶୃଙ୍ଗାର :**

(କ) ସୁମାଳୀ ରାକ୍ଷସର କନ୍ୟା ନିକଷା ଓ ବିଶ୍ରବା ଋଷିଙ୍କ ବିବାହ ଓ ମିଳନ ପ୍ରସଙ୍ଗରେ ସମ୍ଭୋଗ ଶୃଙ୍ଗାରର ଚିତ୍ର ଦେଖିବାକୁ ମିଳେ—

ବାଙ୍କେ ଅନାଇଁ ଅଙ୍କେ ପକାଇ ସେ ପଙ୍କେରୁହ୍ମି ଶଙ୍କୁ ନେଇ
ଶଙ୍କେ ମଦନ ଆତଙ୍କେ ତହିଁ ମୁନିଉତ୍ତମ ସେ
ବୋଲେ ସୁନ୍ଦରୀ, କୋଳେ ମୋ ବସ ଭୁଲେ ମଙ୍କି ତୋ ହୋଇବ ତୋଷ
ଭୁଲେ ତୋ ରୂପେ ମୋର ମାନସ ପ୍ରକାଶ ପ୍ରେମରେ
ବାମା ଓଳଗି ସନମତ କରାଇ ସେ
ବହ୍ନି ସାକ୍ଷୀରେ ବରାବର ବଢ଼ାଇ ସେ

ବେଗେ ସୁରତ ରତ ସୁଧାରେ × ×

× × ×

(୧/୭)

(ଖ) ଚତୁର୍ଥ ଛାନ୍ଦରେ ଜରତା ବେଶ୍ୟା ଓ୍ୱୀ ଋଷ୍ୟଶୃଙ୍ଗଙ୍କ ରତିକ୍ରୀଡ଼ା ପ୍ରସଙ୍ଗରେ ଉଲ୍ଲିଖିତ ହୋଇଛି—

ବସିଲ ଓଳଗି ପାଶେ ଜରତା ସୁମୁହୀଁ
ବେଷ୍ଟିତା ଲତା ପାଦପେ ପରି କୋଳ ବାହି ସେ ।
ବାଳା ସେ ପ୍ରଥମରସେ ଚନ୍ଦ୍ର ଗ୍ଳଳ ଦେଲ
ବାଳାନେ ଋଷିକୁମାର ଉରନେ ଶୋଇଲ ସେ ।
ବଧୂନନ ଆରମ୍ଭିଲ ପୁରୁଷାୟିତରେ
ବନପଣ୍ଡ ଉପରେ ହରଣୀ ଲୀଳାକରେ ସେ ।
ବୈଶ୍ୱାନର ପରେ ନୃତ୍ୟକରେ ଶୁଭ୍ରାପାଙ୍ଗୀ
ବିଷମ ସମସ୍ୟା ହିଁ ପୂରଣ ଶ୍ଳେଷଭଙ୍ଗୀ ସେ ।
ବସୁଁ ଚେତା, ଭାବେ ଅନ ଅନୁଭବା ଯୁବା
ବିବୁଧାଳୟୁ ସୁଖ ଯେ ସେହି ଏହି ଅବା ସେ ।
ବାଜଣୀ କଙ୍କଣୀ ବାଦ୍ୟ ତାଳତାଳ ସ୍ୱନ
ବ୍ୟାଖ୍ୟାନ ଧ୍ୱନି ଶ୍ଳେଷ ସେ କରଇ ପ୍ରଧାନ ସେ ।
ବିବୁଦ୍ଧ ହୁଅଇ ସେହି ସ୍ମରନାମା ହୃଦେ
ବାଢେ଼ ବେଣୀହାର ନାଚେ କଣ୍ଠଯୁ ସେ ବାଦ୍ୟେ ସେ ।

(୪/୬୫—୭୧)

(ଗ) ରାମଚନ୍ଦ୍ର ଓ ସୀତାଙ୍କର ଚିତ୍ରକୂଟ କେଳି ବର୍ଣ୍ଣନା ପ୍ରସଙ୍ଗରେ ସମ୍ଭୋଗ ଶୃଙ୍ଗାରର ଚିତ୍ର ଦେଖିବାକୁ ମିଳେ—

ବନ୍ଧୁକ-ଅଧରକାନ୍ତି-ଅଧରରେ ବନ୍ଧୁ ତୁ ମୋ ରକ୍ଷଣରେ
ବର୍ତ୍ତୁଳ ଉରୁ ତୁଳା କୋଟି ବାନ୍ଧନ ପିତୁଳା ମୋ ଈକ୍ଷଣରେ ।
ବିଦେହଜପ୍ରେତ ଝାଡ଼ିବାକୁ ଅନ୍ତରଗତୁଁ ତୋ ବାଣୀ ମନ୍ତ୍ରର
ବୈଦ୍ୟ ହୋଇ ବିମ୍ବ ରସଦାନ ହତକରଣେ ବିଦେହ ଜ୍ୱର ।
ବାହୁବଲ୍ଲୀ ଗଳାମାଳା କରି ପୁଷ୍ପହାସରେ ମଣ୍ଡନ ବିହୁ
ବଢ଼ ଘେନାଘେନ ଘେନା ମନୋରମ ଚରମ ଦେଖାଇ ନାହୁଁ ।
ବକ୍ଷୋଜ ସ୍ୱୟମ୍ଭୂ ଶମ୍ଭୁ କରପଦ୍ମେ ପୂଜ କାମଭସ୍ମ ନାହିଁ
ବିଭୁ ତୁ ମୁଁ ଦାସ ଏହି ରୂପେ ଏକା ହୋଇଥିବୁ ଅନୁଗ୍ରହୀ ।।

× × × ×

ବୋଲ୍ ବୋଲି ହେଉଁ ସ୍ନେହ ବଚନ ସେ ଚିତ୍ର ରଜନୀ ମିଳି
ବିରଚାଇଲ୍ ସେ ରମଣୀରତନେ ଯତନେ ପୁରୁଷ କେଳି ।
ବାଜିଲ୍ ରସନା ବାଦ୍ୟ ମରଦଳ ମଧ୍ୟେ ବ୍ରହ୍ମଶିଖ ଦେଇ
ବୀଣାନାଦ ହୁଁ ହୁଁ କୃତ ଜାତ ବଶେ କଣ୍ଠ ନାରଦ କରାଇ ।
ବିଚଳିତ ରମ୍ଭା ଉର୍ବଶୀ ରାମାଯେ ଚଞ୍ଚଳ ଶେଷ ଅଂଶୁକ
ବୃତ୍ର-ଅନ୍ତକ ପରେ ତହିଁ ସନ୍ତକ କାଟିଲେ ହୋଲେ ରସିକ ।
ବିଭାବରୀ ଅନ୍ତ କଲେ ନିତ୍ୟକୃତ୍ୟ ଚିତ୍ରକୂଟ କେଳି ଶେଷ
ବଂଶପଦେ ଗୁନ୍ଦ ଉପେନ୍ଦ୍ର ବୀରବର ରଚିବାରେ ତୋଷ ।।

(୨୦/୧୧—୨୦)

## ବିପ୍ରଲମ୍ଭ ଶୃଙ୍ଗାର :

(କ) କାବ୍ୟର ଦ୍ୱାଦଶଛାନ୍ଦରେ ସୀତାଙ୍କ ବିରହାବସ୍ଥା ବର୍ଣ୍ଣନା ପ୍ରସଙ୍ଗରେ କବି ବିପ୍ରଲମ୍ଭ ଶୃଙ୍ଗାରରସ ପରିବେଷଣ କରିଛନ୍ତି । ଯଥା—

"ବୋଧ ହେଲ୍ ଚିତ୍ତ ସାତ୍ତ୍ୱିକେ ତାର
ବିଲେକ ହେଲ୍ କେତେ ହାସ ତାର

ବଗତ ପ୍ରଭୁ କ ପ୍ରଭୁତ୍ୱତାର
ବେଉନ ପାଣି କେତେ ଯଥା ତାର
ବେଦନାରୁ ତାର
ବୋଲେ ବହେ ସୁତ ସେ ବଧାତାର ।।
ବଙ୍ଗବର୍ଣ୍ଣ୍ୟ ଦଶା ଅବକାଶର
ବର୍ଣ୍ଣ ଦଶିଗଲା କେଡ଼େ ଧୂସର
ବଇ ଦେଲା କଟୁ କରକେଶର
ବନସ୍ଥ ପାଦେ ଦେଖି ସାରସର
ବନ ନିବାସର
ବଞ୍ଚେ ବାହୁଡ଼ାଇ ନେବା ଆସର ।।
ବକ୍ଷୋଜରେ ନବ ପାଣ୍ଡୁ ବିଳାସ
ବଫଳ କ ଶିବ ସେବା ଭୂକାଶ
ବଡ଼ାଇ ଆଣିଲା ଗିରି କୈଳାସ
ବେଳୁବେଳ ଜାତ କରି ଉଲ୍ଲାସ
ବମ୍ବେ ଅଭିଳାଷ
ବହିଲେ ରଙ୍କଲକ୍ଷ୍ୟ କୃକଳାସା ।।"    (୧୨/୧୧—୧୩)

(ଖ) ବସନେ ଅମ୍ଳାନ ହୋଇଥିଲା ସେ ବନ୍ଧନ
ବଶଚଣ୍ଡ କବଚକୃତକୁ ହେଲା ଧନ ।
ବାଥିବାଥି ବାଣ ପ୍ରହାରବାରେ ଅତନୁ
ବଥିର ହୋଇ ଏଥିରେ ଧୋଡ଼ାଇବ ତନୁ ।।

× × ×

ବର୍ଣ୍ଣନ୍ତେ ଏ ରୂପେ ସ୍ୱରଭଙ୍ଗ ପରଚରେ
ବର୍ଣ୍ଣମାନ ବ୍ୟକ୍ତ ହୋଇ ତହୁଁ ନ ଉଚ୍ଚରେ ।
ବସ୍ର ସମ ଲବକ ନୋହିଲା ନବାର
ବସ୍ଥଳ ଭନ୍ତଗଲା ପଡ଼ ଅଶ୍ରୁ ବାର ।।
ବଷାଦେ ନିଃଶ୍ୱାସ ତେଜ ହା ସୀତା ଭଷିତ
ବଷାବସ୍ଥ କାମକାଣ୍ଡେ ହେଲେ ଆକର୍ଷିତ ।। (୨୭/୪୩—୪୯)

× × ×

**କରୁଣରସ :**

କାବ୍ୟର ବିଭିନ୍ନ ସ୍ଥଳରେ ରାମଙ୍କ ବନଗମନ, ସୀତାହରଣ, ବାଳିର ମୃତ୍ୟୁ, ରାମଙ୍କ ବିଳାପ ଇତ୍ୟାଦି ପ୍ରସଙ୍ଗରେ କରୁଣରସର ସମାବେଶ ଦେଖିବାକୁ ମିଳେ । ତନ୍ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ନିମ୍ନରେ ଉଦ୍ଧାର କରାଗଲା—

(କ) ସୀତା ହରଣ ପ୍ରସଙ୍ଗ—

ବସୁଧା କମ୍ପିତା ଚକିତ ଦେବତା କହିଲେ କହିଲେ
ବଚନେ ଶୋଚନେ ଅଶ୍ରୁବିମୋଚନେ ଆକାଶ ପୂରିଲେ

× ×

ବନବାଳିକା 'ହାରାମ' ସ୍ୱନେ ପୂର୍ଣ୍ଣ ଜଟାୟୁ ତରକେ
ବନପ୍ରିୟଙ୍କୁ ଶିଖାଇ ଗୀତ ଶୋକବରାଡ଼ୀ ରାଗେ କେ ।

× × ×

(୨୪/୪୧—୪୩)

(ଖ) **ସୀତା ହରଣ ପରେ ଶ୍ରୀରାମଙ୍କ ବିଳାପ**—

ବିଧାତା ବିଧାନକଲା କେ ଆନ କରିବ
ବୋଲୁଁ ପିତା 'ହାରାମ' 'ହାରାମ' ଗଲା ଜୀବ
ବେଳ ପଡ଼ିଲା ଲକ୍ଷ୍ମଣ
ବୋଲୁ 'ହାରାମ' 'ହାରାମ' ଯିବ ମୋ ପରାଣ ।

× × ×

ବସନ୍ତ ଋତୁ ତ ଅନ୍ତ ହୋଇନାହିଁ ଗୋର
ବଚନ କୋକିଳ କିମ୍ପାଁ ଛାଡ଼ିଲା ମାଧୁରୀ
ବେଳୁ ବେଳ ସେ ଅଧିକ ।
ବିଭ୍ରମ ଜନ୍ମୁ ପାଦପେ ବିନସ୍ଥ ସଙ୍କିକ ।

(୨୫/୨୨—୨୫)

(ଗ) **ରାମଚନ୍ଦ୍ରଙ୍କ ବିଳାପ :**

ବନେ ଘନେ ରଘୁମଣି, ବିପଥ ପଥ ନମଣି ।
ବନପୂର୍ଣ୍ଣ ଅନୁକ୍ଷଣ, ବେନ ଈକ୍ଷଣ ଯେ ।।

ବିଚ୍ଛିନ୍ନ ମନ ଉଚାଟ, | ବଚନ ଉଚ୍ଚେ ରଚାଟ ।
ବିଚ୍ଛେଦ ହୋଇଲୁ ଭୁରଟେ, | ବୈଦେହୀ ସିତେ ସେ ।
ବନଦ ତମାଳ ତମ, | ବାଳେ ନୁହେ ତାରତମ ।
ବିଚ୍ଛେଦାଇ ହେଲେ ତମ, | ବିଶ୍ୱ ଉତ୍ତମ ଏ ।
ବାୟୁବାହନ ଚମଷ୍ଠି, | ବଚ୍ଛେ ଗର୍ଭିକ ସ୍ମରି ।
ବିଦୂର ସେହି ସକାଶେ, | ବହ୍ନି ପ୍ରକାଶେ କି ।

(୧୭/୧—୪)

ସମଗ୍ର କାବ୍ୟ ମଧ୍ୟରେ କରୁଣରସାତ୍ମକ ଏହିପରି ବହୁ ଅଂଶ ରହିଛି ।

## ବୀର ରସ :

ପ୍ରଥମ ଛାନ୍ଦରେ ରାବଣର ବୀରତ୍ୱ ବର୍ଣ୍ଣନା ପ୍ରସଙ୍ଗରେ ବୀରରସ ପରିବେଷିତ ହୋଇଛି । ଏତଦ୍‌ବ୍ୟତୀତ ୨୪ଶ ଓ ୪୨ଶ ଛାନ୍ଦରେ ମଧ୍ୟ ବିଭିନ୍ନ ପ୍ରସଙ୍ଗରେ ବୀରରସର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ମାରୀଚ ରାକ୍ଷସ ଓ ରାବଣ ମଧ୍ୟରେ ଉକ୍ତିପ୍ରତ୍ୟୁକ୍ତି ପ୍ରସଙ୍ଗରେ କବି ଲେଖିଛନ୍ତି—

"ବିନା ଉପାୟ ରାଘବ ଶରଚୟ ସମର ସେ ସମ
ବିଷ୍ଣୁ ହେଲେ ହେବ ଆଉ ତ ନଥିବ ତାହାକୁ କେ ସମ ।
ବଡ଼ କହିଲୁ ତ ବୋଲି ଲଙ୍କନାଥ ନଡ଼ର ତୁ କିଛି
ବାଜ ବିଷ୍ଣୁ ଚନ୍ଦ୍ର ମୋହୁଁଦେ ପଦକ ପରିଚୟେ ଲଗିଛି ॥"

(୧୭ଶପଦ)

ସେହିପରି ଜଟାୟୁ ଓ ରାବଣ ଯୁଦ୍ଧ ପ୍ରସଙ୍ଗରେ ବୀରରସ ପରିବେଷିତ ହୋଇଛି । ଯଥା—

"ବେଦପୋଥି କେ ସୂରାପ କରେ ଦେଲ ବୋଲି ସେ ଧାଇଁଲା
ବିସ୍ତାର ଚଞ୍ଚୁ ସ୍ୟନ୍ଦନ ଗ୍ରାସରଚୁଁ ଉଦ୍‌ଗାର ଥୋଇଲା ।
ବାର୍ଦ୍ଧି ଅଗସ୍ତି ଉଦରେ ଜୀର୍ଣ୍ଣମତି ଏକ୍ଷଣି ହୁଅନ୍ତୁ
ବୈଦେହୀ ଯାହି କହି ଦେହି ବଦାରି ମୁଖ ଯୋଡି ଦେଉ ॥

(୪୪ଶପଦ)

## ଅଦ୍‌ଭୁତରସ :

(କ) ନବମସ୍ଥନ୍ଦରେ ହରଧନୁ ଭଙ୍ଗ ପ୍ରସଙ୍ଗରେ ଅଦ୍‌ଭୁତରସର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ରାମଚନ୍ଦ୍ର ଅନାୟାସରେ ଶିବଧନୁକୁ ଯେଉଁପରି ଭାବରେ ମଞ୍ଜୁଷ ମଧ୍ୟରୁ ଆଣିଲେ, ତାହା ସମସ୍ତଙ୍କ ମନରେ ବିସ୍ମୟଭାବ ଜାଗ୍ରତ କରିଥିଲା । ଏହି ପ୍ରସଙ୍ଗରେ ଅଦ୍‌ଭୁତରସର ପରିପ୍ରକାଶ ଦୃଷ୍ଟ ହୋଇଛି । ଯଥା—

"ବିକ୍ରମ ଗଣ୍ଡକ ବହି          ଶରଧୀ ଗୃପକୁ ଚୁହିଁ
କେଶରୀ ଗିରି ମଧ୍ୟରୁ ସେହି ସ୍ୱଭାବେ
ବିରାଟ ମୂର୍ତ୍ତି ଯେ ଧୃତ          ମଞ୍ଜୁ ମଞ୍ଜୁଷରୁ ସତ
ଧନୁ ଆକର୍ଷି ଆଣିଲେ ପନ୍ନଗଭାବେ
ବକପୁଷ୍ପ ମାଳା ମାଳକ
ବିଦ୍ୟୁତକୁ ଶୃଙ୍ଗୁ ଡ଼ାରୁ ଟେକିଲା ଦୃକ ॥"

(୯।୪୦।୨୦)

### (ଖ) ବାଳିବଧ ପ୍ରସଙ୍ଗ :

ଶିବଚନେକ ପୂର୍ବରେ ହୋଇଥିଲା, ବିନ୍ଧ୍ୟକରୋଧୀ ସମୁଦ୍ର ପିଇଲା ।
ବିଚନେକ ଏବେ ତୋହ ଶରୀରେ, ବିଭେଦିତ ହୋଇଲା ତୀକ୍ଷ୍ଣଶରେ ।
ବିଷ୍ଣୁ ମଧୁକଇଟଭ ପାତାଳେ, ବିନାଶରୁ ଏ କୀର୍ତ୍ତି ବଳାଇଲେ

(୨୮/୧୨୮—୧୩୦)

## ବୀଭତ୍ସରସ :

ତାଡ଼କା ରାକ୍ଷସୀର ରୂପ ବର୍ଣ୍ଣନା ପ୍ରସଙ୍ଗରେ ବୀଭତ୍ସ ରସର ଆଲେଖ୍ୟ ଦେଖିବାକୁ ମିଳେ । ଯଥା—

ବିଳପରି ନାସା ସର୍ପ ଫୁତ୍କାର । ବାତ ହିଁ ବହୁଛି ନିଃଶ୍ୱାସ ତାର ॥
ବସୁନ୍ଧରାଧର ଶୃଙ୍ଗ କି ହନୁ । ବହେ କି ଝର ଝାଳ ତଥା ତନୁ ॥

ବିସ୍ତୃତ ମୁଖ ଗହ୍ୱର ସଦୃଶ ବ୍ୟାଘ୍ର କଲାପ୍ରାୟେ ସେ ମଧ୍ୟେ ଘୋଷ ।

×          ×          ×

ବୀଭତ୍ସରୂପା ଆସି ପରବେଶ— ।          (୬/୩୧-୪୧)

## ଅନ୍ୟାନ୍ୟରସ :

ଏତଦ୍‌ବ୍ୟତୀତ କାବ୍ୟମଧ୍ୟରେ କବି ବିଭିନ୍ନ ପ୍ରସଙ୍ଗରେ ଶାନ୍ତ, ଭୟାନକ ଓ ବାତ୍ସଲ୍ୟରସ ପରିବେଷଣ କରିଛନ୍ତି । ତନ୍ମଧ୍ୟରୁ ପ୍ରଥମଛାନ୍ଦର 'ମଙ୍ଗଳାଚରଣ'ରେ ଥିବା ପ୍ରଥମ ଦୁଇଟି ପଦ, ଦ୍ୱିତୀୟ ଛାନ୍ଦର ୪ର୍ଥଠାରୁ ୧୧ଶପଦ (ଦେବଗଣଙ୍କ ବିଷ୍ଣୁଙ୍କୁ ସ୍ତୁତି) ଏବଂ ୨୮ଶ ଛାନ୍ଦର ୩୭ ଶ ଠାରୁ ୪୦ଶ ପଦ (ସୁଗ୍ରୀବର ସ୍ତୁତି) ଶାନ୍ତରସର ଦୃଷ୍ଟାନ୍ତ । ସେହିପରି ପ୍ରଥମ ଛାନ୍ଦର ୮ମ ପଦ ଏବଂ ୬ଷ୍ଠ ଛାନ୍ଦର ୨୮ଶ ପଦ ଭୟାନକ ରସର ଉଦାହରଣ । ଚତୁର୍ଥ ଛାନ୍ଦର ୭୭ଠାରୁ ୮୭ତମ ପଦ ମଧ୍ୟରେ ବାତ୍ସଲ୍ୟ ରସ ପରିବେଷିତ ହୋଇଛି ।

ଏହିପରି ଘରେ 'ବୈଦେହୀଶ ବିଳାସ'ର ବିଭିନ୍ନ ଛାନ୍ଦରେ ବିଭିନ୍ନ ପ୍ରସଙ୍ଗରେ କବି ଆବଶ୍ୟକୀୟ ରସ ପରିବେଷଣ କରିଛନ୍ତି । ସେ ଥିଲେ ରସିକ କବି । ରସବାଦର ଯଥାର୍ଥ ପୃଷ୍ଠପୋଷକ । ଏହି ଦୃଷ୍ଟିରୁ ବିଭିନ୍ନ ରସର ବହୁଳ ପରିବେଷଣଦ୍ୱାରା ତାହାଙ୍କର ସାରସ୍ୱତ ସୃଷ୍ଟି ରସପ୍ଲାବିତ ଏ ଚିତ୍ତାକର୍ଷକ ହୋଇଉଠିଛି ।



# ବର୍ଣ୍ଣନାବିଳାସ

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟକଳା ସମ୍ପର୍କରେ ଆଲୋଚନା କରିବାକୁ ଗଲାବେଳେ ଯେଉଁ ଯେଉଁ ଗୋଟି ବିଭବ ପ୍ରତି ଦୃଷ୍ଟି ଦିଆଯାଇଥାଏ, ତନ୍ମଧ୍ୟରୁ କାବ୍ୟର ବର୍ଣ୍ଣନାବିଳାସ ଅନ୍ୟତମ । ଉକ୍ତ ବର୍ଣ୍ଣନାବିଳାସ କ୍ଷେତ୍ରରେ ରୀତିଯୁଗର କବିମାନେ ଯଥେଷ୍ଟ ପରିମାଣରେ କଳାକୁଶଳତା ଓ କଳ୍ପନାପ୍ରବୃତ୍ତି ଫୁଟାଇଯାଇଛନ୍ତି । ନାୟକ ଓ ନାୟିକାଙ୍କ ରୂପବର୍ଣ୍ଣନା ତଥା ପ୍ରାକୃତିକ ଶୋଭାବର୍ଣ୍ଣନାରେ ସେମାନଙ୍କ ଉଚ୍ଚାଙ୍ଗ ପ୍ରତିଭା ଲକ୍ଷ୍ୟ କରିବା କଥା । ଏହି ଯୁଗର କବିମାନଙ୍କ ବର୍ଣ୍ଣନାନୈପୁଣ୍ୟର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି, ବର୍ଣ୍ଣନା ମଧ୍ୟରେ ଆଳଙ୍କାରିକ ଚମତ୍କାରିତା ପ୍ରଦର୍ଶନ । କବି ଉପେନ୍ଦ୍ରଭଞ୍ଜ ଏହି ଯୁଗର ଶ୍ରେଷ୍ଠ କବି ଭାବରେ ତାହାଙ୍କ ସାରସ୍ୱତ କୃତିରାଜିରେ ଯେଉଁ ଉଚ୍ଚାଙ୍ଗ ବର୍ଣ୍ଣନାପାଟବ ପ୍ରଦର୍ଶନ କରି ଯାଇଛନ୍ତି । ତାହା ଏକାନ୍ତ ଅନବଦ୍ୟ । ସର୍ବୋପରି 'ବୈଦେହୀଶବିଳାସ' କାବ୍ୟରେ କାବ୍ୟ ନାୟିକା ସୀତା ତଥା ନାୟକ ରାମଚନ୍ଦ୍ର ଶାନ୍ତା ପ୍ରଭୃତିଙ୍କ ଶୋଭା ବର୍ଣ୍ଣନା ଏବଂ ବନ, ପର୍ବତ, ପ୍ରଭାତ, ସନ୍ଧ୍ୟା ବିଭିନ୍ନ ଋତୁ ଓ ନଗର ବର୍ଣ୍ଣନାରେ କବିଙ୍କ ଅପୂର୍ବ କଳ୍ପନାପ୍ରବୃତ୍ତି ଓ ସୌନ୍ଦର୍ଯ୍ୟବୋଧ ପ୍ରକଟିତ ହୋଇଛି ।

## ନାୟକନାୟିକାଙ୍କ ରୂପ ବର୍ଣ୍ଣନା :

ନାୟକ ନାୟିକାଙ୍କ ରୂପ ବର୍ଣ୍ଣନାରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଯେଉଁ ଅସାଧାରଣ ଚମତ୍କାରିତା ପ୍ରଦର୍ଶନ କରି ଯାଇଛନ୍ତି, ତାହା ସମଗ୍ର ବିଶ୍ୱ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ବିଷୟ । ବୈଦେହୀଶ ବିଳାସ'ରେ ସୀତାଙ୍କ ରୂପବର୍ଣ୍ଣନାରେ ସେ ଅପୂର୍ବ ପାରଦର୍ଶିତା ଫୁଟାଇଛନ୍ତି । ସୀତାଙ୍କ ବାଲ୍ୟକାଳର ଶୋଭାବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ବିତତି ଉପରେ ଦୋଳରେ ରଖି ଧାତ୍ରୀପାଳିତ
ବିଡ଼ମ୍ବି ଉପମାମାନଙ୍କ ଅସମାନରୁ ଜାତ ।
ବିନିଦ୍ର କି ହେମ ଶଯ୍ୟନେ ଦୁର୍ଗା ରୂପା ପଲଙ୍କେ
ବିନର୍ଗତ ଆନ ଉପମା ସେହି କାଳେ ପଲଙ୍କେ ।

କାଳଖାଳୀ କଉତୁକେ ଅନ୍ତଃପୁରସ୍ଥା ମୋହ୍ନ
ବାଳ କି ଶୈବାଳ କମଳକୋଷ ଉପରେ ଶୋହ୍ନ ।
ବାଡବର ଚନ୍ଦ୍ରପ୍ରତିମା ପରି ଧରି ତା ଉଭା
ବଡ଼ବର ମଧ୍ୟେ ପକାଅ ଆନ ସମାନ ଶୋଭା ।
ବିଡ଼ମ୍ବି ନୂତନ ମଞ୍ଜରୀ ଚଳିତ କି ପବନେ
ବିଡ଼ମ୍ବଣ ଅନ୍ୟ ଦୃଷ୍ଟି ଯେ ଟଳଟଳ ଗମନେ ।"

(୩/୨୧—୨୫)

ଏଥିରେ ସୀତାଙ୍କ ବାଲ୍ୟକାଳୀନ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କବି କହିଛନ୍ତି ଯେ, ଧାଈମାନେ ଯେତେବେଳେ ସୀତାଙ୍କୁ ଚନ୍ଦ୍ରଶାଳାପୁରରେ ଦୋଳିରେ ବସାଇ ଝୁଲଉଥିଲେ, ସେହି ସମୟରେ ତାଙ୍କର ଯେଉଁ ସୌନ୍ଦର୍ଯ୍ୟ ପ୍ରକଟିତ ହେଉଥିଲା, ତାହାସହିତ ସୃଷ୍ଟିର ଅନ୍ୟ କୌଣସି ଉପମା ସମକକ୍ଷ ହୋଇପାରିଲେ ନାହିଁ । ସେ ଯେତେବେଳେ ଦୋଳିରେ ଶୟନ କରିଥିଲେ, ସେହି ସମୟରେ ମନେ ହେଉଥିଲା, ସତେ ଯେପରି ରୁପାର ପଲଙ୍କ ଉପରେ ସୁବର୍ଣ୍ଣ ନିର୍ମିତ ଶଯ୍ୟାରେ ଦୁର୍ଗା ଶୟନ କରିଛନ୍ତି । ସେହି ସମୟରେ ପଲକପାତ ମଧ୍ୟରେ ଅନ୍ୟ ସମସ୍ତ ଉପମା ଅପସାରିତ ହୋଇ ଯାଉଥିଲେ । ସୀତା ନିଜର ବାଲ୍ୟକାଳୀନ ଲୀଳାରେ ଅନ୍ତଃପୁରସ୍ଥ ସମସ୍ତଙ୍କୁ ମୁଗ୍ଧ କରିଦେଲେ । ପଦ୍ମକୋଷ ଉପରେ ଶୈବାଳ ରହିଥିଲେ ଯେଉଁପରି ଦେଖାଯାଏ, ତାହାଙ୍କ ମୁଖମଣ୍ଡଳରେ ଚୂର୍ଣ୍ଣକୁନ୍ତଳରାଜି ସେହିପରି ଶୋଭା ଧାରଣ କରିଥିଲା । ସେ ଯେତେବେଳେ କାନ୍ଥକୁ ଧରି ଠିଆହେବାକୁ ଆରମ୍ଭକଲେ, ସେତେବେଳେ କାନ୍ଥରେ ଅଙ୍କିତ ଚନ୍ଦ୍ରପ୍ରତିମା ପରି ତାହାଙ୍କ ଶୋଭା ପ୍ରକଟିତ ହେଉଥିଲା । ଏହି ସୌନ୍ଦର୍ଯ୍ୟ ନିକଟରେ ସୃଷ୍ଟିର ସମସ୍ତ ଉପମା ଅତି ନଗଣ୍ୟ ବୋଧହେଲା । ପୁନଶ୍ଚ ଯେତେବେଳେ ନୂତନ କରି ସୀତା ଚାଲିବାକୁ ଆରମ୍ଭକଲେ ତାହାଙ୍କର ଟଳଟଳ ଗମନକୁ କବି ପବନରେ ଦୋଳାୟିତ ନବ ମଞ୍ଜରୀ ରୂପେ ବର୍ଣ୍ଣନା କରିଛନ୍ତି ।

ଉକ୍ତ ବର୍ଣ୍ଣନାରେ କବିଙ୍କର ଅପୂର୍ବ କଳ୍ପନାଚାତୁରୀ ପ୍ରକଟିତ ହୋଇଛି ।

କୈଶୋର ଅତିକ୍ରାନ୍ତ ହୋଇ ଯେତେବେଳେ ସୀତାଙ୍କ ଅଙ୍ଗଦେଶରେ ଯୌବନ ପ୍ରକଟିତ ହେଲା, ତାହାର ବର୍ଣ୍ଣନା ମଧ୍ୟ କବିଙ୍କ ଲେଖନୀରେ ଅତ୍ୟନ୍ତ ଚମତ୍କାର ରୂପଧାରଣ କରିଛି । ଯଥା—

"ବନ୍ଧା ଯାହାକୁ ବଡ଼ ବୋଲି ସଉନ୍ଦର୍ଯ୍ୟ ଧରାରେ
ବନ୍ଦୀ ପରି ହୋଇ ରହିଲା ଅବରୋଧ ଧରାରେ ।
ବସ୍ତ୍ର ନବର ହିନକୁ ହିନ ପ୍ରଭା ବଢ଼ାଇ
ବକ୍ଷରେ କୁଚ ଅଙ୍କୁରିତ ଏହି ଉତ୍ପ୍ରେକ୍ଷା ହୋଇ ।
ବର୍ଣ୍ଣମାଳୀ ଚରି ରୋମାଳି କି ସେ ଶରଧାପନ୍ତି
ବର୍ଣ୍ଣମାପି ଏହି କରନ୍ତି କି ସେ ଊର୍ଦ୍ଧ୍ୱକୁ ଗତି ।
ବିକଳନା କରି ସଞ୍ଚିନ୍ତ ମଧୁ କଳ୍ପଦ୍ରୁମରେ
ବିକଳପ, ଫଳ ଅଙ୍କୁରୁ ଭଜେ ବୃଦ୍ଧି କ୍ରମରେ ।
ବିଜୟୀ ହୋଇଲା ହମୁକଠାରୁ ତାଳ ସରିକି
ବିଜୟି ହୃଦରେ ସ୍ୱପୂନ୍ତ ରୂପେ କଲେ ଶମ୍ଭୁକି ।
ବଳୀ ଶ୍ରେଷ୍ଠ କାମ ତାହାଙ୍କ ବାମ କଲା ପ୍ରହାର
ବଳ ବାତୁଳୀକି ସ୍ତନାଗ୍ର ରୂପେ ସେ ମନୋହର ।
ବାସରେ ଯତନେ ଘୋଡ଼ାଇ ଚୋଳକବଚ ଦେଇ
ବାସଅଙ୍ଗୀ ସ୍ଥୂଳ ଉପୁରୁ ରକ୍ତ ହେବନେ ସ୍ନେହୀ ।"

(୩/୩୫—୪୧)

ଉପର୍ଯ୍ୟୁକ୍ତ ବର୍ଣ୍ଣନାରେ କବିଙ୍କ ଶୃଙ୍ଗାରିକ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ପ୍ରକଟିତ ହୋଇଛି । ନାୟିକାର ଯୌବନକାଳୀନ ସ୍ୱାଭାବିକ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଗଲାବେଳେ ଯେତେବେଳେ କବି ବକ୍ଷୋଜର ଚିତ୍ର ଅଙ୍କନ କରିଛନ୍ତି, ସେତେବେଳେ ତାହାଙ୍କର ଶୃଙ୍ଗାରିକ ଚେତନା ସ୍ୱତଃ ଉଦ୍‌ଗମ ହୋଇଛି ।

ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ସୀତାଙ୍କ କଟୀ, ପାଦ, ଉରୁ, ବାହୁ, ହସ୍ତ ତଥା ଶରୀରର ଅନ୍ୟାନ୍ୟ ବିଭିନ୍ନ ଅଙ୍ଗର ଶୋଭା ବର୍ଣ୍ଣନାରେ ମଧ୍ୟ କବିଙ୍କର ଅପୂର୍ବ ବର୍ଣ୍ଣନା-ନୈପୁଣ୍ୟ ଓ କଳ୍ପନାଗୁରୁତ୍ୱ ପ୍ରକଟିତ ହୋଇଛି । ଯଥା—

"ବନଧବନକୁ ଯେ ଜିଣିଲା କଟୀ କୃଶତା ହୋଇ
ବନଧରିକେଶୀ କଂକଣୀ ଜୟବାଦ୍ୟ ବଜାଇ ।

ବଳୀ ହଂସକନାଦେ ଗତି ବଡ଼ାଇବ ଶୁଣାଇ
ବଳାଙ୍କାରେ ମନ୍ଦସରସେ ଗଜହଂସ କଣାଇ ।
ବାରଣବୃଷା ଗର୍ବ ଖର୍ବ କର ଉଁରୁ ଧାପିତ
ବାରଣଦନ୍ତ କୁନ୍ଦସ୍ତମ୍ଭ କି କୁଙ୍କୁମ ଲେପିତଂ ।
ବାହୁଶୋଭା ଗୃହ୍ଣି ମୃଣାଳ କଣ୍ଟକକୁ ବହିଲ
ବାହୁର୍ଦଣ୍ଡତାଡ଼ରେ ଜାଣିଲ ସେ ମୂଳାକୁ ପାଇଲ ।
ବ୍ରହ୍ମାଣ୍ଡରେ ନାହିଁ ସେ ହସ୍ତ ତୁଲ କହିବା ତର୍କେ
ବ୍ରହ୍ମା ତେଣୁ ଦେଲ ଅତୁଲ କର ନାମ କଟକେ ।
ବିଭୂଷଣ ଭୂଷା ନଚୟ ସର୍ବ ସୁନ୍ଦରୀଙ୍କରେ
ବିଭୂ ସେ ଜାନକୀ ଅତୁଳ ତାଙ୍କୁ ଆମ୍ଭେ ଏଠାରେ ।

× × × ×

(୩/୪୨—୪୭)

.. କାବ୍ୟର ଅଷ୍ଟମ ଛନ୍ଦରେ କବି ବିଶ୍ୱାମିତ୍ରଙ୍କ ମୁଖରେ ସୀତାଙ୍କର ଯେଉଁ ଅପୂର୍ବ ସୌନ୍ଦର୍ଯ୍ୟ ବର୍ଣ୍ଣନା କରାଇଛନ୍ତି, ତାହା ପାଠକଲେ ମନେହୁଏ, ସତେ ଯେପରି ତାହାଙ୍କର ସମସ୍ତ କବିତ୍ୱକୌଶଳ ଏହିଠାରେ ହିଁ ପୁଞ୍ଜୀଭୂତ ହୋଇଛି । ସୀତାଙ୍କ ବିଭିନ୍ନ ଅଙ୍ଗର ସୌନ୍ଦର୍ଯ୍ୟ ଆଳଙ୍କାରିକ ରୀତିରେ କବି ଫୁଟାଇଛନ୍ତି । ତନ୍ମଧ୍ୟରୁ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ପ୍ରଦାନ ପୂର୍ବକ ତାହାଙ୍କ କଳ୍ପନାଭୂମି ସହଜରେ ଅନୁମାନ କରାଯାଇପାରେ । ସୀତାଙ୍କ ଭ୍ରୂଲତା ଓ ନେତ୍ରର ଶୋଭା ପ୍ରସଙ୍ଗରେ କବି ଲେଖିଛନ୍ତି—

"ବିହିଭ୍ରୂଲତା ନିକଟେ ସ୍ଥିତା ଗୃହିଁ କମାଣେ ରହି
ବିଶିଖ ଗତି କରୁଅଛନ୍ତି ପକ୍ଷ୍ମପକ୍ଷକୁ ବହି
ବର୍ଣ୍ଣି ନିର୍ବିଧୁ ଶାଳିତସାଧୁ ହିଙ୍ଗୁଳ କଳା ଶଙ୍କେ
ବହୁ ରୂପ ଏ ଆନ ପରାପ୍ତେ ଯଥା ଆପଣା ମୁଖେ ।
ବିପିନ ଘନେ ପଶି ବହନେ ଚଞ୍ଚଳେ ହାର ମୃଗ
ବଂଶରେ କେହି ସେ ସମ ଧାର୍ଯ୍ୟ ମନ ଇନ୍ଦୁରେ ଯୋଗ ।
ବାଞ୍ଛିତ କର୍ମହୀନର ଶ୍ରମ କଲେ ପ୍ରାପତ ନାହିଁ
ବିମଳ ପଦାର୍ଥକୁ ସର୍ବଦା ସମଳ କଲା ଯହିଁ ।

"ହସିଲେ ଭୁଲେ ଦଇବ ବଳେ ଗୁଞ୍ଜା କ ରତ୍ନପ୍ରାପ୍ୟେ
ହନମିଷେ ସେ ମୀନସମାଜେ, ଖଞ୍ଜନ କମ୍ପେ ଭୟେ ।
ବୁଡ଼ାଇ ଗଗ କୁଣ୍ଡରେ ବେଗ ବେଗ ଅପାଙ୍ଗ ଡ଼ାଳି
ବଡ଼ିଶ ପରି ହିଏ ଓଷ୍ଠାରି ମନମୀନକୁ ବାଳି ।"

(୮।୧୦—୧୨)

କେବଳ ସୀତାଙ୍କ ମୁଖରେ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ସମଗ୍ର ଅଷ୍ଟମ ଛାନ୍ଦ ସଂପୂର୍ଣ୍ଣ ହୋଇଛି । ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, ସଂସ୍କୃତ ସାହିତ୍ୟର ମହାକବି ଶ୍ରୀହର୍ଷଙ୍କ 'ନୈଷଧ' କାବ୍ୟ ନାୟିକନାୟିକାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ଦୃଷ୍ଟିରୁ ଏକ ଅନବଦ୍ୟ ସୃଷ୍ଟି ରୂପେ ବିବେଚିତ ହୋଇଛି । ଏଥିରେ ଯେଉଁ ଅପୂର୍ବ କଳ୍ପନାଶୃଙ୍ଖଳା ପ୍ରକଟିତ ହୋଇଛି, ତାହା ଭାରତୀୟ ପଣ୍ଡିତମାନଙ୍କପାଇଁ ଆଲୋଚନାର ବସ୍ତୁ ହୋଇ ରହିଛି । ଏହି ଦୃଷ୍ଟିରୁ ନାୟିକନାୟିକାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଷେତ୍ରରେ ଏ ଦେଶର ପଣ୍ଡିତମାନେ 'ନୈଷଧୀୟ ଛଟା'ର ଦୃଷ୍ଟାନ୍ତ ପ୍ରଦାନ କରିଥାନ୍ତି । କହିବା ବାହୁଲ୍ୟ ଯେ, କବି ଉପେନ୍ଦ୍ର ଭଞ୍ଜ 'ବୈଦେହୀଶ ବିଳାସ'ର ଅଷ୍ଟମ ଛାନ୍ଦରେ ସୀତାଙ୍କ ମୁଖର ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଷେତ୍ରରେ 'ନୈଷଧୀୟ ଛଟା'ର ଆଦର୍ଶ ଅନୁସରଣ କରିଛନ୍ତି ।

ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା ଦୃଷ୍ଟିରୁ କାବ୍ୟର ଦଶମ ଛାନ୍ଦ ଅନ୍ୟତମ ଉଲ୍ଲେଖଯୋଗ୍ୟ ଅଂଶ । ଏହା 'ବେଶବର୍ଣ୍ଣନା ଛାନ୍ଦ' ନାମରେ ଅଭିହିତ । ସୀତାଙ୍କୁ ତାହାଙ୍କ ସଖୀମାନେ ବିଭିନ୍ନ ବେଶଭୂଷାଦ୍ୱାରା ମଣ୍ଡନ କରିବା ସମୟରେ ତାହାଙ୍କର ଯେଉଁ ଶୋଭା ପ୍ରକଟିତ ହୋଇଥିଲା, ତାହାର ମନୋଜ୍ଞ ଚିତ୍ର ଏହି ଛାନ୍ଦରେ ଦେଖିବାକୁ ମିଳେ । ତନ୍ମଧ୍ୟରୁ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ପ୍ରଦାନ କଲେ, କବିଙ୍କ ଅପୂର୍ବ କଳ୍ପନାଶୃଙ୍ଖଳା ସହଜରେ ଅବଧାରଣ କରିହେବ ।

ସଖୀମାନେ ସୀତାଙ୍କ ଗଣ୍ଡଦେଶରେ ମକରୀ ଚିତ୍ର ଅଙ୍କନ କରିବା ପରେ ଅନ୍ୟ ଜଣେ ସଖୀ ତାହାଙ୍କ ଚିବୁକରେ କସ୍ତୁରୀରେ ଏକ ବିନ୍ଦୁ ଅଙ୍କନ କରି ଦେଲା । ଏହି ଶୋଭା ବର୍ଣ୍ଣନା କରିବାକୁ ଯାଇ କଳ୍ପନାବିଳାସୀ କବି ଲେଖିଛନ୍ତି—

"ବଲ୍ଲଭରଥେ ଯା କେତୁ ମକର
ବଲ୍ଲଭୀରଥେ ତା ମକରୀ କର ।

ବିବେକୀ ସଜନୀ ସୌନ୍ଦର୍ଯ୍ୟ ଗୋଳେ
ବଳେ ଛଡ଼ାଇ ଦେଖାଇ କପୋଳେ ସେ
ବିନ୍ଦୁ ଏ ମୃଗମଦରେ ସେ
ବିହେ କେ ବିବୁକେ ମଧୁମକ୍ଷିକା ଏ
ସୁକୃତ ସଂଗଭଙ୍ଗରେ ଯେ ॥"

(୧୦।୧୧)

ଏହାପରେ ସଖୀମାନେ ସୀତାଙ୍କ ନେତ୍ର ପ୍ରାନ୍ତରେ ଦୁଇଗୋଟି ଅଞ୍ଜନ-ସୂତ୍ର ଅଙ୍କନ କଲେ । ଉକ୍ତ ଅଞ୍ଜନସୂତ୍ର ତାହାଙ୍କ ନେତ୍ରର ଯେଉଁ ସୌନ୍ଦର୍ଯ୍ୟ ପ୍ରକାଶ କରାଇଲା, ତାହାର ବର୍ଣ୍ଣନା ପ୍ରଦାନ କରିବାକୁ ଯାଇ କବି ଲେଖିଛନ୍ତି—

ବଡ଼ିଶ ସାରଣୀ ଲକ୍ଷ୍ୟ ସେ ନେତ୍ର
ବିଲମ୍ବିତ କଲେ ଅଞ୍ଜନ ସୂତ୍ର ।
ତାହାର ପକ୍ଷ୍ମପେଡ଼ାରୁ ପଳାଇ
ବିଳ ସ୍ରୋତେ କି ଦମ୍ଭଦଂଶ ଅହି ସେ
ବିଷେ କି ନଜାଣି ତତ୍ତ୍ୱ ଯେ
ବିକାଶ ମୀନରାଶି ବେନି ପାର୍ଶ୍ୱେ
ହେଲା ବେନି ଧୂମକେତୁ ଯେ ।"

(୧୦।୧୨)

କେବଳ କାବ୍ୟନାୟିକା ସୀତାଙ୍କ ସୌନ୍ଦର୍ଯ୍ୟ ନୁହେଁ, ସମଗ୍ର କାବ୍ୟ ମଧ୍ୟରେ ଯେଉଁଠାରେ ଯେଉଁ ନାରୀ ଚରିତ୍ରର ଆବିର୍ଭାବ ଘଟିଛି, କବି ତାହାର ଶୋଭା ବର୍ଣ୍ଣନାରେ ଅପୂର୍ବ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । କାବ୍ୟର ଅନ୍ୟାନ୍ୟ ବିଭିନ୍ନ ଛାନ୍ଦରେ ମଧ୍ୟ ଭିନ୍ନଭିନ୍ନ ପ୍ରସଙ୍ଗରେ ସୀତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଛି । ତନ୍ମଧ୍ୟରୁ ଷୋଡ଼ଶ, ଦ୍ୱାବିଂଶ, ତ୍ରୟୋବିଂଶ ଏବଂ ଚତୁର୍ବିଂଶ ଛାନ୍ଦ ଉଲ୍ଲେଖଯୋଗ୍ୟ । ଚତୁର୍ବିଂଶ, ଛାନ୍ଦରେ ଶୂର୍ପଣଖା ମୁଖରେ କବି ସୀତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରାଇଛନ୍ତି । ଏତଦ୍‌ବ୍ୟତୀତ ତୃତୀୟ ଛାନ୍ଦରେ ମେନକା ଅପ୍‌ସରାର ସୌନ୍ଦର୍ଯ୍ୟ ଏବଂ ପଞ୍ଚମ ଛାନ୍ଦରେ ଶାନ୍ତାଙ୍କ ରୂପବର୍ଣ୍ଣନାରେ ମଧ୍ୟ କବିଙ୍କ ସୌନ୍ଦର୍ଯ୍ୟ ପ୍ରିୟତା ଓ ବର୍ଣ୍ଣନାନୈପୁଣ୍ୟ ଲକ୍ଷ୍ୟ କରିବା କଥା ।

କାବ୍ୟ ନାୟକ ରାମଚନ୍ଦ୍ରଙ୍କ ଶୋଭା ବର୍ଣ୍ଣନାରେ ମଧ୍ୟ କବିଙ୍କ ବର୍ଣ୍ଣନା ନୈପୁଣ୍ୟ ଅତ୍ୟନ୍ତ ଚମତ୍କାର ହୋଇଛି । ପଞ୍ଚମସର୍ଗରେ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କ ବାଲ୍ୟକାଳୀନ ଲୀଳା ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

ବଢି ସୁତେ ଦିନୁ ଦିନ ତ୍ରିଭୁଜ ଦୟେ
ବଳକ୍ଷ ପକ୍ଷରେ କଳାକର ପରାୟେ ।
ବାଡ଼ିଧର ଉଭା ଶୋଭା କେ ବା କହିବ
ବଡ଼ କବି ଯହିଁ ଜଡ଼ ହୋଇ ରହିବ ।

ବିହାର ବେଳେ କ୍ରମେ କ୍ରମେ ଚତ୍ୱରେ
ବ୍ୟଗ୍ରଗଣ୍ଡ ଶିଶୁସଙ୍ଗେ ରଙ୍ଗେ ସତ୍ୱରେ ।
ବିଲୋକି ଜଗତ୍ତି ରଚନା ନୋହେ ବିସାର
ବାଲୁକାରେ ସର୍ଜନା ଯେ ସେହି ପ୍ରକାର ।
ବ୍ରତ ବିଧାନ ସମସ୍ତ ତହିଁ ହୋଇଲା
ବନ୍ଦ୍ରିକାରେ ନଟନାରାୟଣ ଯେ ଲୀଳା ।

(୪/୭୭—୮୧)

ରାମ ଓ ଲକ୍ଷ୍ମଣ ହରଧନୁଭଙ୍ଗ ଉତ୍ସବରେ ଯୋଗଦେବା ନିମିତ୍ତ ମିଥିଳା ନଗରୀରେ ଉପସ୍ଥିତ ହୋଇ ବିଶ୍ୱାମିତ୍ରଙ୍କ ସହିତ ରାଜମାର୍ଗରେ ଯାତ୍ରା କରୁଥିଲେ । ସେହି ସମୟରେ ନଗରୀର ନାରୀଗଣ ରାମଲକ୍ଷ୍ମଣଙ୍କ ଶୋଭା ସନ୍ଦର୍ଶନ ପୂର୍ବକ ମନ ମଧ୍ୟରେ ଚିନ୍ତା କରୁଛନ୍ତି—

ଯାମିନୀକାଳେ ଭାନୁବାମା ତ୍ରିଯବ ସ୍ନିଗ୍ଧ ସୁଷମା
ଲକ୍ଷିତ ହୁଅନ୍ତା ଆଜ ଆନନପ୍ରଭା
ବିରଳ ବସନ ଧରେ ନୀଳପୀତ ପରସ୍ପରେ
ସ୍ମର ମଧୁ ଆଲିଙ୍ଗନ ବିହ୍ୱଳ ଶୋଭା

× × × ×

(୯/୧୭)

ଏହିପରି ଭାବରେ କାବ୍ୟରେ ବିଭିନ୍ନ ପ୍ରସଙ୍ଗରେ କବି ନାୟକନାୟିକାଙ୍କ ରୂପ ବର୍ଣ୍ଣନା ପୂର୍ବକ ସ୍ୱକୀୟ ବର୍ଣ୍ଣନାନୈପୁଣ୍ୟର ଅପୂର୍ବ ପରକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି ।

## ପ୍ରକୃତ ବର୍ଣ୍ଣନା :

କବି ଉପେନ୍ଦ୍ରଭଞ୍ଜ ଥିଲେ ସୌନ୍ଦର୍ଯ୍ୟପ୍ରିୟ । ତାହାଙ୍କ ରଚନାବଳୀରେ ପ୍ରକୃତିର ଜୀବନ୍ତ ଚିତ୍ର ଦେଖିବାକୁ ମିଳେ । କଳ୍ପନାବିଳାସୀ କବିଙ୍କ ମାନସଚକ୍ଷୁ ସମକ୍ଷରେ ପ୍ରକୃତି ବିଭିନ୍ନ ରୂପରେ ସ୍ୱକୀୟ ଶୋଭା ବିସ୍ତାର କରିଛି । ପ୍ରଭାତ ବର୍ଣ୍ଣନା, ସନ୍ଧ୍ୟାବର୍ଣ୍ଣନା, ବନ, ପର୍ବତ, ବୃକ୍ଷଲତା, ଉପବନ, ନଗର ତଥା ବିଭିନ୍ନ ଋତୁର ପ୍ରାକୃତିକ ଶୋଭା ବର୍ଣ୍ଣନାରେ କବିଙ୍କ କାବ୍ୟସୃଷ୍ଟି ଅପୂର୍ବ ଶୋଭାଶ୍ରୀ ଧାରଣ କରିଛି । କବିଙ୍କ ବିଖ୍ୟାତ କୃତି 'ବୈଦେହୀଶ ବିଳାସ'ରୁ ଏହାର କେତେଗୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା ।

### ୧ । ପ୍ରଭାତ ବର୍ଣ୍ଣନା :

ପଞ୍ଚଦଶ ଛାନ୍ଦରେ କବି ପ୍ରଭାତର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ବିଧିକୋକ ବିଗବେଶ୍ୟା ତେଜିଲା
ବେଗେ ସବିତା ଭାବରେ ମଜ୍ଜିଲା ।
ବନଜନୀ ଯେ କୁଳଟା ସ୍ୱଭାବେ
ବିକଶିନ ଉଲ୍ଲାସେ ଭୃଙ୍ଗଚୁମ୍ବେ ॥
ବକଭୂକ ସତ୍ୟବାକ୍ୟ ରଚନା
ବିବୁଧେ ଯେ ସେ ବେଶ୍ୟାବଶ ସିନା ।
ବାୟସସାହୁ ଡାକକୁ ପେଚକ
ବୃକ୍ଷକୋଟେ ଲୁଚେ ହୀନ ଖାତକ ॥
ବିଚକ୍ଷଣା କୁମୁଦମା ଦେଖଇ
ବିସ୍ତାରିତ ମୁଦ୍ରିତେ ସତୀ ମୁହିଁ ।
ବସି ନ ପାରି ନ ରସି ଭ୍ରମର
ବ୍ୟର୍ଥ ବାଦ ଦେଇ କରେ ଝଙ୍କାର ॥"

(୧୫/୨୧—୨୩)

କାବ୍ୟର ଷଷ୍ଠଛାନ୍ଦରେ ଉତ୍ପ୍ରେକ୍ଷାଳଙ୍କାର ମାଧ୍ୟମରେ କବି ସୂର୍ଯ୍ୟୋଦୟର ଯେଉଁ ବର୍ଣ୍ଣନା ପ୍ରଦାନ କରିଛନ୍ତି, ତାହା ଏକାଧାରରେ ତାଙ୍କର

କଳ୍ପନାଗୃତ୍ତୁଣି, ବର୍ଣ୍ଣନାନୈପୁଣ୍ୟ ଓ ଆଳଙ୍କାରିକ ବିଦଗ୍ଧତାର ପରିଚୁପ୍ଚକ । କବି ନବୋଦିତ ସୂର୍ଯ୍ୟମଣ୍ଡଳକୁ ଏକ ହସ୍ତିମାର ସନ୍ତାନ ପ୍ରସବକାଳୀନ ଦୃଶ୍ୟ ବୋଲି କଳ୍ପନା କରି ଲେଖିଛନ୍ତି—

" ବାସବଦିଗ ଅଭ୍ରମୁ କରିଣୀ
ବିଜନ୍ୟ କଲ ରକ୍ତପିଣ୍ଡ ଜାଣି
ବିମ୍ବସବତାର ଦିଶି ଆସିଲ
ବିଂଶ କର୍ଣ୍ଣେ ଶୀତ ବାତ ସେ ହେଲ ।"

(୬।୩୦)

ପଞ୍ଚମ ଛାନ୍ଦରେ ଋଷ୍ୟଶୃଙ୍ଗ ଓ ଶାନ୍ତାଙ୍କ ବିବାହ ବର୍ଣ୍ଣନା ପ୍ରସଙ୍ଗରେ କବି ପ୍ରଭାତର ଚିତ୍ର ଅଙ୍କନ କରିଛନ୍ତି । ଏହି ଚିତ୍ର ଆଳଙ୍କାରିକ ଭାବରେ ଅଙ୍କିତ ହୋଇଛି । ପ୍ରଭାତକୁ କାର୍ତ୍ତିକେୟଙ୍କ ଜନ୍ମୋତ୍ସବ କାଳୀନ ଦୃଶ୍ୟରୂପେ କଳ୍ପନା କରି କବି କହିଛନ୍ତି—

"ବାହୁଳେୟ ପ୍ରାୟ ହେଲ ପ୍ରାତ ଉତ୍ପତ୍ତି
ବିଭ୍ରାଡ଼ ତାରକାସୁର ପ୍ରମୋଦ ଅନ୍ତ ।
ବିଭ୍ରାଜ ଉଜ୍ଜ୍ୱଳ ଶକ୍ତିମନ୍ତରେ ସେହି
ବିହାଣ ହୋଇ ହିମତେଶ ଷଷ୍ଠୀରେ ସେହି ।
ବାରିକରେ ଖ୍ୟାତ ଶିବପୁରେ ଉତ୍ସବେ
ବାଦନ ଯେ ଶଙ୍ଖମାଳଗଣ ହିଁ ରାବେ ।"

(୫।୨୦—୨୨)

ଏହି ସମସ୍ତ ଉଦ୍ଧୃତିରେ କବିଙ୍କ ବର୍ଣ୍ଣନା-ଚାତୁରୀ ଅପେକ୍ଷା ତାହାଙ୍କ କଳ୍ପନାଗୃତ୍ତୁଣିର ପରାକାଷ୍ଠା ସର୍ବାଧିକ ପରିମାଣରେ ପ୍ରକଟିତ ହୋଇଛି ।

## ସନ୍ଧ୍ୟା ବର୍ଣ୍ଣନା :

ସଂସ୍କୃତ ସାହିତ୍ୟର ମାଘ, ଶ୍ରୀହର୍ଷ ଓ କାଳିଦାସ ପ୍ରମୁଖ କବିମାନଙ୍କ ତୁଲ୍ୟ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମଧ ତାହାଙ୍କର ବିଭିନ୍ନ ରଚନାରେ ସନ୍ଧ୍ୟାବର୍ଣ୍ଣନା ପ୍ରଦାନ କରିଛନ୍ତି । ବିଶେଷତଃ ତାହାଙ୍କର ବିଖ୍ୟାତ କୃତି 'ବୈଦେହୀଶ ବିଳାସ'ରେ ବିଭିନ୍ନ ପ୍ରସଙ୍ଗରେ ପ୍ରଦତ୍ତ ସନ୍ଧ୍ୟା ବର୍ଣ୍ଣନା ଅତ୍ୟନ୍ତ ଉପଭୋଗ୍ୟ ଓ ଏକାନ୍ତ

ଅନବଦ୍ୟ ହୋଇଛି । ତନ୍ମଧ୍ୟରୁ ଚତୁର୍ଦ୍ଦଶ ଛାନ୍ଦରେ ରାମ ଓ ସୀତାଙ୍କ ବିବାହ ପୂର୍ବବର୍ତ୍ତୀ ଦିବସର ସନ୍ଧ୍ୟାବର୍ଣ୍ଣନା ଉଲ୍ଲେଖଯୋଗ୍ୟ । କବି ସେଠାରେ ଲେଖିଛନ୍ତି—

ବ୍ୟାସକ୍ତ ଅନୁରାଗରେ ସବିତା ଏ କାଳେ
ବଳପୃଷ୍ଟ ବୋଲି ନିଜ ନିବାସକୁ ଚଳେ ଯେ ।
ବୁଡ଼ାଇ କି ସିନ୍ଧୁ ଜଳେ ତାମ୍ର ପାତ୍ର ରବି
ବିଭା ସୀତାରାମର ନିକଟ ଧାତା ଭାବି ଯେ ।
ବାରଧ୍ୱଜ ଉଦେ ଅଙ୍କ ଦୂର୍ବାଦଳ ଭରି
ବନ୍ଦାଇବ ରୂପାଛୁଳୀ ପ୍ରତୀଚୀ ଧରି ଯେ ।”

(୧୪/୨୧—୨୩)

ଉକ୍ତ ବର୍ଣ୍ଣନାରେ କବି ସଂଧ୍ୟାକାଳୀନ ପ୍ରାକୃତିକ ଶୋଭା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସ୍ୱକୀୟ ରସିକତା ମଧ୍ୟ ପ୍ରତିପାଦନ କରିଛନ୍ତି । ଏଠାରେ ଉତ୍ପ୍ରେକ୍ଷା ଅଳଙ୍କାର ମାଧ୍ୟମରେ ରସାଳ ଭାବରେ ଚନ୍ଦ୍ରୋଦୟ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

କାବ୍ୟର ପଞ୍ଚମ ଛାନ୍ଦରେ ଶାନ୍ତା ଓ ଋଷ୍ୟଶୃଙ୍ଗଙ୍କ ବିବାହ ପ୍ରସଙ୍ଗରେ ସାଂଧ୍ୟ ପ୍ରକୃତିର ଚିତ୍ର ଅନ୍ୟତମ ଉଲ୍ଲେଖଯୋଗ୍ୟ ବିଷୟ—

“ବିଧୂନୁଦ ପ୍ରାୟ ହୋଇ ସନ୍ଧ୍ୟା ଆସିଲା
ବିବସ୍ୱାନଗ୍ରାସୀ ରଙ୍ଗଭାବ ଦିଶିଲା ।
ବାଳୀ ସେ କାଳୀ, ପିଧାନ୍ତି କି ପାଟଶାଢ଼ୀ
ବହିଲେ କି ସରସ୍ୱତୀ କାଳନ୍ଦୀ ଜଡ଼ି ।
ବନଜାରିକର କଚ୍ଛ ଆସିଲା ଦିଶି
ବାରୁଣୀ ତ୍ରିବେଣୀଘାଟେ ପଡ଼ିଲା ଘୋଟି ।
ବିସ୍ମିତ ପକ୍ଷେ ବିବାହ ପ୍ରମୁଖ ଦ୍ୱିଜେ
ବିକାଶି ଶ୍ଳୋକବାଣୀ କି ବିହାରେ ମଜ୍ଜେ ।”

(୫/୧୩—୧୬)

**ବନ ବର୍ଣ୍ଣନା :**

ଭଞ୍ଜସାହିତ୍ୟର ବନବର୍ଣ୍ଣନା ସମଗ୍ର ଭାରତୀୟ ସାହିତ୍ୟରେ ଅନ୍ୟତମ ଉଲ୍ଲେଖ ଯୋଗ୍ୟ ବିଷୟ । ‘ଲାବଣ୍ୟବତୀ’ ଓ ‘ବୈଦେହୀଶ ବିଳାସ’ ପ୍ରଭୃତି

କାବ୍ୟରେ କବି ଯେଉଁ ବନବର୍ଣ୍ଣନା ପ୍ରଦାନ କରିଛନ୍ତି, ବର୍ଣ୍ଣନାବିଳାସ ଓ କଳ୍ପନାଗୃରୁତ୍ୱ ଦୃଷ୍ଟିରୁ ତାହା ସଂସ୍କୃତ ସାହିତ୍ୟର ମହାକବିମାନଙ୍କ ବର୍ଣ୍ଣନାକୁ ମଧ୍ୟ ଅତିକ୍ରମ କରିଯାଇଛି । ବିଶେଷତଃ 'ବୈଦେହୀଶ ବିଳାସ' କାବ୍ୟରେ ପ୍ରଦତ୍ତ ବନବର୍ଣ୍ଣନା କବିଙ୍କର ଅସାଧାରଣ କଳ୍ପନାଗୃରୁତ୍ୱ ଓ ବର୍ଣ୍ଣନା ନୈପୁଣ୍ୟର ପରିଚାୟକ । ଏହି କାବ୍ୟରେ ପ୍ରକୃତି ଚିତ୍ର ଦୃଷ୍ଟିରୁ ବିଚାର କରିବାକୁ ଗଲେ, ବନବର୍ଣ୍ଣନାର ପରିମାଣ ସର୍ବାଧିକ । ତନ୍ମଧ୍ୟରୁ ନିମ୍ନରେ କେତୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା ।

ଜରତାଦି ବେଶ୍ୟାମାନେ ଋଷ୍ୟଶୃଙ୍ଗଙ୍କୁ ଆଣିବା ନିମିତ୍ତ ନୌକାରେ ବସି ତାହାଙ୍କ ଆଶ୍ରମ ଅଭିମୁଖେ ଯାତ୍ରା କରିବା ସମୟରେ ନଦୀର ଉଭୟ ପାର୍ଶ୍ୱରେ ଯେଉଁ ବନଭୂମି ଦେଖିବାକୁ ପାଇଥିଲେ, କବି ସେହି ବନଭୂମିର ଦୃଶ୍ୟ ଅତି ସଂକ୍ଷିପ୍ତ ଭାବରେ ବର୍ଣ୍ଣନା କରିଛନ୍ତି । ଉକ୍ତ ବର୍ଣ୍ଣନା ସଂକ୍ଷିପ୍ତ ହେଲେ ମଧ୍ୟ ଏଥିରେ ଆଳଙ୍କାରିକ ବିଦଗ୍ଧତା ପ୍ରକାଶ ପାଇଛି । ବିରୋଧାଭାଷ ଅଳଙ୍କାର ମାଧ୍ୟମରେ ବନର ଶୋଭା ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

"ବେନିକୂଳେ ମହାରଣ୍ୟ ସତ୍ୟବାକେ ହୀନ
ବିଘନ ପଶୁସମୂହେ ସତ୍ୟବାକେ ପୂର୍ଣ୍ଣ ଯେ ।
ବାଜୀଗମ୍ୟ ସ୍ଥାନ ନୋହେ ସର୍ବ ସମୟରେ
ବାଜୀରାଜ କ୍ରୀଡ଼ାକରେ ବିଗତ ଭୟରେ ଯେ ।" (୪/୧୪,୧୫)

କବିଙ୍କ ବନବର୍ଣ୍ଣନା ସର୍ବାଧିକ ଚିତ୍ତାକର୍ଷକ ହୋଇଛି କାବ୍ୟରେ ସପ୍ତମ ଛାନ୍ଦରେ । ରାମଚନ୍ଦ୍ର ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହିତ ସିଦ୍ଧବନ ଦେଇ ଯାତ୍ରା କରୁଥିଲେ । ସେହି ପ୍ରସଙ୍ଗରେ ସିଦ୍ଧବନର ସ୍ୱାଭାବିକ ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଛି । ଉକ୍ତ ବନପ୍ରଦେଶକୁ ତପସ୍ୱୀ ରୂପରେ କଳ୍ପନା କରି କବି ଲେଖିଛନ୍ତି—

"ବୃକ୍ଷତତି ତପିପନ୍ତି ତହିଁ ଏକାକୃତି
ବଲ୍‌କଳ ପିଧାନ କରି ଜଟା ଧରିଛନ୍ତି ।
ବେଦସାର ମୂଳ ସଦା ସୁମନା ଫଳଦ
ବାସବୃତ୍ତି ପର୍ଣ୍ଣଚୟ୍ୟ ଅତି ସ୍ଥିର ହୃଦ୍ୟ ।
ବନାଧାର ପ୍ରାପ୍ତେ ଲତାତଳ ମନୋହର
ବିଶ୍ରାମିଛନ୍ତି କମଳ ହଂସତାପ ଦୂର ।" (୭/୨--୪)

ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ଭ୍ରମର ଚୁମ୍ବିତ ପୁଷ୍ପରାଶି-ବିମଣ୍ଡିତ ବୃକ୍ଷଲତାପରିପୂର୍ଣ୍ଣ ବନପ୍ରଦେଶକୁ କବି ମନୋରମ ପୁଷ୍କରଣୀରୂପେ କଳ୍ପନା କରିଛନ୍ତି—

"ବିକଶିତ ଘନପୁଷ୍ପ ଭ୍ରମରେ ସହିତ
ବିନୋଦୀ ଜନମାନଙ୍କ ହରୁଅଛି ଚିତ୍ତ ।" (୭/୫)

ବନର ବିଭିନ୍ନ ଅଞ୍ଚଳକୁ ଦ୍ୱୈତ, ଅଦ୍ୱୈତ, ବନିତା, କଦ୍ରୁ ଓ ସଙ୍ଗୀତଶାଳା ରୂପରେ ବର୍ଣ୍ଣନା କରାଯାଇଛି । ଯଥା—

"ବନର କେଉଁ ପ୍ରଦେଶ ଅଦ୍ୱୈତ ପ୍ରକାର
ବସ୍ତୁକ ଅନୁଭବରେ ଶିଖୀ ଶୋଭାକର ।
ବରୁଣ ଦେବବଲ୍ଲଭ ଉଦୟ କରିଛି
ବହୁ ସୁମନ ସନ୍ତୋଷକର ହୋଇଅଛି ।
ବନର କେଉଁ ପ୍ରଦେଶ ଦ୍ୱୈତ ଛବି ଧରି
ବିଜନତ ଦୈତ୍ୟଗଣ ରୂପ ଅଛି ଧରି ।
ବିସ୍ତାରିଛି ପବନଲୀଳାକୁ ନିରନ୍ତର
ବିଶେଷତ ମୁନିନଗରେ ସେ ମନୋହର ।
ବନର କେଉଁ ପ୍ରଦେଶ ରଞ୍ଜନେ ରଞ୍ଜିନ
ବନିତା ପ୍ରାୟେ ଅରୁଣ ସୁପର୍ଣ୍ଣ ସୁମନ ।
ବନର କେଉଁ ପ୍ରଦେଶ କଦ୍ରୁ ଛବି ବହି
ବହୁସ୍ତବହର ହୋଇଛି ନାଗକେଶ୍ୱର ହିଁ ।
ବନର କେଉଁ ପ୍ରଦେଶ ସଂଗୀତର ଶାଳା
ବ୍ୟୋମଲସିକା ନର୍ତ୍ତନେ ହୋଇଅଛି ମେଳା ।
ବିରଳ ଗନ୍ଧର୍ବ ଗାନେ ଖ୍ୟାତ ସାତସ୍ୱର
ବିତାଳ ହୋଇଣ ରାଗ ଜାତ ମନୋହର ।
ବସନ୍ତ ବାସ କରିଛି କେଦାର ହିଁ ମେଳ
ବିଚଳିତ ସହିଁରେ ସଦା ସୁମରଦଳ ।"

(୭/୭—୧୪)

ସପ୍ତମ ଛାନ୍ଦର ଉକ୍ତ ବନବର୍ଣ୍ଣନାରେ କବିଙ୍କର ଚମତ୍କାର ବର୍ଣ୍ଣନାଶୈଳୀ ସହିତ ଅପୂର୍ବ କଳ୍ପନାବିଳାସ ପ୍ରକଟିତ ହୋଇଛି ।

ଉକ୍ତ ଛାନ୍ଦରେ ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହିତ କାମ୍ୟକ ବନ ଦେଇ ଯାତ୍ରା କରିଥିବା ବିଷୟ ବର୍ଣ୍ଣିତ ହୋଇଛି । ସେହି ସମୟରେ ରାମଚନ୍ଦ୍ରଙ୍କ ପଦସ୍ପର୍ଶରେ ଅଭିଶାପଗ୍ରସ୍ତା ଅହଲ୍ୟା ଶାପମୁକ୍ତ ହୋଇଥିଲେ । ଅହଲ୍ୟାଙ୍କର ଅପୂର୍ବ ଶୋଭା ସନ୍ଦର୍ଶନ କରି ରାମଚନ୍ଦ୍ର ଅତ୍ୟନ୍ତ ମୁଗ୍‌ଧ ହୋଇ ଯାଇଥିଲେ ।

କବିଙ୍କ ବର୍ଣ୍ଣନା ଅନୁଯାୟୀ ଶ୍ରୀରାମଙ୍କ ଦୃଷ୍ଟିରେ କାମ୍ୟକବନ ଓ ଅହଲ୍ୟା ଉଭୟ ଏକ ପ୍ରତିଭାତ ହୋଇଥିଲେ । କବି ଶ୍ଳେଷାତ୍ମକ ରୀତିରେ ଅହଲ୍ୟାଙ୍କ ସୌନ୍ଦର୍ଯ୍ୟ ଓ ବନର ସୌନ୍ଦର୍ଯ୍ୟକୁ ଯେଉଁପରି ଭାବରେ ବର୍ଣ୍ଣନା କରିଛନ୍ତି, ତାହା ଏକାନ୍ତ ଅନବଦ୍ୟ ହୋଇଛି । ଯଥା—

ବିସ୍ମୟ ହୋଇ ଅନାଇଁ ଭାବି ରଘୁପତି
ବନିତାର ବନତାର ପ୍ରଭା ଏକାକୃତି ।
ବନପ୍ରିୟ-ତୋଷଦାୟୀ ରମଣୀ ଏ ଲୋକେ
ବନପ୍ରିୟ-ତୋଷଦାୟୀ ରମଣୀଏ ଲୋକେ ।
ବିରାଜି ବରକନକ କଦମ୍ବ ରୁଚିରେ
ବି-ରାଜି ବର କନକ କଦମ୍ବ ରୁଚିରେ ।
ବାସରେ ଆଚ୍ଛନ୍ନ ଶୋଭା ତୁଙ୍ଗ ପୟୋଧରେ
ବାସରେ ଆଚ୍ଛନ୍ନ ଶୋଭା ତୁଙ୍ଗ ପୟୋଧରେ ।
ବେଣୀ କେଶରେ ରଞ୍ଜନ ସିନ୍ଦୂର ଛଟାରେ
ବେଣୀ କେଶରେ ରଞ୍ଜନ ସିନ୍ଦୂର ଛଟାରେ ।
ବଳା ମଲ୍ଲିକଡି ଫୁଲ ମଣ୍ଡନ ଅତୁଲ
ବଳା ମଲ୍ଲିକଡ଼ି ଫୁଲ ମଣ୍ଡନ ଅତୁଲ ।”

ଏତଦ୍‌ ବ୍ୟତୀତ କାବ୍ୟର ଅନ୍ୟାନ୍ୟ କେତେକ ଛାନ୍ଦରେ ମଧ୍ୟ କବି ପ୍ରସଙ୍ଗକ୍ରମେ ବନଶୋଭା ବର୍ଣ୍ଣନା କରିଛନ୍ତି । ସପ୍ତଦଶ ଛାନ୍ଦରେ ବନ ଓ ଅଯୋଧ୍ୟା ନଗରୀ ମଧ୍ୟରେ ସାମ୍ୟ କଳ୍ପନା ପୂର୍ବକ କବି ଲେଖିଛନ୍ତି ।

"ବକ୍ତବ୍ୟ ରାଘବ ଏଥି ଅନୁରୂପ ପ୍ରଜା ଚତୁରଙ୍ଗ ଛନ୍ତି
ବତ୍ସକ ସହ ସୁରଭି ପୟୋଧର ବ୍ରଜବ୍ରଜ ବିହରନ୍ତି ।
ବୃତ୍ତ ସୁନାଶୀରସ୍ଥ
ବିହରନ୍ତି କେତେ ତନୁବାସ୍ଥ ॥"

(୧୭/୬୨)

ଅଷ୍ଟାଦଶ ଛାନ୍ଦରେ କବି ଚିତ୍ରକୂଟ ପର୍ବତ ନିକଟବର୍ତ୍ତୀ ବନପ୍ରଦେଶକୁ ବିପ୍ରଲବ୍‌ଧା ଓ ଖଣ୍ଡିତା ନାୟିକା ରୂପେ କଳ୍ପନା ପୂର୍ବକ ଯେଉଁ ବର୍ଣ୍ଣନା ପ୍ରଦାନ କରିଛନ୍ତି, ତାହା ଏକାନ୍ତ ଅନବଦ୍ୟ ହୋଇଛି—

"ବନ୍ୟା ଶିଖରର ତହିଁ ବିପ୍ରଲବ୍‌ଧା ପ୍ରାପ୍ତ ହୋଇ
ରକ୍ଷିବାର ପ୍ରବର୍ତ୍ତାଇ ଅଛି ଯେ
ବିଟପ ପ୍ରକମ୍ପକର ସଙ୍ଗତ ସହଚରର
ପୂର ଅଭିମୁଖର ହୋଇଛି ଯେ ॥
ବିରସ ଖଣ୍ଡିତା ସେହି ପିକବାଣୀରେ ଛଳଇ
ପ୍ରବୃତ୍ତି କରଇ ମଦନକୁ ଯେ
ବିସ୍ତରଣକର ସଙ୍ଗ ପୟୋଧର ଫଳ ତୁଙ୍ଗ
ପୂରୁଷ ପ୍ରକାଶି ରଞ୍ଜନକୁ ଯେ ॥" (୧୮।୧,୨)

କବିଙ୍କ ବନବର୍ଣ୍ଣନା ସର୍ବାଧିକ ଚିତ୍ତାକର୍ଷକ ଓ ଅଳଙ୍କାରମଣ୍ଡିତ ହୋଇଛି, ଊନବିଂଶ ଛାନ୍ଦରେ । ଏହି ଛାନ୍ଦର ପ୍ରାରମ୍ଭ ଭାଗରେ କବି ମାଳ ଯମକ ଅଳଙ୍କାର ମାଧ୍ୟମରେ ଚିତ୍ରକୂଟ ବର୍ଣ୍ଣନା ପ୍ରଦାନ କରିଛନ୍ତି—

"ବିସ୍ତରଇ ମାଳ ଯମକରେ କବି ମନେ
ଭୁଲେ ରାମ ରାମ ରାମନେତ୍ରୀ ଯେବେ ବନ ଯେ ।
ବୃହଦ୍‌ଭାନୁ ଭାନୁ ଭାନୁପ୍ରଭାତାପ ନାହିଁ
ବୃନ୍ତ ତମାଳମାଳ ମାଳତୀ ଲତା ଯହିଁ ଯେ ॥
ବହଇ ନିର୍ଝର ଝରଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ।
ବିହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦସୁତ କରେ ରୁତ ଯେ ॥

ଝିଞ୍ଝେ ଘନ ଘନଘନ କୁଶକଣ ଯଥା
ବୃଷ୍ଟି ମଧୁର ମଧୁର ମଧୁରଜ ତଥା ଯେ ।
ବିଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି
ବନ୍ଦୀ ବନ୍ଦୀ ବନିତା କି ପୁଷ୍ପହାସେ ଝଳି ଯେ ।।"

(୧୯/୧—୩)

ଏହା ସଙ୍ଗେ ସଙ୍ଗେ ଉକ୍ତ ଛାନ୍ଦର ଚତୁର୍ଥ ପଦଠାରୁ ଊନବିଂଶ ପଦ ମଧ୍ୟରେ କବି ଶୃଙ୍ଖଳା, ସିଂହାବଲୋକନ ବ୍ୟାଘ୍ରଗତି, ମହାଯମକ, ସର୍ବଯମକ ଓ ଗୋମୂତ୍ର ଛାନ୍ଦ, ଚ୍ଛନ୍ଦିତବିବିଧ ଅଳଙ୍କାର ମାଧ୍ୟମରେ ଚିତ୍ରକୂଟପର୍ବତ ନିକଟବର୍ତ୍ତୀ ବନ-ପ୍ରଦେଶର ଅପୂର୍ବ ଶୋଭାସଂପଦର ଚିତ୍ର ରାମଚନ୍ଦ୍ରଙ୍କ ମୁଖରେ ପ୍ରକାଶ କରାଇଛନ୍ତି । ଏଥିରେ ବନପ୍ରଦେଶର ବିଭିନ୍ନ ବୃକ୍ଷଲତା, ପୁଷ୍ପ ଓ ପଶୁପକ୍ଷୀ ଇତ୍ୟାଦିଙ୍କ ସୌନ୍ଦର୍ଯ୍ୟ ଅତି କମନୀୟ ଭାବରେ ବର୍ଣ୍ଣିତ ହୋଇଛି ।

ବାଇଶଛାନ୍ଦରେ ରାମଚନ୍ଦ୍ରଙ୍କ ମୁଖରେ ବନବାସ ଓ ରାଜଐଶ୍ୱର୍ଯ୍ୟର ବର୍ଣ୍ଣନା ଏକ ସମସ୍ୟୂତରେ ପ୍ରତିପାଦିତ ହୋଇଛି । ସେଥିରେ ବନଭୂମିର ଏକ ମନୋଜ୍ଞ ଚିତ୍ର ଦେଖିବାକୁ ମିଳିଥାଏ । ଯଥା—

"ବିହରି ସଉଦଧ-ସଦନେ ବିହରି
ଶଉଦ୍ଧ ସଦନେ ଧନ
ବେଢ଼ି ଡାକୁଥାନ୍ତି କଞ୍ଚୁକିନ
ବେଢ଼ି ଡାକୁଛନ୍ତି କଞ୍ଚୁକୀନ ।
ବସିଥାଇ ଚନ୍ଦ୍ରାତପ ତଳେ ବସି
ଥାଇ ଚନ୍ଦ୍ରାତପ ତଳେ
ବେଷ୍ଟିତ ଯେ ସହଚରୀକୁଳେ ବେଷ୍ଟି—
ତ ଯେ ସହଚରୀ କୁଳେ ।।
ବୁଲିବା ଥିଲି ଜଗତିରେ ବୁଲିବା
ଜଗତିରେ ହେଲି ଧେନ
ବଳେଇ ଥାଇ ଚିତ୍ରଲେଖା
ବଳେଇ ଥାଇ ଚିତ୍ରଲେଖା ପୁନ ।

ବକ୍ଷିପ୍ତ ଶେଯେ ରଜମାକର ଶେଯେ
ବକ୍ଷିପ୍ତ ରଜନକର
ବୋଧକ ସୁକବ ଗିର ହେଉଥିଲ
ବୋଧକ ଶୁକ-ବ ଗିର ॥
ବାରେ ଙ୍କାରେ ଦେଖି ଭଦ୍ରଉତ୍ସବକୁ
ଭଦ୍ର ଉତ୍ସବକୁ ଦେଖି
ବଶେଷ ଖଦ୍ଦର ଚଳିତ ବଶେଷ
ଖଦ୍ଦର ଚଳତ ସଖି ।
ବଘ୍ନ ନୋହେ ତଥି ଅକ୍ଷ ଲୀଳାଏଥି
ବଘ୍ନ ନୋହେ ଅକ୍ଷଲୀଳା
ବସିଥାନ୍ତ ସାକ୍ଷୀ ସୁଶୀଳା ଅଛନ୍ତ
ଏବେ ତ ଶାଖୀ ସୁଶିଳା ।
ବଶ କରୁଥିଲ ଚିତ୍ତ କ୍ଷୀରପାନ
ବଶ କରେ କ୍ଷୀରପାନ
ବାଳା ଶୁଣୁଥାଇ ଆନକ ସ୍ୱନକୁ
ଶୁଣିମା ଆନକ ସ୍ୱନ ।
ବଧିରେ ଗନ୍ଧର୍ବେ ଗାୟନ କରନ୍ତ
ବୋଧନ୍ତ ସୁମନା ବାସେ
ବଧୀରେ ଗନ୍ଧର୍ବେ ଗାୟନ କରନ୍ତ
ବୋଧନ୍ତ ସୁମନା ବାସେ ॥" (୨୦/୪—୭)

'ବୈଦେହୀଶ ବଳାସ'ରେ ସନ୍ନିବେଶିତ ବନବର୍ଣ୍ଣନାରେ କବଙ୍କର ଅସାଧାରଣ କଳ୍ପନାଶୃଙ୍ଖଳା, ଆଳଙ୍କାରିକ ବଦଗ୍ଧତା, ବର୍ଣ୍ଣନାନୈପୁଣ୍ୟ ଓ ଶବ୍ଦାଡ଼ମ୍ବର ବାହୁଲ୍ୟ ଦେଖିବାକୁ ମିଳେ ।

## ଉପବନ ବର୍ଣ୍ଣନା—

'ବୈଦେହୀଶ ବଳାସ'ରେ ଉପବନ ବର୍ଣ୍ଣନାର ମଧ୍ୟ ଚମତ୍କାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ୩୬ଶ ଛାନ୍ଦରେ ବର୍ଣ୍ଣିତ ଅଶୋକ ବନର ଶୋଭା ଉଲ୍ଲେଖ-ଯୋଗ୍ୟ—

"ବସନ୍ତ ସେ ବସନ୍ତର ସକଳ କାଳରେ
ବିଝନ ନାମେ ଲୋଝନ ମଧୁବନ କରେ ଯେ ।

ବିବିଧ ତରୁଣ ତରୁ ଲତା ଗୁଳ୍ମ ଅତି
ବନ୍ଧ୍ୟା ନାହିଁ ସର୍ବେ ଫଳବନ୍ତ ପୁଷ୍ପବତୀ ଯେ ।

ବିନ୍ଦୁବନ୍ତୁ ଅଂଶୁ ମଗ୍ନୁ ନାହିଁ ପତ୍ର ପୁଞ୍ଜେ
ବିନ୍ଦ୍ରି ବିହଗେ ପଞ୍ଜରସ୍ଥ ଶୋଭା ରଚେ ଯେ ।

ବିଚ୍ଛୁରିତ ଯହିଁ ନାନା ରତ୍ନ ଆଳବାଳ
ବାସର ରଜନୀ ମେଳ ପ୍ରଭା ମହୋଜ୍ଜ୍ୱଳ ଯେ ।

ବାସ୍ତୁସ୍ତୁତି ଧନପତି ସେବେ ଲଙ୍କାନାଥ
ବିନତି ସେ ବନରେ ନନ୍ଦନ ଚୈତ୍ରରଥ ଯେ ।

ବିସ୍ତନ୍ତି ଅମୃତ ତୁଲ୍ୟ ଶୀତଳ ଅମୃତ
ବଢ଼ାନ୍ତି ଗୁରୁ ଜୀମୂତେ ବାଦ କରି ନିତ୍ୟ ଯେ ।

ବିବୃତ ଚନ୍ଦନଗନ୍ଧ ଗନ୍ଧବହ ବହି
ବାଲୁକା ବ୍ୟାଜରେ ହେମ ବାଲୁକା ସିଞ୍ଚଇ ଯେ ।

ବିହନ୍ତି ବାଦ ଆରମ୍ଭ ଗନ୍ଧର୍ବ ପଦକୁ
ବିଞ୍ଚନ୍ତି କୁରଙ୍ଗ ଖତ କରି ତା ମଦକୁ ଯେ ।

ବନପ୍ରିୟ ପଞ୍ଚମ ସ୍ୱରକୁ ଗୀତାରମ୍ଭେ
ବହିକୁ ଗନ୍ଧର୍ବ ପଦ ଛଡ଼ାଇଣ ଆମ୍ଭେ ଯେ ।।"

(୩୬।୧—୩)

## ନଗର ବର୍ଣ୍ଣନା :

କାବ୍ୟର ପ୍ରଥମ ଗ୍ରନ୍ଥରେ ହିଁ ନଗର ବର୍ଣ୍ଣନାର ଚମତ୍କାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । କବି ଲଙ୍କାପୁରୀର ଉଚ୍ଚ ଅଟ୍ଟାଳିକା ଓ ତାହା ଉପରେ ଉଡୁଥିବା ପତାକାର ବର୍ଣ୍ଣନା ପ୍ରଦାନ କରିବାକୁ ଯାଇ ଲେଖିଛନ୍ତି—

"ବୈଜୟନ୍ତୀ ଯାହା ଜଗତି ବୈଜୟନ୍ତ ଚଞ୍ଚଳେ ଖ୍ୟାତ
ମୋତେ ଏ ବାନ୍ଧି ନେବାକୁ ଗର୍ଜ୍ଜକରେ ନଭରେ ଯେ ।

## ନଦୀ ବର୍ଣ୍ଣନା :

'ବୈଦେହୀଶ ବିଳାସ'ର ନବମ ଛାନ୍ଦରେ ଗଙ୍ଗାନଦୀର ବର୍ଣ୍ଣନା ଏବଂ ଦ୍ୱାବିଂଶ ଛାନ୍ଦରେ ଗୋଦାବରୀ ନଦୀର ବର୍ଣ୍ଣନା ଦେଖିବାକୁ ମିଳେ । ନବମ ଛାନ୍ଦରେ ବିଶ୍ୱାମିତ୍ରଙ୍କ ସହିତ ରାମ ଓ ଲକ୍ଷ୍ମଣଙ୍କର ମିଥିଳାଯାତ୍ରା କାଳରେ ଗଙ୍ଗାପାର ହୋଇଥିବା ଘଟଣା ବର୍ଣ୍ଣିତ ହୋଇଛି । ସେହି ଛାନ୍ଦର ପ୍ରଥମ ଦୁଇ ପଦରେ କବି ଗଙ୍ଗାନଦୀର ଦୃଶ୍ୟ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ବିତଳକୁ ଆଳିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରବର ତାପ ସ୍ଫୁରୁଧାରା ସେ
ବହେ ମକରକେତନ ଉଜ୍ଜ୍ୱଳ ରତ୍ନ ସମାନ
ପୂରିତ ହୋଇଛି ପୁଣି ଅଶେଷ ରସେ
ଵନ୍ଦ୍ୟ ହୈମବର୍ଣ୍ଣ ପଦରେ
ବିଷବର୍ଣ୍ଣ ତୋଷ ଦାମ ବେଢା ମତରେ ॥

ବିଷ୍ଣୁ ପଦୀ ବିଷ୍ଣୁପଦ ଈକାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ ॥"

× × × ×

(୯/୧,୨)

ଏଥିରେ ବର୍ଣ୍ଣନା-ଚାତୁରୀ ଓ କଳ୍ପନାଚାତୁରୀ ଅପେକ୍ଷା ଶବ୍ଦପ୍ରୟୋଗ ଚାତୁରୀ ଅଧିକ ପ୍ରକାଶ ପାଇଛି । କବି ଶ୍ଳେଷାତ୍ମକ ଭାବରେ ଏଥିରେ ସ୍ୱର୍ଗଙ୍ଗା ମର୍ତ୍ତ୍ୟଗଙ୍ଗା ଓ ପାତାଳଗଙ୍ଗାର ବର୍ଣ୍ଣନା ପ୍ରଦାନ କରିଛନ୍ତି ।

ଦ୍ୱାବିଂଶଛାନ୍ଦରେ ପଞ୍ଚବଟୀ ଯିବା ମାର୍ଗରେ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଗୋଦାବରୀ ନଦୀ ପାର ହେବାକୁ ପଡ଼ିଥିଲା । ଗୋଦାବରୀ ନଦୀକୁ କବି ଶୁକ୍ଳାଭିସାରଣୀ ନାୟିକା ରୂପେ କଳ୍ପନା କରିଛନ୍ତି—

"ବଳେକ ନଗ୍ନ ଗୋଦାବରୀ
ବାମା କ ଶୁକ୍ଳ ଅଭିସାରୀ ।
ବିଶଦ ଫେନ ପାଟଶାଢ଼ୀ
ବାନ୍ଧି ହୋଇଛି ଫୁଲ ପଡ଼ି ।
ବିଶୁଦ୍ଧ ଦଶା ସ୍ଥିତ ହୋଇ
ଘାଟକରକୁ ଠେକ ଦେଇ ।
ବିଶେଷ କୁମ୍ଭ ଛଟକ
ବିରାଜେ ରଜତ କଟକ ।
ବୁଢ଼ି ଉଠଇ ଚନ୍ଦ୍ର ବସି
ବାସ ଖସି କ ସ୍ତନ ଦିଶି ।
ବିଥର ପବନେ ପୁଲକ
ବିପୁଳ ଉରୁ ଦରଶନ ।
ବିସ୍ତରେ ନୀଡ଼େ ହଂସଶ୍ରେଣୀ
ବାନ୍ଧିଛି ନଃସ୍ୱନ କଙ୍କିଣୀ ।
ବାରିଜ-ନେତ୍ର ଭୃଙ୍ଗଖେଳା
ବିଳସେ କ ଚଞ୍ଚଳ ଡୋଳା ।
ବଶ ଘନରସରେ ଅନ୍ତ
ବୁଡ଼ାଇ କୂଳ ସଦାଗନ୍ତ ।
ବିଟପୀମାନେ ବେନ ପାଶେ
ବିରୋଧ କମ୍ପା କରିବେ ସେ ।
ବିବିଧ ଗୋଷ୍ଠ ଦ୍ୱିଜେ କହି
ବୋଲନ୍ତି ଗଉଡ଼ମୀ ଭୁଇଁ ।
ବହୁତ ରସପୂର୍ଣ୍ଣେ ଭୂଲୁ
ବାର୍ଦ୍ଧିଲବଣୀ ସ୍ନାନ ଭଲୁ ।
× × ×
ବର୍ଜ୍ଜନା କ ଯେନବ ତାର
ବିଭେଦ୍ୟ କାମ ଶରାଳର ।"

(୨୨/୫୩—୭୭)

## ଋତୁ ବର୍ଣ୍ଣନା :

କାବ୍ୟ ମଧ୍ୟରେ ଋତୁ ବର୍ଣ୍ଣନା ନିମିତ୍ତ କବି ଯଥେଷ୍ଟ ଅବକାଶ ସୃଷ୍ଟି କରିଛନ୍ତି । ବିଭିନ୍ନ ଛାନ୍ଦରେ ପ୍ରସଙ୍ଗକ୍ରମେ ବର୍ଷା, ଶରତ, ବସନ୍ତ ପ୍ରଭୃତି ଋତୁର ବର୍ଣ୍ଣନା ପ୍ରଦାନ କରିଛନ୍ତି ।

## ବର୍ଷା ଋତୁ :

ଊନବିଂଶ ଛାନ୍ଦରେ ବିରୋଧାଭାସ ଅଳଙ୍କାର ମାଧ୍ୟମରେ ବର୍ଷାଋତୁର ଚିତ୍ର ଅଙ୍କିତ ହୋଇଛି । ଯଥା—

"ବିରୋଧାଭାସ ପ୍ରକଟାଇ କବିରେ ବରଷା ସମୟ ସଞ୍ଚର
ବ୍ୟାପି ଶୋଭା ଦିଶେ ଭୟଙ୍କର ଦିଶେ ଗଗନେ ଘନାଘନ ହର
ବିସର୍ଜଇ ଯେ, ବଡ଼ ଆନନ୍ଦରେ ଜୀବନ
ବିଧିରେ କାଳିକା ମହିଷସନ୍ତାପ ନାଶି ପ୍ରମୋଦ କରେ ଦାନ ।
ବିଜନିତ କଲା ଶ୍ୱାନ ଅବିରତେ ଚମକ ରଚିଲା ଶଲଭେ
ବିହିତ ଦ୍ୱିଜବ୍ରଜର କଷଣକୁ କରନ୍ତେ ପୁଣି ସେ ଆରମ୍ଭେ
ବୃଦ୍ଧିଶ୍ରବାର, ବାଣାସନ ଯେ କରେ ଜାତ
ବିହିତ ରୋହିତ ସ୍ୱରୂପ ଭରିତ ନାକରେ ରଙ୍ଗ ବିହରିତ ।
ବିଷ୍ଣୁପଦ ଲୀନ ହେବାରେ ଚଞ୍ଚଳା ଜ୍ୟୋତି ପ୍ରକାଶି କଲା ଲୀଳା
ବିଷକଣ୍ଠ ସୁଖେ ବିଳସେ କୁଳଶେ ଗିରିଜା ସଙ୍ଗତ ହୋଇଲା
ବିଲୋକନେ ଯେ, ବିରସ ଯୋଗୀଏ ନୋହିଲେ
ବିକାଶ ପୁଷ୍ପେ ସୁଜାତି ସୁମନାଏ ମଧୁପ ମନକୁ ମୋହିଲେ ।
ବ୍ରହ୍ମପୁତ୍ରକୁ ଭକ୍ଷିବା ଇଚ୍ଛାକଲେ ବିଚ୍ଛେଦୀ ହୋଇଥିଲେ ଜନେ
ବିଶ୍ୱର ପଥିକ ପଦ ବିସରିଲେ ଅତି ଉତ୍ସୁକ ଜାତ ମନେ
ବିହେ ଅଗତି, ବହେ ଯହିଁରେ ସଦାଗତି
ବିଟପ ବିନାଶେ ସୁମନରେ ହସେ ଗଣିକାପନ୍ତି ଦିବାରାତି ।
ବିମଳ କକୁଭ କଦମ୍ବ କକୁଭ କଦମ୍ବ ମିଳନ ରଭସେ
ବିବାଦ ଉଡୁପ ପୁଷ୍କରେ ଉଡୁପ ପୁଷ୍କର ଆଜ ଯେ ନାଶେ
ବନେ କଲେ ଯେ, ବରହୀ ଶିଖାନ୍ତେକ ନୃତ୍ୟ
ବନେ ହେଲେ ଯେ ବରହି ଶିଖା ତହିଁ ସମସ୍ତ ପରକାରେ ହତ ।

× × ×

( ୧୯।୧—୫ )

ଉକ୍ତ ବର୍ଷାଋତୁ ବର୍ଣ୍ଣନାରେ କବିଙ୍କ କଳ୍ପନା-ଶୃଙ୍ଖଳା, ବର୍ଣ୍ଣନାଶୃଙ୍ଖଳା ଓ ଶବ୍ଦ ପ୍ରୟୋଗମୂଳକ କୌଶଳ ପ୍ରକଟିତ ହୋଇଛି ।

## ଶରତଋତୁ ବର୍ଣ୍ଣନା :

ତ୍ରିଂଶ ଛାନ୍ଦରେ ଅତି ସଂକ୍ଷିପ୍ତ ଭାବରେ ଶରତଋତୁର ପ୍ରାକୃତିକ ଶୋଭା ବର୍ଣ୍ଣିତ ହୋଇଛି । କବି ଲେଖିଛନ୍ତି—

"ବରଷାକାଳ ଅନ୍ତକରେ ଶରଦ ବହ୍ନି ଶିବ ଆଡ଼ମ୍ବର
ବରଧୂତ ଘନାଘନ ଖଣ୍ଡିକୃତେ କେଶଗ୍ରା ସବ ଆବର ।
ବର ତରସ୍ୱେ ନବ କନ୍ୟାଳିଙ୍ଗନେ ବଢ଼ାଇ ଶୋଭା ପ୍ରବର
ବରଣୀକୃତ ରଜକ-ପ୍ରଭାବକୁ ନିର୍ମଳକାଶ ଅମ୍ବର ।"

(୩୦।୧, ୨)

## ହେମନ୍ତ ଋତୁ :

ବରହେ ମଳିନ ଶିଖୀଙ୍କ କରାଇ ହେମନ୍ତ ଅନୁଭାବର
ବରଣୀ ଭୁବନ ନିର୍ମଳ ରଚନେ ଭୁଲ ସେ ପଦ୍ମଭବର ॥

(୩୦।୫)

## ବସନ୍ତ ଋତୁ :

କବିଙ୍କ ଋତୁ ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ଭାବରେ ୩୪ଶ ଛାନ୍ଦରେ ପରିବେଷିତ ହୋଇଛି । କବି ଏଥିରେ ନିମ୍ନ ପ୍ରକାରେ ବସନ୍ତ ଋତୁର ବର୍ଣ୍ଣନା ପ୍ରଦାନ କରିଛନ୍ତି—

"ବସନ୍ତ ସମୟ ଅତି ରସମୟ ଋତୁପ ପ୍ରବେଶ ଆସି ଯେ
ବିଦ୍ରୁମ ଛବି ସୁଦ୍ରୁମ ଲତାଭାବ ପଲ୍ଲବେ ସରାଗ ହସି ଯେ
ବିକଶି, ବିକଶି କୁସୁମମାନ ଯେ
ବୋଲାଇଲେ ଜବ ନବ ପୁଷ୍ପବନ୍ତ ଭାବରସ କଲେ ଦାନ ଯେ ॥
ବାସନ୍ତୀ ମଲ୍ଲୀ ନଆଳୀ ଛୁରଅନା ଯହିଁ ହେଲେ ଇଚ୍ଛାବନ୍ତ ଯେ
ବାସକୁ ଆସି ଭ୍ରମରଜାତରେ ରସି ମଧୁମାଦକରେ ମାତି ଯେ
ବସନ୍ତ, ବାତ ବାସ ହରେ ଏକା ଯେ
ବସାଇ ନିଦଏ ପାଶେ ମଧୁପକୁ କେତକୀ ସତୀ ନାୟିକା ଯେ ॥

ବର୍ଯ୍ୟାନାସ୍ତି ପରି ଫୁଲମାଳ ଧରି କେବଳ କିଂଶୁକ ଥାଇ ଯେ
ବେଶ୍ୟାପରି ଚୂତକୋଳେ ପରଭୃତ ବସାଇ ଗୀତ ଗୁଆଇ ହେ
ବିହରି, ବିହ୍ୱ ପୁନ୍ନାଗ ସୁନାସ୍ତି ଯେ
ବିଦେଶ ବାହୁଡ଼ା ସମୟେ ବସନ୍ତେ ପୁଲକ ଯାଇ ସଞ୍ଚାରି ଯେ ।
( ୩୪୧୯—୩ )

ଏହିପରି ଭାବରେ 'ବୈଦେହୀଶ ବିଳାସ' କାବ୍ୟର ବିଭିନ୍ନ ଛାନ୍ଦରେ କବି ଉପେନ୍ଦ୍ରଭଞ୍ଜ ନାୟକନାୟିକାଙ୍କ ଶୋଭା ବର୍ଣ୍ଣନା ଠାରୁ ଆରମ୍ଭ କରି ନାନାବିଧ ପ୍ରାକୃତିକ ଶୋଭାର ଚିତ୍ର ଅଙ୍କନ କରିଛନ୍ତି । ପ୍ରତ୍ୟେକ ବର୍ଣ୍ଣନା କବିଙ୍କର ଅପୂର୍ବ କଳ୍ପନା-ଚାତୁରୀ, ଚମତ୍କାର ବର୍ଣ୍ଣନାକୌଶଳ, ଆଳଙ୍କାରିକ ବିଦଗ୍ଧତା ତଥା ଶାବ୍ଦିକ କଳାକୌଶଳରେ ପରିପୂର୍ଣ୍ଣ ହୋଇଉଠିଛି । ଏହାହିଁ ଭଞ୍ଜୀୟ ବର୍ଣ୍ଣନା-ଚାତୁରୀର ମୂଳ ବୈଶିଷ୍ଟ୍ୟ । ନାୟକନାୟିକାଙ୍କ ଶୋଭା ବର୍ଣ୍ଣନା ଏବଂ ପ୍ରକୃତି ବର୍ଣ୍ଣନା ମୁଖ୍ୟତଃ 'ବୈଦେହୀଶ ବିଳାସ'ର କାବ୍ୟସୌନ୍ଦର୍ଯ୍ୟ ପ୍ରସ୍ଫୁଟିତ କରିଛି ।



# ଆଳଙ୍କାରିକ ବିଦଗ୍ଧତା

କାବ୍ୟ ମଧ୍ୟରେ ଆଳଙ୍କାରିକ ବିଦଗ୍ଧତା ପ୍ରଦର୍ଶନକୁ ମଧ୍ୟଯୁଗୀୟ ସାରସ୍ୱତ ସ୍ରଷ୍ଟାମାନଙ୍କ ପାଣ୍ଡିତ୍ୟର ଅନ୍ୟତମ ବିଶିଷ୍ଟ ଲକ୍ଷଣ ରୂପେ ବିବେଚନା କରାଯାଇଥାଏ । ଏହି ଯୁଗର କବିମାନେ ଅଲୌକିକ କବି ପ୍ରତିଭାର ଅଧିକାରୀ ହେବା ସଙ୍ଗେସଙ୍ଗେ ଅଳଙ୍କାରଶାସ୍ତ୍ରରେ ମଧ୍ୟ ଅସାଧାରଣ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଏହି କାରଣରୁ ସେମାନଙ୍କ ରଚନାବଳୀ ସଂସ୍କୃତ ସାହିତ୍ୟର ବିଖ୍ୟାତ କାବ୍ୟରାଜି ତୁଲ୍ୟ ଆଳଙ୍କାରିକ ବିଦଗ୍ଧତାରେ ପରିପୂର୍ଣ୍ଣ ହୋଇଉଠିଛି ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରିବା କଥା ଯେ, ପ୍ରାଚ୍ୟ ସାହିତ୍ୟରେ ଅଳଙ୍କାରକୁ କାବ୍ୟର ଶୋଭାବିଧାନକାରୀ ଧର୍ମ ରୂପେ ପ୍ରତିପାଦନ କରାଯାଇଛି । ଏ କ୍ଷେତ୍ରରେ ଆଚାର୍ଯ୍ୟ ଦଣ୍ଡୀଙ୍କର ନିମ୍ନ ଉକ୍ତି ଅନୁଧାନ ଯୋଗ୍ୟ ମନେହୁଏ । ସେ ତାହାଙ୍କ 'କାବ୍ୟାଦର୍ଶ'ରେ କହିଛନ୍ତି—

"କାବ୍ୟ ଶୋଭାକରାନ୍ ଧର୍ମାନ୍
ଅଳଙ୍କାରାନ୍ ପ୍ରଚକ୍ଷତେ ॥"

ପୁନଶ୍ଚ, କାବ୍ୟ ମଧ୍ୟରେ ଅଳଙ୍କାରର ଅପରିହାର୍ଯ୍ୟତା ବିଷୟ ପ୍ରତିପାଦନ କରିବାକୁ ଯାଇ 'ଚନ୍ଦ୍ରାଲୋକ' ଅଳଙ୍କାର ଗ୍ରନ୍ଥର ରଚୟିତା ଜୟଦେବ ଲେଖିଛନ୍ତି—

"ଅଙ୍ଗୀକରୋତି ଯଃ କାବ୍ୟଂ ଶବ୍ଦାର୍ଥାବନଳଂକୃତୀ
ଅସୌ ନ ମନ୍ୟତେ କସ୍ମାଦନୁଷ୍ଣ-ମନଳଂକୃତୀ ॥"

ଅର୍ଥାତ୍ ଯେଉଁ କାବ୍ୟକାର ବିନା ଅଳଙ୍କାରରେ ଶବ୍ଦ ଓ ଅର୍ଥ ଯୁକ୍ତ କାବ୍ୟ ରଚନା କରନ୍ତି, ତାହାକୁ କାବ୍ୟ ରୂପେ ଗଣନା କରିବା ଯଥାର୍ଥ ନୁହେଁ । ଜଳକୁ ଅଗ୍ନି ବୋଲି କହିବା ଯାହା, ଅଳଙ୍କାରବିହୀନ ରଚନାକୁ କାବ୍ୟ ବୋଲି ବିବେଚନା କରିବା ତାହା ହିଁ ହେବ । ସଂସ୍କୃତ ଆଳଙ୍କାରିକମାନଙ୍କର ଏହି ମତ ମଧ୍ୟଯୁଗୀୟ କାବ୍ୟସ୍ରଷ୍ଟାମାନଙ୍କଦ୍ୱାରା ଯଥାର୍ଥ ବିବେଚିତ ହୋଇଥିଲା । ଏହି

କାରଣରୁ ସେମାନେ କାବ୍ୟ ମଧ୍ୟରେ ଆଳଙ୍କାରିକ ବୈଚିତ୍ର୍ୟ ପ୍ରତିପାଦନକୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ପ୍ରଦାନ କରିଥିଲେ । ସୁତରାଂ, ରୀତିଯୁଗୀୟ କାବ୍ୟସୁନ୍ଦରୀ ବିଭିନ୍ନ ଅଳଙ୍କାରରେ ଅଭିମଣ୍ଡିତା ହୋଇଥିବା ଦେଖାଯାଏ ।

ଏହି ଯୁଗର କବିମାନଙ୍କ ଆଳଙ୍କାରିକ ବିଦଗ୍‌ଧତା ସମ୍ପର୍କରେ ବିଚାର କରିବାକୁ ଗଲାବେଳେ ପ୍ରଧାନତଃ ଦୁଇଗୋଟି ବିଷୟ ପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ପ୍ରଥମତଃ ଅଳଙ୍କାର ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ବିଷୟ ବିନ୍ୟାସ ଏବଂ ଦ୍ୱିତୀୟତଃ କାବ୍ୟ ମଧ୍ୟରେ ବିଭିନ୍ନ ଶବ୍ଦାଳଙ୍କାର, ଅର୍ଥାଳଙ୍କାର ଓ ଚିତ୍ରାଳଙ୍କାରର ସମାବେଶ । ଏହି ଉଭୟ ବିଷୟ ନିମ୍ନରେ ଆଲୋଚିତ ହେଲା ।

## ଅଳଙ୍କାରଶାସ୍ତ୍ରରେ ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ବିଷୟ ବିନ୍ୟାସ :

କାବ୍ୟ ଓ ମହାକାବ୍ୟରେ କେଉଁକେଉଁ ବିଷୟ କିପରି କ୍ରମରେ ବର୍ଣ୍ଣିତ ହେବ, ପ୍ରତ୍ୟେକ ବର୍ଣ୍ଣନାପାଇଁ କେଉଁକେଉଁ ଉପାଦାନ ଆବଶ୍ୟକ, ତାହା ପ୍ରାଚ୍ୟ ଅଳଙ୍କାରଶାସ୍ତ୍ରକାରଗଣ ନିର୍ଦ୍ଦେଶ କରିଯାଇଛନ୍ତି । ଏ ପ୍ରସଙ୍ଗରେ ବିଖ୍ୟାତ ଅଳଙ୍କାରଶାସ୍ତ୍ରବିତ୍ ବିଶ୍ୱନାଥ କବିରାଜଙ୍କ ଉକ୍ତି ବିଶେଷ ଅନୁଧ୍ୟାନଯୋଗ୍ୟ । ସେ ତାହାଙ୍କ 'ସାହିତ୍ୟ ଦର୍ପଣ' ଗ୍ରନ୍ଥରେ ମହାକାବ୍ୟର ଲକ୍ଷଣ ସଂପର୍କରେ ଲେଖିଛନ୍ତି—

> "ସର୍ଗବନ୍ଧୋ ମହାକାବ୍ୟଂ ତତ୍ରୈକୋ ନାୟକଃ ସୁରଃ
> ସଦ୍‌ବଂଶଃ କ୍ଷତ୍ରିୟୋ ବାପି ଧୀରୋଦାତ୍ତ ଗୁଣାନ୍ୱିତଃ ।
> ଏକବଂଶଭବା ଭୂପାଃ କୁଳଜା ବହବୋଽପିବା
> ଶୃଙ୍ଗାର ବୀର ଶାନ୍ତାନାମେକୋଽଙ୍ଗୀ ରସ ଇଷ୍ୟତେ ।
> ଅଙ୍ଗାନି ସର୍ବେଽପି ରସାଃ ସର୍ବେ ନାଟକସନ୍ଧୟଃ
> ଇତିହାସୋଦ୍‌ଭବଂ ମନ୍ୟଦ୍ ବାବୃତ୍ତ ସଜ୍ଜନାଶ୍ରୟମ୍ ।
> ଚତ୍ୱାରସ୍ତସ୍ୟ ବର୍ଗାଃସ୍ୟୁସ୍ତେଷ୍ୱେକଞ୍ଚ ଫଳଂ ଭବେତ୍
> ଆଦୌ ନମସ୍କ୍ରିୟାଶୀର୍ବା ବସ୍ତୁନିର୍ଦ୍ଦେଶ ଏବ ବା ।
> କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଂ ଚ ଗୁଣକୀର୍ତ୍ତନମ୍
> ଏକବୃତ୍ତମୟୈଃ ପଦ୍ୟୈରବସାନେଽନ୍ୟ ବୃତ୍ତକୈଃ ।

ନାତି ସ୍ୱଳ୍ପା ନାତି ଦୀର୍ଘା ସର୍ଗା ଅଷ୍ଟାଧିକା ଇହ
ନାନା ବୃତ୍ତମୟଃ କ୍ୱାପି ସର୍ଗଃ କଶ୍ଚନ ଦୃଶ୍ୟତେ ।

ସର୍ଗାନ୍ତେ ଭାବିସର୍ଗସ୍ୟ କଥାୟାଃ ସୂଚନଂ ଭବେତ୍
ସନ୍ଧ୍ୟା-ସୂର୍ଯ୍ୟେନ୍ଦୁରଜନୀ-ପ୍ରଦୋଷଧ୍ୱାନ୍ତବାସରାଃ ।

ପ୍ରାତର୍ମଧ୍ୟାହ୍ନ ମୃଗୟା ଶୈଳର୍ତ୍ତୁ ବନସାଗରାଃ
ସମ୍ଭୋଗ ବିପ୍ରଲମ୍ଭୌଚ ମୁନି ସ୍ୱର୍ଗପୁରାଧ୍ୱରାଃ ।

ରଣ ପ୍ରୟାଣୋପଯମ ମନ୍ତ୍ର ପୁତ୍ରୋଦୟାଦୟଃ
ବର୍ଣ୍ଣନୀୟା ଯଥାଯୋଗଂ ସାଙ୍ଗୋପାଙ୍ଗା ଅମୀ ଇହ ।

କବେ ର୍ବୃତ୍ତସ୍ୟ ବାନାମ୍ନା ନାୟକସ୍ୟେତରସ୍ୟ ବା
ନାମାସ୍ୟ ସର୍ଗୋପାଦେୟକଥୟା ସର୍ଗନାମ ତୁ ।"

ଅର୍ଥାତ୍, ମହାକାବ୍ୟ ବିଭିନ୍ନ ସର୍ଗରେ ରଚିତ ହେବା ଆବଶ୍ୟକ । ଏହାର ସର୍ଗସଂଖ୍ୟା ଆଠରୁ ଅଧିକ ହେବା ପ୍ରୟୋଜନ । ବିଭିନ୍ନ ସର୍ଗ ଭିନ୍ନଭିନ୍ନ ବୃତ୍ତରେ ରଚିତ ହେବ । ସର୍ଗଗୁଡ଼ିକ ଅତି ଦୀର୍ଘ କିମ୍ବା ଅତି କ୍ଷୁଦ୍ର ହେବନାହିଁ । ଗୋଟିଏ ସର୍ଗର ଶେଷରେ ପରବର୍ତ୍ତୀ ସର୍ଗର କଥା ସୂଚିତ ହେବ । କୌଣସି ଦେବତା ଅଥବା ଧୀରୋଦାତ୍ତ ଗୁଣସମ୍ପନ୍ନ କୁଳୀନ କ୍ଷତ୍ରିୟ ବା ରାଜା ଏହାର ନାୟକ ହେବେ । ଐତିହାସିକ ବା ସଜ୍ଜନ କଥାକୁ ନେଇ ନାଟକ ରଚିତ ହେବା ଉଚିତ । ଶୃଙ୍ଗାର, ବୀର ଓ ଶାନ୍ତରସ ମଧ୍ୟରୁ ଗୋଟିଏ ରସ ଅଙ୍ଗୀ ଏବଂ ଅନ୍ୟ ରସ ତାହାର ଅଙ୍ଗ ରୂପେ ପରିବେଷିତ ହେବ । କାବ୍ୟାରମ୍ଭରେ ମଙ୍ଗଳାଚରଣ ରହିବ । ଏଥିରେ ନମସ୍କ୍ରିୟା, ଆଶୀର୍ବାଦ, ବସ୍ତୁନିର୍ଦ୍ଦେଶ ଏବଂ କେଉଁଠାରେ କେଉଁଠାରେ ସାଧୁସ୍ତୁତି ଓ ଖଳନିନ୍ଦା ପ୍ରତିପାଦିତ ହୋଇଥିବ । ଏଥି ମଧ୍ୟରେ ସନ୍ଧ୍ୟା, ସୂର୍ଯ୍ୟ, ଚନ୍ଦ୍ର, ରାତ୍ର, ସାୟଂସନ୍ଧ୍ୟା, ଅନ୍ଧକାର, ଦିବସ, ପ୍ରାତଃକାଳ, ମଧ୍ୟାହ୍ନ, ମୃଗୟା, ଶୈଳ, ଋତୁ, ଅରଣ୍ୟ, ସାଗର, ସମ୍ଭୋଗ, ବିପ୍ରଲମ୍ଭ ଶୃଙ୍ଗାର, ଋଷି, ସ୍ୱର୍ଗ, ନଗର, ମାର୍ଗ, ଯୁଦ୍ଧଯାତ୍ରା, ବିବାହ, ମନ୍ତ୍ର, ପୁତ୍ରଜନ୍ମ ଯଥାସମ୍ଭବ ଏହି ସମସ୍ତ ବିଷୟ ସଂକ୍ଷିପ୍ତ ଅଥବା ବିସ୍ତୃତ ଭାବରେ ଏଥିରେ ବର୍ଣ୍ଣନା କରାଯାଇପାରେ । ମହାକାବ୍ୟର ନାମକରଣ କବିର ନାମ, ବର୍ଣ୍ଣିତ ବିଷୟ ଅଥବା ନାୟକର ନାମାନୁସାରେ ହେବା ଉଚିତ । ସର୍ଗର ନାମ ତାହାର ଉପାଦେୟ କଥା ଅନୁସାରେ ହେବ । ମହାକାବ୍ୟ ଧର୍ମ,

ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ଫଳପ୍ରାପ୍ତି ଦିଗରେ ସହାୟକ ହେବା ଉଚିତ ।

ମହାକାବ୍ୟର ଉକ୍ତ ସମସ୍ତ ଲକ୍ଷଣ ପ୍ରତି ଦୃଷ୍ଟିଦେଇ ବିଚାର କଲେ ସ୍ପଷ୍ଟ ଜଣାଯାଏ ଯେ, କବି ଉପେନ୍ଦ୍ରଭଞ୍ଜ 'ବୈଦେହୀଶବିଳାସ' ରଚନା କରିବା ସମୟରେ ଉପର୍ଯ୍ୟୁକ୍ତ ସମସ୍ତ ନିୟମର ଅନୁସାରୀ ହୋଇଛନ୍ତି । ଏହା ସମୁଦାୟ ୫୨ ଛାନ୍ଦରେ ରଚିତ । ପ୍ରତ୍ୟେକ ଛାନ୍ଦ ବିଭିନ୍ନ ବୃତ୍ତ ବା ଛନ୍ଦରେ ରଚିତ । ଏହାର ନାୟକ ହେଉଛନ୍ତି ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର । ସେ ଏକ ପକ୍ଷରେ ମନୁଷ୍ୟ ଦେହଧାରୀ ଭଗବାନ ଓ ଅନ୍ୟ ପକ୍ଷରେ ସୂର୍ଯ୍ୟବଂଶର ରାଜକୁମାର । ତାହାଙ୍କୁ ଧୀରୋଦାତ୍ତ ନାୟକର ସମସ୍ତ ଗୁଣରେ କବି ମଣ୍ଡନ କରାଇଛନ୍ତି । କାବ୍ୟଟିର ବିଷୟବସ୍ତୁ ମହାକବି ବାଲ୍ମୀକିଙ୍କ ପ୍ରଣୀତ ବିଖ୍ୟାତ ରାମାୟଣ ମହାଗ୍ରନ୍ଥରୁ ଗୃହୀତ ହୋଇଛି ଏବଂ ଏହା ରାମଚରିତ ମୂଳକ ବିଷୟ ହୋଇଥିବାରୁ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚତୁର୍ବର୍ଗ ଫଳପ୍ରାପ୍ତିର ଅବଲମ୍ବନ ହୋଇଛି । କାବ୍ୟର ଆରମ୍ଭରେ ମଙ୍ଗଳାଚରଣର ନିୟମ ଅନୁଯାୟୀ ସ୍ୱ ଇଷ୍ଟ-ଦେବଙ୍କର ସ୍ତୁତି ଓ ବସ୍ତୁନିର୍ଦ୍ଦେଶ ସମାବେଶିତ ହୋଇଛି । ଏତଦ୍‌ବ୍ୟତୀତ ସମଗ୍ର କାବ୍ୟଟିରେ ପ୍ରସଙ୍ଗକ୍ରମେ ପ୍ରଭାତ, ସନ୍ଧ୍ୟା, ରାତ୍ରି, ମଧ୍ୟାହ୍ନ, ମୃଗୟା, ଋତୁ, ବନ, ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାର, ମୁନି, ସ୍ୱର୍ଗ, ଯଜ୍ଞ, ଯୁଦ୍ଧଯାତ୍ରା, ବିବାହ, ମନ୍ତ୍ରଣା ଓ ପୁତ୍ରଲାଭ ଇତ୍ୟାଦି ବିଷୟ କବି ବର୍ଣ୍ଣନା କରିଛନ୍ତି । ପ୍ରତ୍ୟେକ ବର୍ଣ୍ଣନାରେ କବି ଅଳଙ୍କାର ଶାସ୍ତ୍ରକୁ ଅନୁସରଣ କରିଛନ୍ତି । ଅତଏବ କବିଙ୍କ ଆଳଙ୍କାରିକତାର ଏହି ଦିଗଟି କାବ୍ୟ ମଧ୍ୟରେ ସଂପୂର୍ଣ୍ଣ ଭାବରେ ଉନ୍ମୋଚିତ ହୋଇଛି ।

## ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସମାବେଶ :

'ବୈଦେହୀଶ ବିଳାସ' କାବ୍ୟର ବିଭିନ୍ନ ଛାନ୍ଦରେ କବି ବହୁ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସମାବେଶ ଘଟାଇଛନ୍ତି । ତନ୍ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

### ୧-ଅନୁପ୍ରାସ—

ଅନୁପ୍ରାସ ଅଳଙ୍କାର ଦୃଷ୍ଟିରୁ କାବ୍ୟର ପ୍ରଥମ ଓ ନବମ ଛାନ୍ଦ ବିଶେଷ ଉଲ୍ଲେଖ ଯୋଗ୍ୟ । ଅନ୍ୟାନ୍ୟ ଛାନ୍ଦରେ ଅନୁପ୍ରାସ ରହିଥିଲେ ମଧ୍ୟ ଏହି ଦୁଇଟି ଛାନ୍ଦର ପ୍ରତ୍ୟେକ ପଦରେ ଅନୁପ୍ରାସର ବହୁଳ ସମାବେଶ ଦେଖିବାକୁ ମିଳେ ।

(କ) ବିଂଶତିଭୁଜ ଦଶାନନରେ      କି ଦଶା ଦେବ ଦେବକନ୍ୟାରେ
ନର ନାଗରେ ଧରଣୀ ଅରେ ହୋଇ ପତନ ଯେ
ବିକଟରୂପ ପ୍ରକଟ ଅତି      ରକତ ଚର୍ବି ବ୍ୟକତ କାନ୍ତି
ଘଟଣ ଘଟ ସଦୃଶ ଶ୍ରୁତି ଭୈରବସ୍ୱନ ଯେ
ବଧିରତା ନିକଟ ଶୁଣିଲା ଜନ ଯେ
ବିଗତ ଯେ ଖିଷଣେ ତନୀନନ୍ଦନ ଯେ
ବୋଲାଇଲେ ସେ ଦଶବଦନ      କୁମ୍ଭ ଶ୍ରବଣ ଯେ ବିଭୀଷଣ
ନନ୍ଦିନୀ ସୂର୍ପଣଖାର ନଖ ସୂର୍ପ ସମାନ ଯେ ॥ (୧/୮)

(ଖ) ବଧିର ନୁହଇ କିର      ବୋଇଲା ତହୁଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଲି ପଡ଼ୁ ତୋ ଚରଣୁ      ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନଦେବି ପାଦ ନ ଧୋଇ ନାବ ॥ (୯/୩)

**୨। ଯମକ—**

'ବୈଦେହୀଶ ବିଳାସ'ରେ ଆଦ୍ୟ ଯମକ, ମଧ୍ୟ ଯମକ, ପ୍ରାନ୍ତ ଯମକ, ଆଦ୍ୟପ୍ରାନ୍ତ ଯମକ, ମହାଯମକ, ସର୍ବଯମକ ଓ ମାଳଯମକର ବହୁ ଦୃଷ୍ଟାନ୍ତ ରହିଛି । ତନ୍ମଧ୍ୟରୁ କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା—

**ଆଦ୍ୟ ଯମକ—**

ବିଦଗଧ ଯଜ୍ଞକର୍ମରେ ସର୍ବଦାରେ ସେ ଅଛି
ବିଦଗ୍ଧ ଶତ୍ରୁ ପ୍ରାପତ ନୋହିବାରେ ଦୁହିଁଙ୍କି ॥
ବୃଷାଳ ମଖଶାଳକୁ ତେ ଦିନେ ଚଷୁ ଅବନୀ
ବୃଷାଶାପୁଁ ମୁକ୍ତ ପାଇଣ ମେନା ନାମେ କାମିନୀ ॥

ଏତଦ୍ ବ୍ୟତୀତ ୨ୟ ଛାନ୍ଦର କେତେକ ପଦ, ସମଗ୍ର ତୃତୀୟ ଛାନ୍ଦ, ଚତୁର୍ଥ ଛାନ୍ଦର କେତେକ ପଦ ଏବଂ ଊନବିଂଶ ଛାନ୍ଦର କେତେକ ପଦ ଆଦ୍ୟ-ଯମକର ଅନ୍ତର୍ଭୁକ୍ତ ।

**ପ୍ରାନ୍ତ ଯମକ—**

ବିଦ୍ୟ ପ୍ରାନ୍ତେ ଯମକେ କହିବା ନେତ୍ର ଦାନ
ବନ୍ଧୁ ଚିହ୍ନ ରଖି ମାତ୍ର କଲେ ନେତ୍ର ଦାନ ଯେ ।
ବଢ଼ିଲା ତୋଷ ଅଶେଷ ଲଭି ଖରେ ଗନ୍ଧ
ତୃଷାଯୁତ ଝଗବର୍ଗ କଲେ ଝ-ରେ ଗଣ୍ଡ ଯେ ॥
ବଶିଷ୍ଟରେ ଅନୁକୂଳ ପୁଂସ ଘନବନ୍ଧୁ
ବିନୋଦରେ ସଙ୍ଗେ ଘେନି ହରେ ଘନବନ୍ଧୁ ଯେ ।
ବଶ ଧ୍ୟାନ ମାନସେ ଯାର ସେ ସଖି ପଦେ
ବୋଲେ ଭଞ୍ଜ ଉପଇନ୍ଦ୍ର ବେଣୁବଂଶ ପଦେ ଯେ ॥

(୧୯।୩୯, ୪୦)

**ଆଦ୍ୟପ୍ରାନ୍ତ ଯମକ—**

ବଳୀ ବଳପୁଷ୍ଟ ଯାମେ ଆହାର ଲୋଭିତେ
ବଳ ବଳଶୋଭିନୀ ତାହାର ନିବାରିତେ ଯେ ।
ବାସ ବାସଅଙ୍ଗୀର ଖସିଲା ଘାସ୍ତ ସ୍ତନ
ବିମ୍ବ ବିମ୍ବ ଅରୁଣର ଯେ ଓଷ୍ଠ ନନ୍ଦନ ଯେ ॥

(୧୯।୩୭)

**ମଧ୍ୟ ଯମକ—**

ବଳମୁଖ ମୁଖର ନାଦରେ ଯାଉ ପାଶେ
ବେଗେ କରେ କରେ କୋଳ ଧାରୁମଣି ତ୍ରାସେ ଯେ ।
ବହେ ସେ ବିଚିତ୍ର ଚିତ୍ର ଲାଗି ଶୋଭା ପାଇ
ବାରିଦେ କି ଅରୁଣ ଅରୁଣଗଲା ଉଇଁ ଯେ ॥

ବିଚକ୍ଷଣ କାନ୍ତ କାନ୍ତ ବଚନ ପ୍ରକାଶି
ବାଳା ପୁଂସ ଗୀତ ରାଗ ରାଗ ଛଳେ ଦଶି ଯେ
ବାରେ ବସି ମଜ୍ଜନ ଉନ୍ମତ୍ତପ୍ରମା ବାଳା
ବିସ୍ତୀର୍ଣ୍ଣ ମଧ୍ୟ ଯମକ ଏ ଯୋଗେ ହୋଇଲା ଯେ ॥

(୧୯/୩୦, ୩୧)

## ମହା ଯମକ—

ବସନ୍ତ ବସନ ବଂଶ ମହାଯମକରେ
ବସନ୍ତ ବସନ୍ତ ପକ୍ଷୀ ବସନ୍ତଦ୍ରୁମରେ ଯେ
ବାଥୀ ବାଥୀ ଶୋଭାବହି କୁମୁଦ କୁମୁଦ
ବିଲୋକ ହାସ ପ୍ରକାଶି କୁମୁଦକୁ ମୁଦ ଯେ ।।
ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରୀ କେଶରୀ ଯେ,
ବିଦାରି ଯାଇଛି କରି କେଶରୀ କେଶରୀ
ବିହ୍ୱଳ ହୋଇଛି ମାଝ କେଶରୀ କେଶରୀ ଯେ ।।

(୧୯/୧୩, ୧୪)

## ମାଳ ଯମକ—

ବିସ୍ତରଇ ମାଳ ଯମକରେ କବି ମନେ
ବୁଲେ ରାମ ରାମ ରାମନେତ୍ରୀ ଘେନ ବନେ ଯେ
ବୃହଦ୍‌ଭାନୁ ଭାନୁ ଭାନୁପ୍ରଭା ତାପ ନାହିଁ
ବୃତ ତମାଳମାଳ ମାଳତୀ ଲତା ଯହିଁ ଯେ ।।
ବହଇ ନର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ
ବହ୍ନି ଚନ୍ଦ୍ର ଚନ୍ଦ୍ର ତନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦସୁତନ୍ତ୍ରୀକରେ ରୁତ ଯେ ।।
ବିଞ୍ଚେ ଘନ ଘନ ଘନ କୁଶକଣ ଯଥା
ବୃଷ୍ଟି ମଧୁର ମଧୁର ମଧୁରଜେ ତଥା ଯେ
ବିଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି
ବିମ୍ବ ବିମ୍ବ ବନିତା କି ପୁଷ୍ପହାସେ ଝଳି ଯେ ।।

(୧୯।୧—୩)

ସ୍ତବ ଯମକ—

(କ) ବନପ୍ରିୟ-ତୋଷଦାମା ରମଣୀ ଏ ଲୋକେ
ବନପ୍ରିୟ-ତୋଷ ଦାମା ରମଣୀଏ ଲୋକେ ॥
ବିରାଜ ବରକନକ କଦମ୍ବ ରୁଚିରେ
ବି-ରାଜ ବର କନକ କଦମ୍ବ ରୁଚିରେ ॥
ବାସରେ ଆଛନ୍ନ ଶୋଭା ତୁଙ୍ଗ ପୟୋଧରେ
ବାସରେ ଆଛନ୍ନ ଶୋଭା ତୁଙ୍ଗ ପୟୋଧରେ ॥
ବେଣୀ କେଶରେ ରଞ୍ଜନ ସିନ୍ଦୂର ଛଟାରେ
ବେଣୀ କେଶରେ ରଞ୍ଜନ ସିନ୍ଦୂର ଛଟାରେ ॥
ବଳା ମଲ୍ଲି କଢ଼ି ଫୁଲ ମଣ୍ଡନ ଅତୁଲ
ବଳା ମଲ୍ଲି କଢ଼ି ଫୁଲ ମଣ୍ଡନ ଅତୁଲ ॥

(୭/୩୪—୩୮)

(ଖ) ବାନାକୁ ହସ୍ତ ଦେଖାଇ ପୃଚ୍ଛି ରଘୁବର
ବାକ୍ୟ ସମ୍ବୋଧନେ ଗୁମ୍ଫି ହବିଯମକର ଯେ
ବଇଦେହି ସୁମନା ସୁମନା ଏ ସୁରଭି
ବଇଦେହି ସୁମନା ସୁମନା ଏ ସୁରଭି ଯେ ॥
ବନ୍ଦ୍ୟ ଲୋକରେ ପ୍ରିୟକ ମାଧବୀ ସଙ୍ଘାତ
ବନ୍ଦ୍ୟ ଲୋକରେ ପ୍ରିୟକ ମାଧବୀ ସଙ୍ଘାତ ଯେ
ବାଳିକା କନକ କାନ୍ତି କନକ କନକ
ବାଳକା କନକ କାନ୍ତି କନକ କନକ ଯେ ॥
ବଳାସିନି ଏ ସାରଙ୍ଗ ସାର ସଚଙ୍କରେ
ବଳାସିନି ଏ ସାରଙ୍ଗ ସାରସ ଚଙ୍କରେ ଯେ
ବରାହବରେ ପ୍ରକାଶମାନ ଯେ ଦନ୍ତରେ
ବରାହବରେ ପ୍ରାକଶମାନ ଯେ ଦନ୍ତରେ ଯେ ॥

(୧୯।୧୫—୧୭)

## ୩ । ଶ୍ଳେଷାଳଙ୍କାର—

(କ) ବନ୍ଦଇ ଧାନବାନ୍ଧବ ହରି          ଯେ ତମଚନ୍ଦ୍ର ଖଣ୍ଡନକାରୀ
ସଦା କମଳାନନ୍ଦବସ୍ତାରୀ ସ୍ୱଭାବେ ଇନ ଯେ
ବିଭୁ ଅନନ୍ତଅଙ୍କବିହାରୀ          କର ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ତୂଳେ ସୁମନ ଯେ
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ
ବଇକୁଣ୍ଠ ପଷକ-ଲୋକ ତୋଷିତ ଯେ
ବିକାଶ ଅଖଣ୍ଡିତମଣ୍ଡଳେ          ସିଂହ ଭାବରେ କ୍ରୀଡ଼ିତ କାଳେ
ଭବେ ତରଣି ହୋଇ ମଞ୍ଜୁଳେ ଗିର ଉଦିତ ଯେ ॥
ବିହିତ ଯେହୁ ରୋହିତ ମୂର୍ତ୍ତି          ଶ୍ରୁତିରଞ୍ଜନକାରକ ଅତି
ହଂସ ହୋଇଣ ଯାହା ପ୍ରଶସ୍ତି ଅଛୁ ପ୍ରବର୍ତ୍ତି ଯେ ।
ବିରାଜରୂପ ଯାହାର ପୁଣି          ଦ୍ୱିଜଚନ୍ଦ୍ରଯାଦର୍ଶନ ଗୁଣି
ଆମ୍ର-ଭୂପର ସଂସାରେ ଭଣି କି ଶୁଭ୍ର କୀର୍ତ୍ତିଯେ
ବୁଧଜନକ ଶିରେଭୂଷଣ ଯେହ୍ନ ଯେ
ବିନୟରୁ ବଚନ ଆନ ନ କହ୍ନ ଯେ
ବଳଯାହାକୁ ସର୍ବଦା ନାହିଁ          ଦ୍ୱୀପ ପ୍ରସନ୍ନ କରତ! ସେହ୍ନି
ପୁନତ ଧର୍ମସ୍ୱରୂପ ଗ୍ରାହୀ କି ସ୍ତୁତି ତହିଁ ଯେ ।”
(୧/୧,୨)

(ଖ) ବାବୁ ନାକ-ଶିଖ ଦାନ ଯୋଗ୍ୟ ଯୋଷାକୁ
ବିହର କାନ ନକର ଆଲିଙ୍ଗନକୁ ।
ବଇଦେହୀ ଦାସୀ ଏ କି ଘେନ ହୋଇବ
ବିଧିରେ ଇନ୍ଦ୍ର ପ୍ରଶଂସା ତୁମ୍ଭେ ପାଇବ ।
(୨୩/୫୮,୫୯)

## ୪ । ଉପମା :

(କ) ବ୍ରହ୍ମାଙ୍କୁ ଇନ୍ଦ୍ର ସ୍ତୁତିକଲା ପରି
ବିନୟୀ ଦଶରଥ ଦଣ୍ଡଧାରୀ
ବେଦାନ୍ତକାରୀ ସାବଶୀ ସେବନ
ବିଷଦ ନେନ ସୁଖଦ ଦ୍ୱିଜନ । (୭/୧୨)

(ଖ) ବୃକ୍ଷତଳେ ତପିପନ୍ତି ତହିଁ ଏକାକୃତି
ବଳ୍କଳ ପିଧାନ କରି ଜଟା ଧରିଛନ୍ତି । (୭/୨)

(ଗ) ବୋଇଲେ ସୀତା ଶୀତାଂଶୁମୁଖୀ ଏକ ଦିନେ ଅତି ଦୀନକ୍ଷୀ ହୋଇ
ବିହି ବିହିଲା ବନବ୍ୟାଘ୍ର ବାସରେ ନୃପତି ହେବାର ଯାଇ
ବିଳସାଇ ଯଥା ଅଳକା ତେଜାଇ ଈଶ୍ୱରଙ୍କୁ ଶମଶାନେ
ବିଷ୍ଣୁଙ୍କୁ ରତନ ପଲଙ୍କ ଛଡ଼ାଇ ଜଡ଼ାଇ ସର୍ପ ଶୟନେ । (୨୦/୧)

## ୫ । ଉତ୍ପ୍ରେକ୍ଷା :

ବିନାଶୁ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର
ବୃକ୍ଷ ପାଟଳୀରୁ ଫୁଲଝାଡ଼ି ଉଡ଼ି ଯାଉଛି କି କାର
ବହେ ନେତ୍ରୁ ଅଶ୍ରୁ ପତ୍ରୁ କି ପଡୁଛି ପଡ଼ିଲା ତୁଷାର
ବାରବାୟୁରେ ଧୈର୍ଯ୍ୟମୂଳ ଉପୁଡ଼ି ପଡିଲା ପ୍ରକାର ।

(୨୪/୧)

## ୬ । ବିରୋଧାଭାସ :

ବିପର୍ଯ୍ୟୟ ପଲାଶୀରେ ପଲାଶୀରେ ଘନ
ବିନୀତପ ପ୍ରଭା ତପପ୍ରଭାରେ ପ୍ରଧାନ ।
ବିଭୂତି ବାଞ୍ଛିକ ନୋହି ବିଭୂତି ବାଞ୍ଛିକ
ବର୍ଜିତ କାମ ଉଦୟୁ କାମଉଦୟୁକ ।

(୪/୧୮,୧୯)

## ୭ । ବ୍ୟତିରେକ :

ବିହୁଁ ସମୁଦ୍ରମନ୍ଥନୁ ଚନ୍ଦ୍ର ଜନମ ଯେଉଁ କାଳେ
ବିହୀନ କ୍ଷୀଣ କଳଙ୍କେ ଜାଣ ନର୍ମଳ ହୋଇଥିଲେ
ବଦନେ ଜାନକୀର ସମାନ ମନ ଜାଣିଛି ବିହି
ବିମ୍ବବେଷ୍ଟନ ନୋହିଲା ବର୍ଣ୍ଣିଭାବେଟି କାଟି ଦେଇ ।

(୮/୬)

ଅଷ୍ଟମ ଓ ଦଶମ ଛାନ୍ଦରେ 'ବ୍ୟତିରେକ'ର ବହୁ ଦୃଷ୍ଟାନ୍ତ ରହିଛି ।

## ୮ । ଶୃଙ୍ଖଳା :

ବୋଧେ ଶୃଙ୍ଖଳାରେ ରଘୁନାଥ ସୀତାମନ୍ତ
ବଚନ ଚନ୍ଦ୍ରକୃନ୍ତ ଯେ କୃନ୍ତଳେ ବ୍ରତତି
ବ୍ରତତି ତତି ଜୟନ୍ତୀ ଅନ୍ତରେ ବାସନ୍ତୀ
ବାସନ୍ତୀ ସନ୍ତତେ ଫୁଲ୍ଲ ଫୁଲ୍ଲରେ ପ୍ରବର୍ତ୍ତି ।
ବର୍ତ୍ତିକ ତକ ଆଳି ଆଳି ଯେ ବହିରତ
ବହିରତ ମାନମାନ ଶୁକ ସୁକବତ
ବତର ତରଳ ନେଇ ନେଇ ସୁବାସିନୀ
ବାସିନୀ ସୁଜାତି ଜାଣି ସ୍ୱଭାବ ଭାବିନୀ ।
ବନସ୍ପତି ସ୍ୱତ ଶୋଭିତ ଖ୍ୟାତ ବୈଭ୍ରାଜ
ବୈଭ୍ରାଜ ସୁରସାରସା କରକର ବୀଜ
ବୀଜନମିତ ମିତ ହରଷ ରସ ବାର
ବାରଣ ବୃଷା ବୃଷାଳ ସାଳ ପୁରପୁର ଯେ ।

(୧୯।୪—୬)

## ୯ । ସିଂହାବଲୋକନ :

ବୋଧନ୍ତୁ ରାମ ସିଂହାବଲୋକନେ ଅବଳା
ବଳାକାପନ୍ତ୍ର କରନ୍ତୁ ଧ୍ରୁବକୁ ଧବଳା
ବଳାଇ ମାନ ସମାନ ଅନା ପ୍ରାଣବନ୍ଧୁ
ବନ୍ଧୁକ ରଞ୍ଜନ ଅତି ରଙ୍ଗ ନରବନ୍ଧୁ ।
ବନ୍ଧୁର ପଥଟି ହେଜ ହେଜ ପଦ ବଳା
ବଳାଧ୍ୱନ ପ୍ରାୟେ ଝିଲ୍ଲୀ ଶବଦ ପ୍ରବଳା
ବଳାପନ୍ତ୍ର ଫଳବତୀ ପ୍ରଫୁଲ୍ଲ ସେବତୀ
ବତ୍ସଲଲକ୍ଷଣା ଦେଖ ବହିରେ ପାର୍ବତୀ ।
ବର୍ତ୍ତୀର୍ଣ୍ଣ ଅପୂର୍ବ ହୋଇ କେତେ ନାଗବଲ୍ଲୀ
ବଲ୍ଲିକା ତଳେ ଶୟନ ଗୃହସ୍ତ ଆବଳୀ
ବଳବ ଚଇତରଥୁ ଏମନ୍ତ ଭାବନା
ବନାଳୀ ପ୍ରଭୁ କଷ୍ଟ କରିବା ସମ୍ଭାବନା । (୧୯।୭—୯)

## ୧୦ । ବ୍ୟାଘ୍ରଗତ :

ବ୍ୟାଘ୍ରଗତରେ ସଖୀରେ କହନ୍ତି ସାର ସେ
ସାରତରୁରେ ତରୁଣୀ କୁସୁମ ବରଷେ
ବର ଉନ୍ନତ ଉନ୍ନତ ଉପମା ବହୀନ
ବହିତ କରନ୍ତି ବହି କକୁଭ ବଚନ ।
ବଚ ସହିତରେ ସହି ପ୍ରକାଶେ ବଭୂତ
ବଭୂଷଣ ଚମ୍ପା ଷଣପୁଷ୍ପ ଅବରତ
ବରଳ ଘରଣି କର ଘରଣି ବହାରେ
ବହାଯ୍ୟସେ ଲଦ୍ୟ ଉଲ୍ଲାସକୁ ନ ବସରେ ।
ବଶଦ ମଲ୍ଲିକାକୁଳ ବକୁଳ ବସନ୍ତ
ବଶରେ ବସନ୍ତ ମଧୁକରେ ବଳସନ୍ତ
ବଳଶଯ୍ୟା ଗନ୍ଧସାର ଗନ୍ଧରେ ବଦତ
ବଦଗଦଗ ଜବନେ ପବନେ ବାସିତ ।

(୧୯/୧୦—୧୬)

## ୧୧ । ଗୋମୂତ୍ର ଛାନ୍ଦ :

ବୋଲନ୍ତି ଗୋମୂତ୍ର ଛନ୍ଦେ ହସହସ ହୋଇ
ସାଣା ପ୍ରତିଘରେ ଅନା ଡୋଳାକୁ ଖେଳାଇ
ବାରବାର ତାରତର ମଣିଗଣ ଜ୍ୟୋତ
ସାରତର ସୁରତର ଏଣୀଏଣ ପ୍ରୀତ ।
ବଶ ରତ୍ନନଧ୍ୱ ଗୁଞ୍ଜ ସଙ୍ଗ ଅସନରେ
ବସଯତ୍ନ ବଧି କୁଞ୍ଜଭୃଙ୍ଗ ପ୍ରସନ୍ନରେ
ବାଘବାତ ବେଣୁ ଥାଇ ଥାଇ ପ୍ରେମଶୀଳା
ବେଦବତ ମଣୁଥାଇ ପାଇ ସମଶୀଳା ।

(୧୪।୧୮,୧୯)

## ୬ । ଅନ୍ତଲପି :

ବ୍ୟଥା କଣ୍ଠବନ୍ଧ ପାଦ ଗ୍ରନ୍ଥି ବସିଲେ
ବସାଇ ଜାନୁରେ ଅନ୍ତର୍ଲିପିଏ ଲିଖିଲେ
ବହ୍ନିର ସ୍ଥାନ କେ ମୀନମାନଙ୍କ ଅଟଇ
ବାୟୁସରେ କେହୁ ପ୍ରତିପାଳିତ ହୁଅଇ ।
ବିଭବଶ ପ୍ରକାଶେ କି କରେ ପକ୍ଷିଅଳି
ତରୁପାଷ ନେଶାନନେ କେହୁ ଗଲ ଜଳି
ବସ୍ତ୍ର କୋଳେ ସନ୍ଧକାଳେ କେହୁ ମନୋହର
ବିଶ୍ୱରେ କରୁଛି କେହୁ ପର ଉପକାର ।
ବାନରଙ୍କର ପ୍ରସିଦ୍ଧ ନାମ କେ ଜଗତେ
ବିଶ୍ୱର ଗ୍ରହଗଣନା ସଂଖ୍ୟା ପୁନଃ କେତେ
ବପୁର୍ଷୀ ସ୍ୱୟମ୍ବରେ କନ୍ୟାକୁ କିସ କହି
ବୋଲଇ ଜୀବ ମଧ୍ୟରେ ସାରସତ୍ତ୍ୱ କେହି ।
ବୋଲନ୍ତି ଯବନେ ଇଷ୍ଟ-ଦେବରେ କି ଭାଷ
ବସୁଧାପତି ପ୍ରଜାଙ୍କଠାରୁ ଘେନେ କିସ
ବାମନମୂର୍ତ୍ତି ନନ୍ଦନ ବୋଲନ୍ତି କାହାର
ବାଞ୍ଛା ସଂସାରୁ କି ହୋଏ ଗୁରୁଶିଷ୍ୟଠାର ।
ବିଧିରେ ଯୁଦ୍ଧରେ କେଉଁ ବଚନ ଚହଳ
ବସନ୍ତ ହୋଇଲେ କିସ କରଇ କୋକିଳ
ବିପ୍ରଲବ୍ଧା ପ୍ରଭାତେ କି କରେ ଉପକାନ୍ତେ
ବ୍ରହ୍ମାଣ୍ଡେ ଜୀବନ ମୁକ୍ତ ଅଟଇ କେ ସତେ ।
ବେଦେ କେ ଆଉ ଅଥର୍ବ ଯଜୁଃ ସାମ ତେଜି
ବସନ୍ତେ କେକେ ବିଯୋଗୀ ଶବ୍ଦ କହ ହେଜି
ବନପିକ ରୁତମାର ବୋଲେ ବଇଦେହୀ
ବିଶେଷ ତୋଷ ଚୁମ୍ବନ ଆଲିଙ୍ଗନ ବହି ।।

(୧୯।୨୦—୨୫)

## ୧୩ । ବହିର୍ଲିପି :

ବହିର୍ଲିପି କହି ବେନ ବେନ ବର୍ଣ୍ଣ ଲେଖି
ବାମ ନାଶି ଦକ୍ଷିଣବର୍ଣ୍ଣଙ୍କୁ ଭଜ ସଖି
ବଦ୍ୟ କେ ଜଗତେ ତ କେହ୍ନ ତଳକର ସ୍ଥାନ
ବସି ରାଜା କ କର ବେଶ୍ୟାର କ ରଞ୍ଜନ ।
ବ୍ୟୋମକେଶ ମୋହନୀ କେ ଶିଶୁ କେ ପାଳଇ
ବଡ଼ ଖେଳରେ କେ ଘେନ ଘନ କ ମୁଞ୍ଚଇ
ବରଚେ କେହ୍ନ ପ୍ରବନ୍ଧ ରୁଚି କ କରନ୍ତ
ବହେ ଉତ୍ତୁଙ୍ଗ ଶୃଙ୍ଗ କେ ବପ୍ର କ ହୁଅନ୍ତ ।
ବସ୍ତୁ ଆୟୁଧ କେ ଚନ୍ଦ୍ର ବନା ଦେ ଅଗମ୍ୟ
ବ୍ରହ୍ମା କ ପାଳନ୍ତ କେହ୍ନ ରଚନ୍ତ ସଂଗ୍ରାମ
ବୁଝି ମୈଥିଳୀ ଭାଷିତ ଗୁରୁ କର ନାହିଁ
ବୋଲେ ରାଘବ ଅଗୁରୁ ବଦ୍ୟା ସିନା ସେହି ।

(୧୯।୨୭—୨୮)

## ୧୪ । ଲୋମବିଲୋମ (ମେଷଯୁଦ୍ଧ) :

ବରଦ ବରସାନନ ସାର ବଦରବ
ବଧମାନ ଜରତ ତରଜନ ମାଧବ
ବଦ୍ଧମାରତ ହେବ ବହେ ତର ମାଧବୀ
ବହେ ସଦା ତରସ ସରତ ଦାସ ହେବ ।

(୧୯।୩୩)

## ୧୫ । ବିବିଧ ଚିତ୍ରବନ୍ଧ :

ବୈଦେହୀଶ ବିଳାସରେ ଛଅଗୋଟି ଚିତ୍ରବନ୍ଧ ରହିଅଛି । ଯଥା—

(କ) ନାଗବନ୍ଧ—୨୮ ଶ ଛାନ୍ଦର ୩୦—୩୩ ପଦ
(ଖ) ଚକ୍ର ବନ୍ଧ—୨୮ ଶ ଛାନ୍ଦର ୩୭—୪୦ ପଦ
(ଗ) ବୃକ୍ଷବନ୍ଧ—୪୯ ଶ ଛାନ୍ଦର ୪୮ ପଦ

(ଘ) ଗଦାବନ୍ଧ—୪୯ ଛାନ୍ଦର ୧୯ ପଦ
(ଙ) ଶରବନ୍ଧ—୪୯ଛାନ୍ଦର ୨୦ ପଦ
(ଚ) ରଥବନ୍ଧ—୪୯ ଛାନ୍ଦର ୮୨ ପଦଠାରୁ ୯୦ ପଦ

ଏହା ହେଉଛି କବି ଉପେନ୍ଦ୍ରଭଞ୍ଜଙ୍କ 'ବୈଦେହୀଶ ବିଳାସ'ର କେତେ-ଗୋଟି ଶବ୍ଦାଳଙ୍କାର, ଅର୍ଥାଳଙ୍କାର ଓ ଚିତ୍ରାଳଙ୍କାରର ଦୃଷ୍ଟାନ୍ତ । ସମଗ୍ର କାବ୍ୟରେ ସନ୍ନିବେଶିତ ଶତଶତ ବିବିଧ ଅଳଙ୍କାର ମଧ୍ୟରୁ କେତେଗୋଟି ଦୃଷ୍ଟାନ୍ତ ମାତ୍ର ଏଠାରେ ଉଦ୍ଧାର କରାଗଲା । ଏଥିରୁ କବି ଉପେନ୍ଦ୍ର ଭଞ୍ଜଙ୍କ ଆଳଙ୍କାରିକତା ସହଜରେ ଅନୁମାନ କରାଯାଇପାରେ । କବି ନିଜର ପ୍ରତ୍ୟେକ ସାରସ୍ୱତ କୃତିକୁ ନାନାବିଧ ଆଳଙ୍କାରିକ ଶୃଙ୍ଗାରରେ ସମୃଦ୍ଧ କରି ଯାଇଛନ୍ତି । ମଧ୍ୟଯୁଗୀୟ କାବ୍ୟ-ସୁନ୍ଦରୀ କିପରି ବିବିଧ ଅଳଙ୍କାରର ଭାରରେ ଭାରାକ୍ରାନ୍ତ ହୋଇ ଉଠିଥିଲେ, ତାହା ଉପେନ୍ଦ୍ର ଭଞ୍ଜଙ୍କର ରଚନାବଳୀରୁ ସହଜରେ ପ୍ରମାଣିତ ହୋଇଥାଏ । କାବ୍ୟ ରଚନାକ୍ଷେତ୍ରରେ କବି ଅଳଙ୍କାର ଶାସ୍ତ୍ରର ନିର୍ଦ୍ଦେଶକୁ ପ୍ରତି ପଦକ୍ଷେପରେ ଗ୍ରହଣ କରିଥିବା ଜଣାଯାଇଥାଏ । ଏହି କାରଣରୁ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟରାଜିକୁ, କେହିକେହି 'ଅଳଙ୍କାରଶାସ୍ତ୍ରର କାବ୍ୟିକ ସଂସ୍କରଣ' ବୋଲି କହିବା ସଙ୍ଗେ ସଙ୍ଗେ ଏହି ଯୁଗର କାବ୍ୟସ୍ରଷ୍ଟାମାନଙ୍କୁ 'ଅଳଙ୍କାର କବି' ଏବଂ ଏହି ଯୁଗକୁ 'ଅଳଙ୍କାର ଯୁଗ' ବୋଲି ମଧ୍ୟ କହିଥାନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ସର୍ବଶ୍ରେଷ୍ଠ କୃତି 'ବୈଦେହୀଶ ବିଳାସ'ରେ ଏହାର ଯଥାର୍ଥତା ପ୍ରମାଣିତ ହୋଇଥାଏ ।



## କବିଙ୍କ ଶାସ୍ତ୍ରପାଣ୍ଡିତ୍ୟ

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟସ୍ରଷ୍ଟାଗଣ ଅଲୌକିକ କବିପ୍ରତିଭାର ଅଧିକାରୀ ହେବା ସଙ୍ଗେ ସଙ୍ଗେ ଅସାଧାରଣ ଶାସ୍ତ୍ରପାଣ୍ଡିତ୍ୟ ଅର୍ଜ୍ଜନ କରିଥିଲେ। ସେମାନେ କାବ୍ୟ ରଚନା କରିବା ପୂର୍ବରୁ ସଂସ୍କୃତ ଭାଷାର ବିବିଧ କାବ୍ୟ, ନାଟକ, ବେଦ, ଉପନିଷଦ, ପୁରାଣ, ଦର୍ଶନ, ବ୍ୟାକରଣ, ଶିଳ୍ପଶାସ୍ତ୍ର, ଆୟୁର୍ବେଦ, ଅଳଙ୍କାର, କୋଷ, ତନ୍ତ୍ର ଓ ଜ୍ୟୋତିଷ ପ୍ରଭୃତି ଶାସ୍ତ୍ର ଅଧ୍ୟୟନ ପୂର୍ବକ ବିଚକ୍ଷଣ ପାଣ୍ଡିତ୍ୟ ଅର୍ଜ୍ଜନ କରୁଥିଲେ। ସେମାନେ ସ୍ୱକୀୟ ଶାସ୍ତ୍ରଜ୍ଞାନକୁ ଆପଣାର ସାରସ୍ୱତ କୃତି-ରାଜିରେ ପ୍ରତିଫଳନ ପୂର୍ବକ ତତ୍କାଳୀନ ଶାସ୍ତ୍ରଦର୍ଶୀ ପଣ୍ଡିତମାନଙ୍କୁ ମୁଗ୍ଧ କରି ଦେଉଥିଲେ। ଏହି କାରଣରୁ ଓଡ଼ିଆ ରୀତିକାବ୍ୟ ଅଧ୍ୟୟନ ପୂର୍ବକ ତାହାର ଯଥାର୍ଥ ମର୍ମ ହୃଦୟଙ୍ଗମ କରିବାକୁ ହେଲେ ପାଠକକୁ ମଧ୍ୟ ତାଦୃଶ ପାଣ୍ଡିତ୍ୟର ଅଧିକାରୀ ହେବାକୁ ପଡ଼ିଥାଏ। ଶାସ୍ତ୍ରଦର୍ଶୀ ପଣ୍ଡିତ ବ୍ୟତିରେକେ ସେମାନଙ୍କ କାବ୍ୟରାଜିର ଯଥାର୍ଥ ମର୍ମ ସାଧାରଣ ପାଠକ ହୃଦୟଙ୍ଗମ କରିବା ଅସମ୍ଭବ ବୋଲି କେତେକ କବି ନିଜେ ଘୋଷଣା କରିଯାଇଛନ୍ତି। ଏପ୍ରସଙ୍ଗରେ ବିଦଗ୍‌ଧ କବି ଅଭିମନ୍ୟୁଙ୍କ 'ବିଦଗ୍‌ଧ ଚିନ୍ତାମଣି' କାବ୍ୟର ଏକ ଅଂଶ ଅନୁଧ୍ୟାନ ଯୋଗ୍ୟ ମନେହୁଏ। କବି ଲେଖିଛନ୍ତି—

"ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ କାବ୍ୟ<br>
ନ୍ୟାସକଲି ଲୋକର ଏ ହୋଇବଟି ଭବ୍ୟ।"

(ବି: ଚି: ୧/୨୭)

ଅର୍ଥାତ୍ ଯେଉଁବ୍ୟକ୍ତି ନ୍ୟାୟାଦି ଷଡ଼୍‌ଦର୍ଶନ, ଅଷ୍ଟାଦଶପୁରାଣ, ବେଦ, ତନ୍ତ୍ରଶାସ୍ତ୍ର ଏବଂ ସଂସ୍କୃତ ଭାଷାର ବିଭିନ୍ନ କାବ୍ୟ ଅଧ୍ୟୟନ ପୂର୍ବକ ତହିଁରେ ପାଣ୍ଡିତ୍ୟ ଅର୍ଜନ କରିଥିବେ, ସେହି ବ୍ୟକ୍ତିହିଁ ଏହି କାବ୍ୟ ବିବେଚନା କରିବା ନିମିତ୍ତ ଯୋଗ୍ୟ ଅଟନ୍ତି। କବି ଅଭିମନ୍ୟୁଙ୍କ ଏହି ଉକ୍ତି ରୀତିଯୁଗର ଅନ୍ୟାନ୍ୟ ବିଭିନ୍ନ କବିଙ୍କ କାବ୍ୟପ୍ରତି ମଧ୍ୟ ପ୍ରଯୁକ୍ତ ହୋଇଥାଏ।

କବି ଉପେନ୍ଦ୍ରଭଞ୍ଜ ଥିଲେ ରୀତିଯୁଗର ଜଣେ ଅସାଧାରଣ ବିଦ୍ୱତ୍ତ୍ୱମଣ୍ଡିତ ପ୍ରତିଭାଶାଳୀ ସାଧକ । ସେ ଅଲୌକିକ କବି ପ୍ରତିଭାର ଅଧିକାରୀ ହେବା ସଙ୍ଗେ ସଙ୍ଗେ ବିବିଧ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । 'ବୈଦେହୀଶ ବିଳାସ' କବିଙ୍କର ଉକ୍ତ ଶାସ୍ତ୍ରପାଣ୍ଡିତ୍ୟର ଯଥାର୍ଥ ପରିଚାୟକ । ଉକ୍ତ କାବ୍ୟରୁ କେତେକ ଦୃଷ୍ଟାନ୍ତ ପ୍ରଦାନ କଲେ ଏହି ବିଷୟ ଅବଧାରଣ କରିହେବ ।

## ୧ । ପୌରାଣିକତା :

ବୈଦେହୀଶ ବିଳାସ, ସୁଭଦ୍ରାପରିଣୟ, କଳାକଉତୁକ ଓ ରାମଲୀଳାମୃତ ପ୍ରଭୃତି ପୌରାଣିକ କାବ୍ୟରେ ଉପେନ୍ଦ୍ରଭଞ୍ଜଙ୍କ ପୁରାଣଜ୍ଞାନ ସ୍ପଷ୍ଟ ପ୍ରତିଫଳିତ ହୋଇଛି । ବିଶେଷତଃ ରାମକଥାତ୍ମକ 'ବୈଦେହୀଶ ବିଳାସ'ରେ ତାହାଙ୍କ ଶାସ୍ତ୍ରଜ୍ଞାନରେ ପ୍ରକୃଷ୍ଟ ପରିଚୟ ମିଳିଥାଏ । ଉକ୍ତ କାବ୍ୟର ଆରମ୍ଭରେ ଥିବା ପ୍ରଥମ ଦୁଇଟି ପଦରେ କବି ଯେଉଁ ଇଷ୍ଟସ୍ତୁତି କରିଛନ୍ତି, ତାହାକୁ ଓଡ଼ିଶାର ଛାନ୍ଦାର୍ଥୀମାନେ ବିଷ୍ଣୁ, ସୂର୍ଯ୍ୟ, ଶିବ ପ୍ରଭୃତି ବିବିଧ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଅର୍ଥ କରିଥାନ୍ତି । ଏଠାରେ ଉଲ୍ଲେଖ କରିବା କଥା ଯେ, ଯେତେବେଳେ ବିଷ୍ଣୁଙ୍କ ପକ୍ଷରେ ଏହା ଅର୍ଥ କରାଯାଏ, ସେତେବେଳେ ବିଷ୍ଣୁପୁରାଣ ଅନୁଯାୟୀ ସମସ୍ତ ବିଶେଷଣ ବିଷ୍ଣୁଙ୍କ ପାଇଁ ପ୍ରୟୋଗ କରାଯାଇଥାଏ । ସେହିପରି ଶିବଙ୍କ ପକ୍ଷରେ ଅର୍ଥ କରିବା ନିମିତ୍ତ ଶିବପୁରାଣ, ସୂର୍ଯ୍ୟଙ୍କପକ୍ଷରେ ସୂର୍ଯ୍ୟପୁରାଣ ଇତ୍ୟାଦିର ସହାୟତା ଗ୍ରହଣ କରିବାକୁ ପଡ଼ିଥାଏ । କବି ଉକ୍ତ ବିବିଧ ପୁରାଣଶାସ୍ତ୍ର ଅନୁଯାୟୀ ଏଥିରେ ବିଭିନ୍ନ ଦେବଦେବୀଙ୍କର କେତେକ ବିଶେଷଣ ପ୍ରୟୋଗ କରିଛନ୍ତି । ଏହା ତାହାଙ୍କ ପୁରାଣଜ୍ଞାନର ପରିଚାୟକ ।

ସପ୍ତମ ଛାନ୍ଦରେ ସୁବାହୁ ରାକ୍ଷସ ବଧ ପରେ କବି ବିଶ୍ୱାମିତ୍ରଙ୍କ ବିଷୟ ପ୍ରତିପାଦନ କରିବାକୁ ଯାଇ ପୁରାଣ ବର୍ଣ୍ଣିତ ତ୍ରିଶଙ୍କୁ ଚରିତ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି । ଯଥା—

"ବସାଇଲେ ଅଧସ୍ୱର୍ଗ ହଟରେ ତ୍ରିଶଙ୍କୁ<br>ବାହୁଡ଼ି ସେ ଆରମ୍ଭିଲେ ଯଜ୍ଞକୁ ନିଶଙ୍କୁ ।"

(୭।୭୪)

ନବମ ଛାନ୍ଦରେ ରାମଚନ୍ଦ୍ରଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଅଶ୍ୱିନୀ-କୁମାରଙ୍କ ଜନ୍ମବୃତ୍ତାନ୍ତ ସୂଚାଇଛନ୍ତି—

"ବାମୀକାଳେ ଭାନୁବାମା ପ୍ରସବ ସୂନୁ ସୁଷମା
ଲକ୍ଷିତ ହୁଅନ୍ତା ଆନ ଆନନପ୍ରଭା
ବରନ ବସନ ଧରେ ମାଳ ପୀଠି ପରସ୍ପରେ
ସ୍ୱରମଧୂ ଆଲିଙ୍ଗନ ବହିଲ ଶୋଭା ।"
(୯।୭)

ସୂର୍ଯ୍ୟଙ୍କ ପତ୍ନୀ ସଂଜ୍ଞା ଘୋଟକୀ ରୂପ ଧାରଣ କରିଥିଲା ବେଳେ ତାପରି ସୂର୍ଯ୍ୟଙ୍କ ଔରସରୁ ଅଶ୍ୱିନୀକୁମାର ଜନ୍ମ ହେଲେ, ସେହି ବିଷୟ ସୂର୍ଯ୍ୟପୁରାଣ ଓ ହରିବଂଶରେ ବର୍ଣ୍ଣିତ ହୋଇଛି । କବି ଉପର୍ଯ୍ୟୁକ୍ତ ଢଙ୍ଗରେ ପୁରାଣର ଏହି ଘଟଣା ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି ।

ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ହରଣ କରିଥିବା ଯୋଗୁ ଚନ୍ଦ୍ର ଗୁରୁପତ୍ନୀ ହରଣ ଦୋଷରେ ଦୂଷିତ ହୋଇଥିଲେ ଏବଂ ସେଥିଯୋଗୁ ସେ ନିଜ ଦେହରେ କଳଙ୍କଧାରଣ କରିଥିବା ପ୍ରସଙ୍ଗ ପୁରାଣରେ ବର୍ଣ୍ଣିତ ହୋଇଛି । ଏ ସଂପର୍କରେ କବି 'ବୈଦେହୀଶ ବିଳାସ'ରେ ଲେଖିଛନ୍ତି—

"ବିଦ୍ୟା ଗୁରୁ ପତ୍ନୀ ହରଣେ ଆଗ
ବିଦ୍ୟାଂଶୁ କଳଙ୍କ ଧରଇ ଅଙ୍ଗ ।" (୧୨।୭)

ଶିବଙ୍କ ଅଭିଶାପ ଫଳରେ କନ୍ଦର୍ପ କପରି ଭସ୍ମ ହୋଇଯାଇଥିଲା ସେହି ବିଷୟ ଶିବ ପୁରାଣରେ ଉଲ୍ଲିଖିତ ହୋଇଛି । ଉପେନ୍ଦ୍ର ଭଞ୍ଜ ଏହି ପ୍ରସଙ୍ଗ ସୂଚାଇବାକୁ ଯାଇ ଲେଖିଛନ୍ତି—

"ବିରହ ଯାକହିଁ ଯାଇଛି ପୋଡ଼ା
ବିରହ ମୋର ସେ ପ୍ରେତର ଲୋଡ଼ା ।" (୧୨।୮)

କୌସ୍ତୁଭ ନାମକ ରାଜା ବହୁ ବର୍ଷ ଯୋଗ ସାଧନା ପୂର୍ବକ ରାମନାମ କୀର୍ତ୍ତନ କଲେ ଏବଂ ତାହାର ପ୍ରଭାବରେ ମଣି ରୂପରେ ବିଷ୍ଣୁଙ୍କ ବକ୍ଷସ୍ଥଳରେ ଶୋଭା ପାଇଲେ । ତାହାଙ୍କ ନାମାନୁସାରେ ଉକ୍ତ ମଣିର ନାମ କୌସ୍ତୁଭମଣି ହେଲା ।

ଏହି ବିଷୟ ନୃସିଂହ ପୁରାଣରେ ବର୍ଣ୍ଣିତ ହୋଇଛି । ଉକ୍ତ ପ୍ରସଙ୍ଗ 'ବୈଦେହୀଶ ବିଳାସ'ରେ ନିମ୍ନ ପ୍ରକାରରେ ସୂଚିତ ହୋଇଛି—

"ବିଷ୍ଣୁ ଉରସ୍ଥ କୌସ୍ତୁଭ ନୃପମଣି
ବର୍ଷି ଯେଉଁ ରାମନାମ ଗୁଣଭଣି ।" (୧୩।୫୩)

ସେହିପରି ବୃକାସୁର ବଧ ପ୍ରସଙ୍ଗରେ କୁହାଯାଇଛି—

"ବୃକାସୁର ତାହା କର ନିଜଶିରେ
ଦେଲା ଯଥା ହରି ବୋଲେ ।" (୧୭।୧୭)

ବାଳୀବଧ ପ୍ରସଙ୍ଗରେ ୨୮ଶ ଛାନ୍ଦରେ କବି କେତେକ ପୌରାଣିକ ଘଟଣା ଉଲ୍ଲେଖ କରିଛନ୍ତି—

(କ) ଗଣେଶ ଯମଙ୍କୁ ମୂଷା କରିଦେବା ପ୍ରସଙ୍ଗ—

ବିଘ୍ନରାଜ ମୂଷିକ କରି ଯମ
ବନ୍ଧନରେ ପାଶରେ ଯଥା କ୍ଷମ । (୨୮।୯୭)

(ଖ) ମଧୁ କୈଟଭ ବଧ—

ବିଷ୍ଣୁ ମଧୁ କଇଟଭ ପାତାଳେ
ବିନାଶରୁ ଏ କାଢ଼ି ବିଳାଇଲେ । (୨୮/୧୩୦)

(ଗ) ବରାହ, ନୃସିଂହ ଓ ବାମନ ଅବତାର ପ୍ରସଙ୍ଗ—

ବର ବରାହ ମୂରତି ଧରିବା
ବଡ଼ ନୋହେ ହିରଣ୍ୟାକ୍ଷ ମାରିବା ।
ବଳି ହିରଣ୍ୟ ତାରଣୁ ଏ ଯଶ
ବଳି ପାତାଳେ ରଖିବା ରହସ୍ୟ । (୨୮/୧୩୧, ୧୩୨)

ସମଗ୍ର କାବ୍ୟ ମଧ୍ୟରେ ଏହିପରି ବହୁ ପୌରାଣିକ ତଥ୍ୟ ସୂଚିତ ହୋଇଛି, ଯାହା କବିଙ୍କ ପୁରାଣ ଜ୍ଞାନର ପରିଚାୟକ ।

## ୨। ସଂସ୍କୃତ ଭାଷାର ବିଭିନ୍ନ ରାମାୟଣ ଗ୍ରନ୍ଥ ଓ ବୈଦେହୀଶ ବିଳାସ—

'ବୈଦେହୀଶ ବିଳାସ' ଏକ ରାମ କାବ୍ୟ ହୋଇଥିବାରୁ ଏହାର ମୂଳ ଆଧାର ହେଉଛି ରାମାୟଣ ଗ୍ରନ୍ଥ। ଏହି କାବ୍ୟ ରଚନା କରିବା ନିମିତ୍ତ କବି ବିଭିନ୍ନ ରାମାୟଣ ତଥା ରାମକାବ୍ୟର ସହାୟତା ଗ୍ରହଣ କରିଥିବା ଜଣାଯାଏ। 'ବିଦେହୀଶ ବିଳାସ' କାବ୍ୟର ପ୍ରଥମ ଛାନ୍ଦରେ ନିମ୍ନ ଉକ୍ତିରୁ ଏହା ପ୍ରମାଣିତ ହୋଇଥାଏ। ଯଥା—

"ବାଲ୍ମୀକି ବ୍ୟାସ କବି ଯହିଁରେ ମହାକାବ୍ୟକେ ପୂରଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ।
ହୋଇଲେ କାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜ ନରେଶେ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ଶୁଣ୍ଡିଲ ଚନ୍ଦ୍ରା ଯେ
ବିବେକ ହିଁ ଉଦୟ ଏମନ୍ତ ଧାୟି ଯେ
ବ୍ୟୋମେ ତାରକା ଯେବେ ଝଲସୁ ଥାଇ ଯେ
ବିଶ୍ୱବିଖ୍ୟାତରେ ଜ୍ୟୋତିରଙ୍ଗଣ- ଗଣ ଜ୍ୟୋତିକୁ ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ॥" (୧/୪)

ଏଥିରୁ ଜଣାଯାଏ ଯେ, ବାଲ୍ମୀକି ରାମାୟଣ (ମୂଳ), ବ୍ୟାସକୃତ 'ଆଧ୍ୟାତ୍ମ ରାମାୟଣ', କାଳିଦାସଙ୍କ 'ରଘୁବଂଶ', ହନୁମାନଙ୍କ 'ମହା ନାଟକ', ଭୋଜଙ୍କ 'ଚମ୍ପୂ ରାମାୟଣ' ପ୍ରଭୃତି ଥିଲା କବିଙ୍କର ମୂଳ ଅବଲମ୍ବନ। ଏହି ସମସ୍ତ ଗ୍ରନ୍ଥରୁ କବି କିପରି ବିଭିନ୍ନ ଉପାଦେୟ ପ୍ରସଙ୍ଗ ଆହରଣ ପୂର୍ବକ 'ବୈଦେହୀଶ ବିଳାସ'ରେ ସମାବେଶ କରିଛନ୍ତି, ନିମ୍ନ ଆଲୋଚନାରୁ ତାହା ସ୍ପଷ୍ଟ ହେବ।

### (କ) ବାଲ୍ମୀକି ରାମାୟଣ ଓ ବୈଦେହୀଶ ବିଳାସ—

ବାଲ୍ମୀକିଙ୍କ ଦ୍ୱାରା ସର୍ବପ୍ରଥମେ ରାମାୟଣ ରଚିତ ହୋଇଥିବାରୁ ଭାରତୀୟ ଭାଷାର ପ୍ରତ୍ୟେକ ରାମାୟଣ ରଚୟିତା କବି ଉକ୍ତ ମୂଳ ରାମାୟଣକୁ ମୁଖ୍ୟତଃ ଅନୁସରଣ କରିଛନ୍ତି। ମାତ୍ର ବହୁ କବି ସ୍ୱକୀୟ ରୁଚି ଓ ମୌଳିକ ଚିନ୍ତାଧାରା ଅନୁସାରେ ନିଜର ରଚନା ମଧ୍ୟରେ କେତେକ ନୂତନତା ପ୍ରଦର୍ଶନ କରିଥିବା ଦେଖାଯାଏ। କବି ଉପେନ୍ଦ୍ରଭଞ୍ଜ ମଧ୍ୟ ସେହିପରି ମୂଳ ବାଲ୍ମୀକି ରାମାୟଣକୁ

ଅନୁସରଣ କରିଥିବା ସ୍ୱାଭାବିକ । ମାତ୍ର ବହୁ କ୍ଷେତ୍ରରେ ସେ ବିଷୟବିନ୍ୟାସରେ ନୂତନତା ପ୍ରଦର୍ଶନ କରିଯାଇଛନ୍ତି । ତନ୍ମଧ୍ୟରୁ କେତେଗୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

ବାଲ୍ମୀକି ରାମାୟଣର 'ବାଳକାଣ୍ଡ' ରେ ନାରଦବାଲ୍ମୀକି କଥୋପକଥନ ଛାନ୍ଦରେ କଥାବସ୍ତୁ ଆରମ୍ଭ ହୋଇଛି । ଏଥିରେ ପ୍ରଥମେ ରାବଣ ଓ କୁମ୍ଭକର୍ଣ୍ଣ ଇତ୍ୟାଦି ପ୍ରସଙ୍ଗ ବର୍ଣ୍ଣିତ ନହୋଇ ରାମଚନ୍ଦ୍ରଙ୍କ ଆବିର୍ଭାବ ବିଷୟ ବର୍ଣ୍ଣିତ ହୋଇଛି । ରାବଣର ଅତ୍ୟାଚାରରୁ ମୁକ୍ତ ହେବା ନିମିତ୍ତ ବ୍ରହ୍ମାଙ୍କ ସମେତ ଦେବଗଣ ଭଗବାନ ବିଷ୍ଣୁଙ୍କୁ ସ୍ତୁତି କରିଥିଲେ । ଫଳରେ ଭଗବାନ୍ ବିଷ୍ଣୁ ରାମାବତାର ଗ୍ରହଣ ପୂର୍ବକ ରାବଣକୁ ବଧ କରିବେ ବୋଲି ଦେବଗଣଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଏହି ପ୍ରସଙ୍ଗ ବାଲ୍ମୀକି ରାମାୟଣ 'ବାଳକାଣ୍ଡ'ର ୧୫ଶ ସର୍ଗରେ ବର୍ଣ୍ଣିତ ହୋଇଛି । କବି ଉପେନ୍ଦ୍ରଭଞ୍ଜ ମଧ୍ୟ 'ବୈଦେହୀଶ ବିଳାସ'ର ଦ୍ୱିତୀୟ ଛାନ୍ଦରେ ଦେବଗଣଙ୍କ ସ୍ତୁତି ଓ ରାମାବତାର ଗ୍ରହଣ ନିମିତ୍ତ ଭଗବାନ ବିଷ୍ଣୁଙ୍କର ସେମାନଙ୍କୁ ପ୍ରତିଶ୍ରୁତି ବିଷୟ ବର୍ଣ୍ଣନା କରିଛନ୍ତି । କାବ୍ୟର ପ୍ରଥମଛାନ୍ଦରେ କବି ଯେଉଁ ମାଳି, ସୁମାଳି ଓ ମାଲ୍ୟବନ୍ତ ରାକ୍ଷସ ଏବଂ ରାବଣ ଓ କୁମ୍ଭକର୍ଣ୍ଣ ପ୍ରଭୃତିଙ୍କ ଜନ୍ମ ବିଷୟ ଉଲ୍ଲେଖ କରିଛନ୍ତି, ତାହା ବାଲ୍ମୀକି ରାମାୟଣର ଉତ୍ତର କାଣ୍ଡରେ ଦେଖିବାକୁ ମିଳେ । ଏହିପରି ଭାବରେ ମୂଳ ବାଲ୍ମୀକି ରାମାୟଣର ବହୁ ପ୍ରସଙ୍ଗ 'ବୈଦେହୀଶ ବିଳାସ'ରେ କଳାତ୍ମକ ଭାବରେ ବର୍ଣ୍ଣିତ ହୋଇଛି ।

## (ଖ) ଆଧ୍ୟାତ୍ମ ରାମାୟଣ ଓ ବୈଦେହୀଶ ବିଳାସ—

ବ୍ୟାସଦେବଙ୍କ ରଚିତ ଆଧ୍ୟାତ୍ମ ରାମାୟଣ କବି ଉପେନ୍ଦ୍ରଭଞ୍ଜଙ୍କୁ ଯଥେଷ୍ଟ ପରିମାଣରେ ପ୍ରେରଣା ଯୋଗାଇଛି । ଅଧ୍ୟାତ୍ମ ରାମାୟଣରେ ଥିବା କେତେକ ଘଟଣା ମୂଳ ବାଲ୍ମୀକି ରାମାୟଣରେ ଦେଖିବାକୁ ମିଳେ ନାହିଁ । ଉଦାହରଣ ସ୍ୱରୂପ, ରାମ ଓ ଲକ୍ଷ୍ମଣଙ୍କର ବିଶ୍ୱାମିତ୍ରଙ୍କ ସହିତ ମିଥିଳା ଯାତ୍ରା କାଳରେ ଗଙ୍ଗା ପାରିହେବା ଏବଂ କୈବର୍ତ୍ତର ପଦପ୍ରକ୍ଷାଳନ ଘଟଣା ମୂଳ ବାଲ୍ମୀକି ରାମାୟଣରେ ନାହିଁ । ମାତ୍ର ଆଧ୍ୟାତ୍ମ ରାମାୟଣ-ବାଳକାଣ୍ଡର ଷଷ୍ଠସର୍ଗରେ ଏହା ବର୍ଣ୍ଣିତ ହୋଇଛି । କବି ଉପେନ୍ଦ୍ରଭଞ୍ଜ ଉକ୍ତ କୈବର୍ତ୍ତ ପ୍ରସଙ୍ଗକୁ ଆଧ୍ୟାତ୍ମ ରାମାୟଣରୁ ଆହରଣ ପୂର୍ବକ 'ବୈଦେହୀଶ ବିଳାସ' ନବମ ଛାନ୍ଦରେ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି ।

ଉଦାହରଣ ସ୍ୱରୂପ ଆଧ୍ୟାତ୍ମ ରାମାୟଣରେ କୈବର୍ତ୍ତ ରାମଚନ୍ଦ୍ରଙ୍କୁ କହୁଛି—
"କ୍ଷାଳୟାମି ତବ ପାଦପଙ୍କଜଂ ନାଥ ଦାରୁ ଦୃଷଦୋଃ କମନ୍ତରମ୍ ।
ମାନୁଷୀକରଣ ଚୂର୍ଣ୍ଣମସ୍ତି ତେ ପାଦୟୋରିତି କଥା ପ୍ରଥୀୟସୀ ॥
ପାଦାମ୍ବୁଜଂ ତେ ବିମଲଂ ହି କୃତ୍ୱା ପଶ୍ଚାତ୍ ପରଂ ତୀରମହଂ ନୟାମି
ନୋଚେତ୍ତରୀ ସଦ୍ ଯୁବତୀ ମଳେନ ସ୍ୟାଚ୍ଚେଦ୍ ବିଭୋ ବିଦ୍ଧି କୁଟୁମ୍ବହାନିଃ ॥
(ଅ: ରା:, ବାଳକାଣ୍ଡ ୬।୩, ୪)

କବି ଉପେନ୍ଦ୍ରଭଞ୍ଜ ଅବିକଳ ଏହି ଭାବକୁ ଗ୍ରହଣ କରିଥିଲେ ମଧ୍ୟ ସ୍ୱକୀୟ ନିଜଭପୂର୍ଣ୍ଣ ଶୈଳୀ ଓ ବର୍ଣ୍ଣରଧାରା ବଳରେ ଏହା କିପରି ଉଲ୍ଲେଖ କରିଛନ୍ତି ଦେଖାଯାଉ । କୈବର୍ତ୍ତ କହୁଛି—

ବଧିର ନୁହଇ ଖର ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା,
ବାଲି ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବ ପାଦ ନ ଧୋଇ ନାବ ॥
(ବୈ: ବି: ୯।୩)

କବି ଉପେନ୍ଦ୍ରଭଞ୍ଜ ଅଧ୍ୟାତ୍ମ ରାମାୟଣରେ ସନ୍ନିବେଶିତ କୈବର୍ତ୍ତର ଉକ୍ତିରୁ ଅବିକଳ ଭାବ ଗ୍ରହଣ କରିଥିଲେ ମଧ୍ୟ ତାହାକୁ ଏଥିରେ ସାମାନ୍ୟ ଭିନ୍ନ ଭାବରେ ପରିବେଷଣ କରିଛନ୍ତି ।

ସେହିପରି ଅନ୍ୟ ଏକ ଦୃଷ୍ଟାନ୍ତ ନିଆଯାଉ । ରାବଣ ଯେତେବେଳେ ମାୟା ମୃଗ ହେବା ନିମିତ୍ତ ମାରୀଚ ରାକ୍ଷସକୁ କହୁଛି, ମାରୀଚ ପ୍ରଥମେ ଅସମ୍ମତ ହୋଇଛି । ଫଳରେ ରାବଣ ଖଡ଼୍ଗରେ ତାହାର ମସ୍ତକ ଛେଦନ କରିବ ବୋଲି ତାକୁ ଭୟ ପ୍ରଦର୍ଶନ କରିଛି । ସେହି ପ୍ରସଙ୍ଗ ଅଧ୍ୟାତ୍ମ ରାମାୟଣରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଛି—

"ହନିଷ୍ୟମ୍ୟସିନାନେନ ତ୍ୱାମଦ୍ୟୈବ ନ ସଂଶୟଃ
ମାରୀଚସ୍ତଦ୍‌ବଚଃ ଶ୍ରୁତ୍ୱା ସ୍ୱାତ୍ମନ୍ୟେବାନୁଚିନ୍ତୟତ୍ ॥

ପୁଦ୍ଧ ମାଂ ଘାଘବୋ ହନ୍ୟାତ୍‌ଦା ମୁକ୍ତୋ ଭବାର୍ଣ୍ଣବାତ୍
ମାଂ ହନ୍ୟାତ୍ ପୁଦ୍ଧ ଚେଦ୍ ଦୁଷ୍ଟ ସ୍ତଦା ମେ ଦରପ୍ତୋ ଧ୍ରୁବମ୍ ॥"
(ଅ: ରା: — ଅରଣ୍ୟ କାଣ୍ଡ ୬/୩୫, ୩୬)

ଉପେନ୍ଦ୍ରଭଞ୍ଜ ଅବିକଳ ଏହି ବିଷୟ କପରି ନିମ୍ନ ପ୍ରକାର ଉଲ୍ଲେଖ କରିଛନ୍ତି, ତାହା ଲକ୍ଷ୍ୟ କରିଯାଉ—

"ବିଶ୍ରବା ସୁତ କ୍ରୋଧରେ ପ୍ରଜ୍ୱଳିତ ଶୁଣି ତା ବଚନ
ବିକୋଷ କରିଣ କରବାଳ କର ବାଳରେ ତା ମନ ।
ବୋଇଲା ଅବଜ୍ଞା କରୁ ମୋର ଆଜ୍ଞା ମାନବିଭୟୁଁ କି
ବାଳକ ମୁଁ ସତେ ତୁ ବୁଝାଉ ମୋତେ କେ ତୋତେ ସମ୍ଭାଳୁ ।
ବିଗୃହିଲ ତାଡ଼କେୟୁ ଏ ମାଇଲେ ହୋଇବି ଅମୋକ୍ଷ
ବୈକୁଣ୍ଠ ଗମନ୍ତି ରାମ କରୁଁ ହତ ଦେଖିଛୁ ପ୍ରତ୍ୟକ୍ଷ ।
ବଳଆଇ କହି ଆଗ ମୁହିଁ ତୁହି ମରିବୁ ପଛରେ
ବାରି ତାନ୍ତି ଝଷ ଶୁଖି ଗ୍ରାହବଂଶ ଯେମନ୍ତ କାସାରେ ।"
(ବୈ: ବି: ୨୪/୨୪, ୨୫)

କବି ଅଧ୍ୟାତ୍ମରାମାୟଣ-ବର୍ଣ୍ଣିତ ଘଟଣାଟିକୁ ଗ୍ରହଣ କରିଥିଲେ ମଧ୍ୟ ତାହାକୁ ଅତି ଚମତ୍କାର ଭାବରେ ଏଥିରେ ପରିବେଷଣ କରିଛନ୍ତି ।

ଅଧ୍ୟାତ୍ମରାମାୟଣର ଏହିପରି ବହୁ ବିଷୟ ଆହରଣ ପୂର୍ବକ କବି ଉପେନ୍ଦ୍ରଭଞ୍ଜ ନିଜସ୍ୱଭଙ୍ଗୀରେ 'ବୈଦେହୀଶବିଳାସ'ରେ ଉପସ୍ଥାପନା କରିଛନ୍ତି ।

## (ଗ) ରଘୁବଂଶମ୍ ଓ ବୈଦେହୀଶ ବିଳାସ—

ମହାକବି କାଳିଦାସଙ୍କ ରଚିତ 'ରଘୁବଂଶମ୍' ମହାକାବ୍ୟ ବିଶ୍ୱବିଖ୍ୟାତ ରାମକାବ୍ୟ ରୂପେ ପ୍ରତିଷ୍ଠା ଅର୍ଜ୍ଜନକରିଛି । କବି ଉପେନ୍ଦ୍ରଭଞ୍ଜ 'ବୈଦେହୀଶ ବିଳାସ' କାବ୍ୟ ରଚନା କରିବା ସମୟରେ 'ରଘୁବଂଶମ୍'କୁ ନିଜର ଅନ୍ୟତମ ଉପଜୀବ୍ୟ ରୂପେ ଗ୍ରହଣ କରିଛନ୍ତି । ଏହାର କେତେ ବିଖ୍ୟାତ ଶ୍ଲୋକର ଭାବ 'ବୈଦେହୀଶ ବିଳାସ'ରେ କପରି ଅତି ଚମତ୍କାର ଭାବରେ ଫୁଟି ଉଠିଛି, ନିମ୍ନ କେତେକ ଦୃଷ୍ଟାନ୍ତରୁ ତାହା ସ୍ପଷ୍ଟହେବ ।

'ରଘୁବଂଶମ୍'ର ପ୍ରାରମ୍ଭ ଭାଗରେ ସୂର୍ଯ୍ୟବଂଶର ମହିମା ବର୍ଣ୍ଣନା ପୂର୍ବକ ମହାକବି କାଳିଦାସ କହିଛନ୍ତି ଯେ, ମହାନ୍ ସୂର୍ଯ୍ୟବଂଶର କୀର୍ତ୍ତି ପ୍ରତିପାଦନ ଦୃଷ୍ଟିରୁ ତାହାଙ୍କ ଜ୍ଞାନର ପରିସୀମା ଅତି କ୍ଷୁଦ୍ର । ପୂର୍ବସୂରୀମାନଙ୍କଦ୍ୱାରା ଏହି ବଂଶର ମହିମା ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ବଜ୍ରଦ୍ୱାରା ରତ୍ନରେ ଯେଉଁ ଛିଦ୍ର କରାଯାଇଥାଏ, ତହିଁରେ ସୂତା ଗତିକଲା ପରି ସେ ମଧ୍ୟ ବାଲ୍ମୀକି ଓ ବ୍ୟାସ ପ୍ରଭୃତି ମହାକବିମାନଙ୍କ ମାର୍ଗ ଅନୁସରଣ ପୂର୍ବକ 'ରଘୁବଂଶମ୍' କାବ୍ୟ ରଚନା କରିବାକୁ ଯାଉଛନ୍ତି । ଏ ପ୍ରସଙ୍ଗରେ କବିଙ୍କ ଉକ୍ତି ହେଉଛି—

"କ୍ୱ ସୂର୍ଯ୍ୟପ୍ରଭବୋ ବଂଶଃ କ୍ୱ ଚାଳ୍ପ ବିଷୟା ମତିଃ
ତିତୀର୍ଷୁ ର୍ଦୁସ୍ତରଂ ମୋହାଦୁଡ଼ୁପେନାଽସ୍ମି ସାଗରମ୍ ।।
× × ×
ଅଥବା କୃତବାଗ୍‌ଦ୍ୱାରେ ବଂଶେଽସ୍ମିନ୍ ପୂର୍ବସୂରିଭିଃ
ମଣୌ ବଜ୍ରସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବାସ୍ତି ମେ ଗତିଃ ।।"
(ରଘୁବଂଶମ୍ ୧।୨—୪)

କବି ଉପେନ୍ଦ୍ର ଭଞ୍ଜ ମଧ୍ୟ କାଳିଦାସଙ୍କୁ ଅନୁସରଣ ପୂର୍ବକ 'ବୈଦେହୀଶ-ବିଳାସ'ର ପ୍ରଥମଛାନ୍ଦରେ ଲେଖିଛନ୍ତି—

"ବାଲ୍ମୀକି ବ୍ୟାସ କବି ଯହିଁରେ ମହାକାବ୍ୟକେ ପୂରାଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ,
ବହିଲେ କାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜ ନରେଶେ
କୃପାସିନ୍ଧୁଏ ଗୀତ ପ୍ରକାଶେ ଛାଡ଼ିଲେ ଚିନ୍ତା ଯେ

ବିବେକହିଁ ଉଦୟ ଏମନ୍ତ ଧ୍ୟାୟି ଯେ
ବ୍ୟୋମେ ତାରକା ଯେବେ ଝଲସୁ ଥାଇ ଯେ
ବିଘବଘରେ ଜ୍ୟୋତିରଙ୍ଗଣ- ଗଣ ଜ୍ୟୋତିକ ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ।।"
(୧।୪)

ଉଭୟ ଉକ୍ତିକୁ ତୁଳନାତ୍ମକ ଭାବରେ ଅଧ୍ୟୟନ କଲେ କବି ଉପେନ୍ଦ୍ର-ଭଞ୍ଜ କାଳିଦାସଙ୍କ ଉକ୍ତିକୁ ଅନୁସରଣ କରିଥିଲେ ମଧ୍ୟ କିପରି ଅଧିକ ବିସ୍ତୃତ

ଓ ମୌଳିକ ଭଙ୍ଗୀରେ ପରିବେଷଣ କରିଛନ୍ତି, ସହଜରେ ଅବଧାରଣା କରିହୁଏ ।

'ରଘୁବଂଶମ୍' ମହାକାବ୍ୟର ଏହିପରି ବହୁ ଅଂଶର ଭାବ 'ବୈଦେହୀଶ-ବିଳାସ'ରେ ଚମତ୍କାର ଭଙ୍ଗୀରେ ପରିବେଷିତ ହୋଇଛି ।

## (ଘ) ଶ୍ରୀ ହନୁମନ୍ନାଟକ ଓ ବୈଦେହୀଶ ବିଳାସ—

ଶ୍ରୀ ହନୁମାନ କୃତ ମହାନାଟକ ଭାରତୀୟ ରାମସାହିତ୍ୟର ଏକ ବିଶିଷ୍ଟ କୃତି ରୂପେ ଗୃହୀତ ହୋଇଥାଏ । ଏହାର ବିଷୟ ବିନ୍ୟାସକୌଶଳ, ଶବ୍ଦ ପ୍ରୟୋଗ ଶୃଙ୍ଖଳା ଏବଂ ଛନ୍ଦଯୋଜନା ଏହାକୁ ବିଦ୍ୱାନ୍ ପଣ୍ଡିତ ସମାଜରେ ବିଶେଷ ଲୋକ ପ୍ରିୟତା ପ୍ରଦାନ କରିଛି । କବି ଉପେନ୍ଦ୍ର ଭଞ୍ଜ ବହୁ କ୍ଷେତ୍ରରେ ଉକ୍ତ ନାଟକଦ୍ୱାରା ପ୍ରଭାବିତ ହୋଇଥିବା ଦେଖାଯାଏ । ତନ୍ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

ମହାନାଟକରେ ବର୍ଣ୍ଣିତ ହୋଇଛି ଯେ, ରାବଣ କାମବ୍ୟାଧିଗ୍ରସ୍ତ ହୋଇଥିବାରୁ ସେହି ସମୟରେ ବେଦପାଠ, ବୀଣାବାଦନ ଇତ୍ୟାଦି କରିବା ମଙ୍ଗଳ ଜନକ ନଥିଲା । ସେହି କାରଣରୁ ତାହାର ଦ୍ୱାରପାଳ ବ୍ରହ୍ମାଦି ଦେବଗଣଙ୍କୁ ନିଜ ନିଜ ସେବା ନ କରିବା ପାଇଁ ସତର୍କ କରାଇ ଦେଉଛି । ଯଥା—

ବ୍ରହ୍ମନ୍ନଧ୍ୟୟନସ୍ୟ ନୈଷ ସମୟସ୍ତୂଷ୍ଣୀଂ ବହିଃ ସ୍ଥୀୟତାଂ
ସ୍ୱଳ୍ପଂ ଜଳ୍ପ ବୃହସ୍ପତେ ଜଡ଼ମତେ ନୈଷା ସଭା ବଜ୍ରିଣଃ ।
ବୀଣାଂ ସଂହର ନାରଦ ସ୍ତୁତିକଥାଳାପୈରଲଂ ତୁମ୍ବୁରୋ
ସୀତା ରଲ୍ଲକଭଲ୍ଲ ଭଗ୍ନହୃଦୟଃ ସ୍ୱସ୍ଥୋ ନ ଲଙ୍କେଶ୍ୱରଃ । (୮।୪୫)

ଏହି ପ୍ରସଙ୍ଗ 'ବୈଦେହୀଶବିଳାସ'ରେ ନିମ୍ନପ୍ରକାରେ ବର୍ଣ୍ଣିତ ହୋଇଛି—

× × ×

"ବିରଞ୍ଚି ନାରଦ ତୁମ୍ବୁରୁ ଲଙ୍କାରେ ସେବା କରିବାକୁ ଆସିଲେ ସେ
ବେଗରେ ।।
ବେଦ ବୀଣାସ୍ତୁତି ଆରମ୍ଭଣେ, ବୋଲେ ଦ୍ୱାସ୍ଥ କେଉଁ ବଡ଼ପଣେ
ବିଚାର୍ଯ୍ୟ ନଜାଣି ହୁଅ କଳକଳ ରହ ମଉନେ ସକଳେ କ୍ଷଣେହେ
ବିବୁଧେ ।।

ହଦେ କ ବୋଲୁଁ ବୋଲେ ଭରତ, ବ୍ୟାଧିରାଜା ଅନ୍ତର୍ଗତେ ଜାତ
ବୈଦେହୀ ପଂଚନ ରସରତ୍ନାକର ବିରଚନକୁ ଅର୍ଜିତ ଶତ୍ରୁ ହେ ।
ବିବୁଧେ ॥
ବ୍ରହ୍ମା ବୋଲେ ତେବେ ସନ୍ନିପାତ, ବିନାଶନେ ତେଜ ହୁଏ ସତ
ବିହ୍ୱଳ ଭଙ୍ଗୀ ତ ନବୁଝି ଇଙ୍ଗିତ ଜାଣ ପର ସଙ୍ଗୀତ ସାହିତ୍ୟ ହେ
ବିଧାତ ॥"

(ବୈ: ବି: ୩୫।୨୨—୨୫)

'ମହାନାଟକର' ଅଷ୍ଟମ ଅଙ୍କରେ ରାବଣ ପ୍ରତି ଅଙ୍ଗଦର ଉକ୍ତି ପ୍ରସଙ୍ଗରେ କବି ଲେଖିଛନ୍ତି—

"ରେରେ ରାବଣ ରାବଣାଃ କତି ବହୂନେତାନ୍‌ଵୟଂ ଶୁଶ୍ରୁମଃ
ପ୍ରାଗେକଂ କଲ କାର୍ତ୍ତବୀର୍ଯ୍ୟ ନୃପତେ ର୍ଦୋର୍ଦଣ୍ଡ ପିଣ୍ଡୀକୃତମ୍ ।
ଏକଂ ନର୍ତ୍ତନଦାପିତାନ୍ନ କବଳଂ ଦୈତ୍ୟେନ୍ଦ୍ର ଦାସୀଗଣୈ-
ରନ୍ୟଂ ବକ୍ତୁମପି ତ୍ରପାମହ ଇତି ତ୍ୱଂ ତେଷୁ କୋଽନ୍ୟୋଽଥବା ।।"

(୮।୩୨)

'ବୈଦେହୀଶ ବିଳାସ'ରେ ରାବଣ ପ୍ରତି ଅଙ୍ଗଦର ଯେଉଁ ଉକ୍ତି ପ୍ରକାଶ ପାଇଛି, ତାହା ମଧ୍ୟ ଅବିକଳ ଏହି ଭାବଗର୍ଭିତ । ଯଥା—

"ବ୍ୟାଖ୍ୟାନ କଲ ଯୁବରାଜ ନଚିହ୍ନୁଁ
ମୋତେ ବଂଶ ଚକ୍ଷୁ ଥାଇ,
ବଣା ମୁଁ ଏ ସେନ ତୁ ଜେଉଁ ରାବଣ
ରାବଣ କରନ୍ତି ମୁହିଁ ।
ବିଧା ପ୍ରହାର ଏ କ୍ଷଣି
ବିଭୁ ଆଜ୍ଞା ନାହିଁ ଶୁଣି ରେ ॥"

(ବୈ : ବି: ୪୧।୨୫)

ଉଭୟ ଗ୍ରନ୍ଥରୁ ଏହିପରି ବହୁ ଦୃଷ୍ଟାନ୍ତ ତୁଳନାତ୍ମକ ଭାବରେ ପ୍ରଦାନ କରାଯାଇପାରେ ।

## (ଙ) ଚମ୍ପୂରାମାୟଣ ଓ ବୈଦେହୀଶ ବିଳାସ—

କବି ଉପେନ୍ଦ୍ରଭଞ୍ଜ ଭୋଜକୃତ ଚମ୍ପୂରାମାୟଣରୁ ବହୁ ପ୍ରସଙ୍ଗ ଆହରଣ କରିଛନ୍ତି । ତନ୍ମଧ୍ୟରୁ ଗୋଟିଏ ଦୃଷ୍ଟାନ୍ତ ଏଠାରେ ପ୍ରଦାନ କଲେ ସ୍ପଷ୍ଟ ହେବ ।

ଚମ୍ପୂରାମାୟଣର ଆରମ୍ଭରେ ଆଦିକବି ବାଲ୍ମୀକିଙ୍କ ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳୀ ଅର୍ପଣ ପୂର୍ବକ କବି ଲେଖିଛନ୍ତି—

"ବାଲ୍ମୀକି-ଗୀତ ରଘୁପୁଙ୍ଗବ କୀର୍ତ୍ତିଲେଶୈ—
ସ୍ତୃପ୍ତିଂ କରୋମି କଥମପ୍ୟଧୁନା ବୁଧାନାମ୍ ।
ଗଙ୍ଗାଜଳୈର୍ଭୁବି ଭଗୀରଥଯତ୍ନଲବ୍ଧୈ
କିଂ ତର୍ପଣଂ ନ ବିଦଧାତି ନରଃ ପିତୃଣାମ୍ ।"
(ବାଳକାଣ୍ଡମ୍, ଶ୍ଳୋ: ୪)

'ବୈଦେହୀଶବିଳାସ'ର ଗ୍ରନ୍ଥାରମ୍ଭର ଆଦ୍ୟରେ କବି "ବାଲ୍ମୀକି ବ୍ୟାସ..." ପଦ ଲେଖିବା ନିମିତ୍ତ ଏହି ଅଂଶରୁ ମଧ୍ୟ କିଛି ପ୍ରେରଣା ଲାଭ କରିଛନ୍ତି । କାଳିଦାସଙ୍କ 'ରଘୁବଂଶମ୍'ର ପୂର୍ବୋକ୍ତ ଶ୍ଳୋକ ଓ ମହାନାଟକର ଏହି ଶ୍ଳୋକର ପ୍ରଭାବ ବୈଦେହୀଶବିଳାସର ଉକ୍ତ ପଦ (୧।୪) ଉପରେ ସ୍ପଷ୍ଟ ପଡ଼ିଥିବା ଜଣାଯାଏ ।

କବି ଉପେନ୍ଦ୍ର ଭଞ୍ଜ ସଂସ୍କୃତଭାଷାରେ ରଚିତ ବିଭିନ୍ନ ରାମକାବ୍ୟ ଅଧ୍ୟୟନ ପୂର୍ବକ କିପରି ତାହାକୁ ନିଜର ରଚନା ମଧ୍ୟରେ ପରିସ୍ଫୁଟନ କରିଛନ୍ତି, ସେହି ବିଷୟ ଏଥିରୁ ଅବଧାରଣ କରିହୁଏ ।

### କବିଙ୍କର ଜ୍ୟୋତିଷଶାସ୍ତ୍ରଜ୍ଞାନ—

ଜ୍ୟୋତିଷ ଶାସ୍ତ୍ରରେ କବି ଉପେନ୍ଦ୍ରଭଞ୍ଜଙ୍କ ଜ୍ଞାନ ବିଷୟ ତାହାଙ୍କ ରଚନାବଳୀରୁ ଜଣାଯାଇଥାଏ । 'ବୈଦେହୀଶବିଳାସ'ରେ ଏହିପରି କେତେ ଗୋଟି ଦୃଷ୍ଟାନ୍ତ ରହିଛି । ରାଜା ଦଶରଥ ରାମଚନ୍ଦ୍ରଙ୍କୁ ରାଜା କରିବା ବିଷୟ ନେଇ ବାମଦେବଙ୍କ ସହିତ ପରାମର୍ଶ କରିବାରୁ ବାମଦେବ କହିଲେ ଯେ ବୃହସ୍ପତି ରାମଚନ୍ଦ୍ରଙ୍କ

ଅଷ୍ଟମରେ ଥିବାରୁ ସେ ରାଜା ହୋଇପାରିବେ ନାହିଁ । ଏ ପ୍ରସଙ୍ଗରେ କବି ଲେଖିଛନ୍ତି—

"ଗୁଣିଲେ ଲଗ୍ନ ମଗ୍ନ ହୋଇ ଶୁଣିଲେ
ମଙ୍ଗଳ ଦାନରେ ତହିଁ
ବୃହସ୍ପତି ରାଶି ଅଷ୍ଟମେ ବିଳାସୀ
ନୃପତି ହୋଇବେ କେହ୍ନି
ବାମଦେବ ଉତ୍ତର
ବଳ୍ପା ବିଶିଷ୍ଟ ହେବ ଈଶ୍ୱର ।।"

(୧୬।୪)

ଏ କ୍ଷେତ୍ରରେ ଜ୍ୟୋତିଷଶାସ୍ତ୍ରର ନିମ୍ନ ଉକ୍ତି ବିଚାରଯୋଗ୍ୟ—

"ଦ୍ୱାଦଶାଷ୍ଟମ ଜନ୍ମସ୍ଥଃ ଶନ୍ୟର୍କୌ ଭୂମିଜୌ ଗୁରୁଃ
କୁର୍ବନ୍ତି ପ୍ରାଣସନ୍ଦେହଂ ସ୍ଥାନଭ୍ରଷ୍ଟଂ ଧନକ୍ଷୟମ୍ ।।"

ଜ୍ୟୋତିଷଶାସ୍ତ୍ରୋକ୍ତ ଏହି ଶ୍ଲୋକରେ ଥିବା ଅଷ୍ଟମ ବୃହସ୍ପତି ଓ ଜନ୍ମ ବୃହସ୍ପତିର ଫଳାଫଳ ବିଷୟ ଉପେନ୍ଦ୍ରଭଞ୍ଜ ସମ୍ୟକ୍ ଅବହିତ ଥିଲେ । ଏହା କବିଙ୍କ ଜ୍ୟୋତିଷଶାସ୍ତ୍ର ଜ୍ଞାନର ପରିଚାୟକ ।

ଉକ୍ତ କାବ୍ୟର ବିଭିନ୍ନ ଛାନ୍ଦରେ କବି ନିଜ ସାମୁଦ୍ରିକ ଶାସ୍ତ୍ରଜ୍ଞାନର ପରିଚୟ ପ୍ରଦାନ କରିଛନ୍ତି । ଉଦାହରଣ ସ୍ୱରୂପ ୧୦ମଛାନ୍ଦରେ କବି ସୀତାଙ୍କୁ "ବତିଶ ଲକ୍ଷଣାତୂର୍ଣ୍ଣ" ବୋଲି ଉଲ୍ଲେଖ କରିଛନ୍ତି । ସୁଲକ୍ଷଣା ନାୟିକାମାନଙ୍କ ଶରୀରରେ ବତିଶ ପ୍ରକାର ଉତ୍ତମ ଲକ୍ଷଣ ଥିବା ବିଷୟ ସାମୁଦ୍ରିକ ଶାସ୍ତ୍ରରେ ପ୍ରତି- ପାଦିତ ହୋଇଛି । ଏଥିରୁ କବିଙ୍କ ସାମୁଦ୍ରିକ ଶାସ୍ତ୍ରଜ୍ଞାନ ସହଜରେ ଅନୁମାନ କରାଯାଇପାରେ ।

## ଶକୁନ ଶାସ୍ତ୍ର—

'ବୈଦେହୀଶବିଳାସ'ର ୨୪ ଶ ଛାନ୍ଦରେ କବି ଶକୁନଶାସ୍ତ୍ର ବିଷୟରେ ସୂଚନା ପ୍ରଦାନ କରିଛନ୍ତି । ମନ୍ଦୋଦରୀ ପ୍ରତି ରାବଣର ଉକ୍ତି ପ୍ରସଙ୍ଗରେ କବି ଲେଖିଛନ୍ତି—

"ବାଃ କ ବାଃକାଷି ଅନୁକୂଳରେ
ବୋଇଲ ତହିଁକ ॥"

(୨୬।୧୨)

କୌଣସି ଶୁଭକାର୍ଯ୍ୟରେ ଯାତ୍ରା କରିବାକୁ ଗଲାବେଳେ କେହି ବାରଣ କଲେ କାର୍ଯ୍ୟହାନି ଘଟେ ବୋଲି ଶକୁନ ଶାସ୍ତ୍ରରେ କୁହାଯାଇଛି । ଶକୁନ ଶାସ୍ତ୍ରର ଏହି ପ୍ରସଙ୍ଗ ଉପର୍ଯ୍ୟୁକ୍ତ ଅଂଶରେ ପ୍ରତିପାଦିତ ହୋଇଛି ।

**ବାତ୍ସ୍ୟାୟନ ଶାସ୍ତ୍ରଜ୍ଞାନ—**

କବି ଉପେନ୍ଦ୍ରଭଞ୍ଜଙ୍କର ବାତ୍ସ୍ୟାୟନଶାସ୍ତ୍ରଜ୍ଞାନ ତାହାଙ୍କର ବିଭିନ୍ନ କାବ୍ୟରେ ପ୍ରତିଫଳିତ ହୋଇଛି । 'ବୈଦେହୀଶବିଳାସ'ରେ ମଧ୍ୟ ଏହାର କେତେଗୋଟି ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ, କାବ୍ୟର ଚତୁର୍ଥ ଛାନ୍ଦରେ ଋଷ୍ୟଶୃଙ୍ଗ ଓ ଜରତା ପ୍ରସଙ୍ଗରେ କବି ଲେଖିଛନ୍ତି—

"ବିଜ୍ଞା ସେ ପ୍ରଥମ ରସେ ଚନ୍ଦ୍ର ଗୂଳ ହେଲ
ବିଜ୍ଞାନେ ଋଷିକୁମାର ଉତ୍ତାନେ ଶୋଇଲ ଯେ ॥
ବିଧୂନନ ଆରମ୍ଭିଲ ପୁରୁଷାୟିତରେ
ବିନପତି ଉପରେ ହରଣୀ ଲୀଳାକରେ ଯେ ॥

(୬।୭୬, ୭୭)

ବାତ୍ସ୍ୟାୟନ ଶାସ୍ତ୍ର ପ୍ରତିପାଦିତ ଚନ୍ଦ୍ରଚାଳନା ଓ ବିପରୀତ ରତିକ୍ରୀଡ଼ା ବିଷୟ ଏଥିରେ ସୂଚିତ ହୋଇଛି ।

ଏତଦ୍‌ବ୍ୟତୀତ ଅଳଙ୍କାରଶାସ୍ତ୍ର, ରସଶାସ୍ତ୍ର, ସଙ୍ଗୀତଶାସ୍ତ୍ର, କର୍ମକାଣ୍ଡ, ଧନୁର୍ବେଦ ଓ ଆୟୁର୍ବେଦ ଇତ୍ୟାଦି ଶାସ୍ତ୍ର ବିଷୟକ ବହୁ ଦୃଷ୍ଟାନ୍ତ 'ବୈଦେହୀଶ ବିଳାସ'ରେ ଦେଖିବାକୁ ମିଳେ । ଏ ସମସ୍ତ ହେଉଛି କବି ଉପେନ୍ଦ୍ରଭଞ୍ଜଙ୍କର ବିବିଧ ଶାସ୍ତ୍ରଜ୍ଞାନର ପରିଚୟସୂଚକ । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟକାରଗଣ ଅଲୌକିକ କବି ପ୍ରତିଭାର ଅଧିକାରୀ ହେବା ସଙ୍ଗେ ସଙ୍ଗେ କିପରି ବିବିଧ ଶାସ୍ତ୍ର ଅଧ୍ୟୟନ ପୂର୍ବକ ଅସାଧାରଣ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ, ଏଥିରୁ ତାହା ସହଜରେ ପ୍ରମାଣିତ ହୋଇଥାଏ ।

# ଉପମା କାଳିଦାସସ୍ୟ

କାଳିଦାସ, ଭାରବି, ମାଘ ଓ ଶ୍ରୀହର୍ଷ—ସଂସ୍କୃତ ସାହିତ୍ୟର ଏହି ଚାରିଜଣ ମହାକବି ସେମାନଙ୍କର କବିତ୍ୱ କୃତି ପାଇଁ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ସେମାନଙ୍କ ରଚନାର ବୈଶିଷ୍ଟ୍ୟ ସମ୍ପର୍କରେ କୁହାଯାଇଛି—

"ଉପମା କାଳିଦାସସ୍ୟ ଭାରବେରର୍ଥ-ଗୌରବମ୍
ନୈଷଧେ ପଦଲାଳିତ୍ୟଂ ମାଘେ ସନ୍ତି ତ୍ରୟୋଗୁଣାଃ ॥"

ଅର୍ଥାତ୍, କାଳିଦାସଙ୍କ କାବ୍ୟର ଉପମାବୈଚିତ୍ର୍ୟ, ମହାକବି ଭାରବିଙ୍କ 'କିରାତାର୍ଜୁନୀୟମ୍'ର ଅର୍ଥଗୌରବ, ଶ୍ରୀହର୍ଷଙ୍କ 'ନୈଷଧ'ର ପଦଲାଳିତ୍ୟ ଏବଂ ମାଘକବିଙ୍କ 'ଶିଶୁପାଳବଧମ୍'ର ଏହି ତ୍ରିବିଧ ବୈଶିଷ୍ଟ୍ୟ ତତ୍କାଳୀନ ଭାରତୀୟ ପଣ୍ଡିତମଣ୍ଡଳୀଙ୍କୁ ବିଶେଷ ଭାବରେ ଉଦ୍‌ବୁଦ୍ଧ କରିଥିଲା । କାଳିଦାସଙ୍କ କାବ୍ୟଗ୍ରନ୍ଥ ଅଧ୍ୟୟନ ପୂର୍ବକ ପଣ୍ଡିତମାନେ ତାହାର ଉପମା ପ୍ରୟୋଗ ଶୈଳୀରେ ଅତ୍ୟନ୍ତ ମୁଗ୍ଧ ହୋଇଯାଉଥିଲେ । ଏହି ଦୃଷ୍ଟିରୁ ଭାରତୀୟ ପରଂପରାରେ କାଳିଦାସଙ୍କୁ 'ଦୀପଶିଖା କାଳିଦାସ' ବୋଲି ଅଭିହିତ କରାଯାଇଥାଏ । ଏହାର କାରଣ ହେଉଛି ଯେ, ବିଖ୍ୟାତ 'ରଘୁବଂଶମ୍' କାବ୍ୟରେ ସେ ରାଜକନ୍ୟା ଇନ୍ଦୁମତୀଙ୍କୁ ଏକ 'ଦୀପଶିଖା' ରୂପେ ବର୍ଣ୍ଣନା କରିଛନ୍ତି । ରଘୁବଂଶର ଏ ସମ୍ପର୍କୀୟ ଶ୍ଳୋକଟି ହେଉଛି—

"ସଞ୍ଚାରିଣୀ ଦୀପଶିଖେବ ରାତ୍ରୌ
ଯଂ ଯଂ ବ୍ୟତୀୟାୟ ପତିମ୍ବରା ସା ।
ନରେନ୍ଦ୍ର ମାର୍ଗାଟ୍ଟ ଇବ ପ୍ରପେଦେ
ବିବର୍ଣ୍ଣଭାବଃ ସ ସ ଭୂମିପାଳଃ ॥"

ଇନ୍ଦୁମତୀଙ୍କ ସ୍ୱୟମ୍ବର ସଭାରେ ବିଭିନ୍ନ ଦେଶର ରାଜା ଓ ରାଜପୁତ୍ରଗଣ ଉପସ୍ଥିତ ଥିଲେ । ଅନୁପମ ରୂପବତୀ ଇନ୍ଦୁମତୀ ଯେତେବେଳେ ସଖୀ ସୁନନ୍ଦାଙ୍କ ସହିତ ବରମାଳା ଧାରଣ କରି ପ୍ରଥମ ରାଜକୁମାରଙ୍କ ନିକଟରେ ଉପସ୍ଥିତ ହେଲେ, ସେହି ସମୟରେ ଉକ୍ତ ରାଜକୁମାରଙ୍କ ମୁଖମଣ୍ଡଳରେ

ପ୍ରସନ୍ନତା ରୂପକ ଆଲୋକରେଖା ପ୍ରକଟିତ ହେଲା । ମାତ୍ର ଇନ୍ଦୁମତୀ ତାହାଙ୍କୁ ଅତିକ୍ରମ କରି ପରବର୍ତ୍ତୀ ରାଜକୁମାରଙ୍କ ନିକଟରେ ଯେତେବେଳେ ଉପସ୍ଥିତ ହେଉଥିଲେ, ସେତେବେଳେ ପୂର୍ବବର୍ତ୍ତୀ ରାଜପୁତ୍ରଙ୍କ ମୁଖରେ ବିଷାଦକାଳିମା ଖେଳିଯିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ରାଜକୁମାରଙ୍କ ମୁଖମଣ୍ଡଳ ହର୍ଷୋତ୍ଫୁଲ୍ଲିତ ହୋଇ ଉଠୁଥିଲା । ଏହି ଘଟଣା ବର୍ଣ୍ଣନା ପ୍ରସଙ୍ଗରେ କବି ଇନ୍ଦୁମତୀଙ୍କୁ ଅନ୍ଧକାର ରାତିରେ ରାଜମାର୍ଗରେ ଗତିକରୁଥିବା ଏକ ଦୀପଶିଖା ବୋଲି ବର୍ଣ୍ଣନା କରିଛନ୍ତି । ଅନ୍ଧକାର ରାତିରେ ରାଜମାର୍ଗରେ ଗତି କରୁଥିବା ଦୀପଶିଖା ଯେଉଁ ପ୍ରାସାଦ ନିକଟରେ ଉପସ୍ଥିତ ହୁଏ, ଉକ୍ତପ୍ରାସାଦ ଆଲୋକିତ ହୋଇଉଠେ । ମାତ୍ର ତାହା ଯେତେବେଳେ ସେହି ପ୍ରାସାଦକୁ ଅତିକ୍ରମ କରେ, ସେତେବେଳେ ତାହା କ୍ରମଶଃ ଅନ୍ଧକାରାଚ୍ଛନ୍ନ ହେବା ସଙ୍ଗେ ସଙ୍ଗେ ଦୀପଶିଖାର ନିକଟବର୍ତ୍ତୀ ପରବର୍ତ୍ତୀ ପ୍ରାସାଦ ଆଲୋକିତ ହୋଇଉଠେ । ଇନ୍ଦୁମତୀଙ୍କ ପ୍ରସଙ୍ଗରେ କବି ଅବିକଳ ଏହି କଥା ଉଲ୍ଲେଖ କରିଛନ୍ତି ।

ଏହିପରି ଭାବରେ ମହାକବି କାଳିଦାସ ତାହାଙ୍କର ବିଭିନ୍ନ କାବ୍ୟରେ ବହୁ ଚମତ୍କାର ଉପମାର ସମାବେଶ ଘଟାଇ ଭାରତୀୟ ବିଦ୍ୱାନମଣ୍ଡଳୀରେ ଶ୍ରେଷ୍ଠ ଉପମା ପ୍ରୟୋଗକାରୀ କବି ଭାବରେ ପ୍ରସିଦ୍ଧି ଅର୍ଜ୍ଜନ କରିଛନ୍ତି ।

ମହାକବି କାଳିଦାସଙ୍କ ତୁଲ୍ୟ କବି ଉପେନ୍ଦ୍ର ଭଞ୍ଜ ମଧ୍ୟ ଉପମା ପ୍ରୟୋଗ କ୍ଷେତ୍ରରେ ଅସାଧାରଣ କୃତିତ୍ୱ ପ୍ରଦର୍ଶନ କରିଯାଇଛନ୍ତି । ଏ ପ୍ରସଙ୍ଗରେ ପ୍ରାଚୀନ ଓଡ଼ିଆ ସାହିତ୍ୟର ବିଖ୍ୟାତ ସମୀକ୍ଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଉକ୍ତି ଉଲ୍ଲେଖଯୋଗ୍ୟ ମନେହୁଏ । ସ୍ୱର୍ଗତଃ ପଣ୍ଡିତ ରଥ ମହୋଦୟ ଉପେନ୍ଦ୍ର, ଦୀନକୃଷ୍ଣ ଓ ଅଭିମନ୍ୟୁଙ୍କ କାବ୍ୟକୃତି ସଂପର୍କରେ କହିଛନ୍ତି—

"ଉପମା ଭଞ୍ଜବୀରସ୍ୟ ତସ୍ୟୈବ ତ୍ୱର୍ଥଗୌରବମ୍
କଲ୍ଲୋଳେ ପଦଲାଳିତ୍ୟଂ ସନ୍ତି ଚିନ୍ତାମଣୌ ତ୍ରୟଃ ॥"

ଅର୍ଥାତ୍, କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରାଜିରେ ଉପଲବ୍ଧ ଉପମାବୈଚିତ୍ର୍ୟ ଓ ଅର୍ଥଗୌରବ, ଭକ୍ତକବି ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ର ପଦଲାଳିତ୍ୟ ତଥା ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିର ଉକ୍ତ ତ୍ରିବିଧ ବୈଶିଷ୍ଟ୍ୟ ତତ୍କାଳୀନ ଓଡ଼ିଆ ସାହିତ୍ୟାନୁରାଗୀ ମାନଙ୍କ ମଧ୍ୟରେ ଏହି କବିତ୍ରୟଙ୍କୁ ସମୁଚିତ ସ୍ଥାନ ପ୍ରଦାନ କରିଥିଲା ।

ଭଞ୍ଜ ସାହିତ୍ୟର ବିଦଗ୍ଧ ପାଠକ ମାନେ "ଉପମା ଭଞ୍ଜସ୍ୟ" ଉକ୍ତିର ଯାଥାର୍ଥ୍ୟ ସହଜରେ ଅନୁଭବ କରିପାରିବେ । ଏହି ଦୃଷ୍ଟିରୁ ଓଡ଼ିଆ ରୀତିକାବ୍ୟ ସମ୍ପର୍କୀୟ ଆଲୋଚନା ପ୍ରସଙ୍ଗରେ ଉପେନ୍ଦ୍ରଭଞ୍ଜଙ୍କ ଉପମାପ୍ରୟୋଗ ଗୁଡ଼ିକୁ ସ୍ୱତନ୍ତ୍ର ଭାବରେ ବିଚାର କରାଯାଇଥାଏ ।

ଭଞ୍ଜସାହିତ୍ୟରେ 'ଉପମାବୈଚିତ୍ର୍ୟ' ବିଷୟ ଆଲୋଚନା କରିବା ପୂର୍ବରୁ ଉପମାଳଙ୍କାରର ବ୍ୟାପକତା ସମ୍ପର୍କରେ ସ୍ପଷ୍ଟ ଜ୍ଞାନ ଲାଭକରିବା ଏକାନ୍ତ ଆବଶ୍ୟକ ମନେହୁଏ । ଭାରତୀୟ ଅଳଙ୍କାର ସାହିତ୍ୟରେ 'ଉପମା' ବିଷୟକ ଆଲୋଚନା ଦୃଷ୍ଟିରୁ ଅପ୍ପୟ ଦୀକ୍ଷିତଙ୍କ ରଚିତ 'ଚିତ୍ରମୀମାଂସା' ନାମକ ଗ୍ରନ୍ଥର ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ଗ୍ରନ୍ଥକର୍ତ୍ତା ଏଥିରେ ଉପମାଳଙ୍କାର ସମ୍ପର୍କୀୟ କେତେଗୋଟି ସ୍ୱତନ୍ତ୍ର ବିଷୟ ଉଲ୍ଲେଖ କରିଛନ୍ତି । ତାହାଙ୍କ ମତାନୁସାରେ ଉପମା ହେଉଛି ବହୁ ଅଳଙ୍କାରର ମୂଳହେତୁ । ଏ ପ୍ରସଙ୍ଗରେ ତାହାଙ୍କ ଉକ୍ତି ହେଉଛି—

"ଉପମୈକା ଶୈଳୁଷୀ ସମ୍ପ୍ରାପ୍ତା ଚିତ୍ରଭୂମିକା ଭେଦାନ୍
ରଞ୍ଜୟନ୍ତୀ କାବ୍ୟରଙ୍ଗେ ନୃତ୍ୟନ୍ତୀ ତଦ୍ୱିଦାଂ ଚେତଃ ॥"

ଅର୍ଥାତ୍ ଉପମା ହେଉଛି ଏକମାତ୍ର ନଟୀ, ଯାହା ବିଭିନ୍ନ ବିଚିତ୍ର ଭୂମିକାରେ କାବ୍ୟରୂପୀ ରଙ୍ଗମଞ୍ଚରେ ନୃତ୍ୟକରେ ଏବଂ କାବ୍ୟବିତ୍‌ମାନଙ୍କ ମନୋରଞ୍ଜନ ବିଧାନ କରେ ।

ଏହାପରେ ଅପ୍ପୟ ଦୀକ୍ଷିତ ମୁଖ ଓ ଚନ୍ଦ୍ରକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ ପୂର୍ବକ ତାହା ମାଧ୍ୟମରେ ଉପମେୟୋପମା, ଉତ୍ପ୍ରେକ୍ଷା, ପ୍ରତୀପ, ସ୍ମରଣ, ରୂପକ, ପରିଣାମ, ସନ୍ଦେହ, ଭ୍ରାନ୍ତିମାନ୍, ଅପହ୍ନୁତି, ଉତ୍ପ୍ରେକ୍ଷା, ଅତିଶୟୋକ୍ତି, ତୁଲ୍ୟ-ଯୋଗିତା, ପ୍ରତିବସ୍ତୂପମା ଇତ୍ୟାଦି ବାଇଶ ଗୋଟି ଅଳଙ୍କାର ବିଷୟ ଉଲ୍ଲେଖ କରିଛନ୍ତି । ଅର୍ଥାତ୍, ଚନ୍ଦ୍ର ଓ ମୁଖ ଏହି ଉପମାନ ଓ ଉପମେୟ ଉକ୍ତ ବାଇଶ ଗୋଟି ଅଳଙ୍କାରର ଅନ୍ତର୍ଭୁକ୍ତ । ଏହି ବାଇଶଗୋଟି ଅଳଙ୍କାରର ମୂଳ ହେଉଛି ଉପମାଳଙ୍କାର । ସୁତରାଂ ଉତ୍ପ୍ରେକ୍ଷା, ରୂପକ, ସ୍ମୃତି, ଅତିଶୟୋକ୍ତି ପ୍ରଭୃତି ଅଳଙ୍କାରକୁ ଉପମାଜାତୀୟ ଅଳଙ୍କାର ରୂପେ ଗ୍ରହଣ କରାଯାଇଥାଏ । ଅତଏବ ଉପମାଳଙ୍କାର ବିଷୟକ ଆଲୋଚନା ପ୍ରସଙ୍ଗରେ ଏହି ସମସ୍ତ ଅଳଙ୍କାରକୁ ବିଚାର-ପରିସରଭୁକ୍ତ କରାଯାଏ ।

ଉପମା ପ୍ରୟୋଗ ଦୃଷ୍ଟିରୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟଗର୍ଭ ଏକ ବହୁମୂଲ୍ୟ ରତ୍ନଭଣ୍ଡାର । ଏଥିରେ କବି ବହୁ ଉପମାଳଙ୍କାର ସହିତ ଉତ୍ପ୍ରେକ୍ଷା, ରୂପକ, ଦୀପକ, ଅତିଶୟୋକ୍ତି ପ୍ରଭୃତି ବିବିଧ ଉପମାଜାତୀୟ ଅଳଙ୍କାରର ସମାବେଶ ଘଟାଇଛନ୍ତି । ଏପରିକି ସ୍ଥାନେ ସ୍ଥାନେ କବି ଶରୀରର ଗୋଟିଏ ଗୋଟିଏ ଅବୟବର ବର୍ଣ୍ଣନା ନିମିତ୍ତ ଏକାଧିକ ଉପମା ପ୍ରୟୋଗ କରିଥିବା ଦେଖାଯାଏ । ଏ ପ୍ରସଙ୍ଗରେ କବିଙ୍କ 'ସୁଭଦ୍ରା ପରିଣୟ'ର ଏକ ଅଂଶ ଅନୁଧ୍ୟାନ ଯୋଗ୍ୟ ମନେହୁଏ । ଏଥିରେ ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ସୁବର୍ଣ୍ଣ ଚମ୍ପା ଶମ୍ପା କୁଙ୍କୁମ　　କେତକୀ ନିଶା ଷଣକୁସୁମ
ଗଉରୀ ହରିତାଳେ ପ୍ରତିମ କାନ୍ତିସଦୃଶୀ ଯେ,
ସଜଳ ଜଳଧର କଜ୍ଜ୍ୱଳ　　ଭୃଙ୍ଗ ତମାଳ କାଳିନ୍ଦୀ ଜଳ
ବରହୀ ପୁଚ୍ଛ ଭ୍ରମର ନୀଳମଣି ସୁକେଶୀ ଯେ,
ସୁକୋମଳା ପଦ୍ମିନୀ ପଦ୍ମସୁବାସୀ
ସ୍ମରଚାପ ସ୍ୱରୂପ ଭ୍ରୂବିଳାସୀ ଯେ,
ସାରଙ୍ଗ ନୀଳକଞ୍ଜ ଖଞ୍ଜନ　　କନ୍ଦର୍ପଶରପୁଞ୍ଜଗଞ୍ଜନ
ଶଫରୀ ଗର୍ବଖର୍ବ ଅଞ୍ଜନରଞ୍ଜନ ଦୃଶୀ ଯେ ।"

ଉକ୍ତ ଉଦ୍ଧୃତିରେ ନାୟିକାର ଶରୀରର କାନ୍ତି, କେଶର କାଳିମା, ଶରୀରର ସୁଗନ୍ଧ ଓ ମୃଦୁତା, ଭ୍ରୂଲତା ତଥା ଚକ୍ଷୁର ଉପମାମାନ ପ୍ରଦତ୍ତ ହୋଇଛି । ଅଙ୍ଗକାନ୍ତିର ବର୍ଣ୍ଣନା ନିମିତ୍ତ କବି ସୁବର୍ଣ୍ଣ, ଚମ୍ପା, ଶମ୍ପା, କୁଙ୍କୁମ, କେତକୀ, ହରିଦ୍ରା, ଷଣକୁସୁମ ଓ ହରିତାଳ—ଏହି ଆଠଗୋଟି ଉପମା ପ୍ରଦାନ କରିଛନ୍ତି । ସେହିପରି କେଶର ନୀଳିମା ବର୍ଣ୍ଣନା ପ୍ରସଙ୍ଗରେ ସଜଳ ଜଳଧର, କଜ୍ଜ୍ୱଳ, ଭୃଙ୍ଗ, ତମାଳ, କାଳିନ୍ଦୀଜଳ, ବରହୀପୁଚ୍ଛ, ଭ୍ରମର ଓ ଇନ୍ଦ୍ରନୀଳମଣି—ଏହି ଆଠଗୋଟି ଉପମା ପ୍ରଦତ୍ତ ହୋଇଛି । ଶରୀରର ସୁଗନ୍ଧ ଓ କୋମଳତା ବର୍ଣ୍ଣନା ନିମିତ୍ତ ପଦ୍ମକୁ ଉପମା ରୂପେ ଗ୍ରହଣ କରାଯାଇଛି । ଭ୍ରୂଲତାର ଉପମା ହେଉଛି—ସ୍ମରଚାପ । ଚକ୍ଷୁର ଚଞ୍ଚଳତା ଓ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ସାରଙ୍ଗ (ମୃଗ), ନୀଳକଞ୍ଜ, ଖଞ୍ଜନ ପକ୍ଷୀ, କନ୍ଦର୍ପର ଶର ଏବଂ ଶଫରୀ ପ୍ରଭୃତି ପାଞ୍ଚଗୋଟି ଉପମା ପ୍ରୟୋଗ କରାଯାଇଛି । ତାହାଙ୍କର ବିଭିନ୍ନ କାବ୍ୟରେ ଏହିପରି ବିବିଧ ଚମତ୍କାର ଉପମାର କମନୀୟ ବିଳାସ ଦେଖିବାକୁ ମିଳେ ।

ଆଲୋଚ୍ୟ 'ବୈଦେହୀଶ ବିଳାସ' କାବ୍ୟରେ କବି ମୁଖ୍ୟତଃ ନାୟକ-ନାୟିକାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ଓ ପ୍ରାକୃତିକ ଶୋଭା ବର୍ଣ୍ଣନା ପ୍ରସଙ୍ଗରେ ଉପମା ପ୍ରୟୋଗ କରିଛନ୍ତି । ନିମ୍ନରେ ଏହାର କେତେକ ଦୃଷ୍ଟାନ୍ତ ପ୍ରଦାନ କରାଗଲା ।

**ନାୟିକା ସୀତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଷେତ୍ରରେ ଉପମା ପ୍ରୟୋଗ—**

ସୀତାଙ୍କ ବାଲ୍ୟ, କୈଶୋର ଓ ଯୌବନ ବର୍ଣ୍ଣନା ପ୍ରସଙ୍ଗରେ କବି ଯେଉଁ ଉପମା ଓ ଉତ୍ପ୍ରେକ୍ଷାର କଳ୍ପନା କରିଛନ୍ତି, ତାହା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି । ଯଥା—

ବାଳକା ଲୀଳା କଉତୁକେ ଅନ୍ତଃପୁରସ୍ଥା ମୋହି
ବାଳ କି ଶୈବାଳ କମଳକୋଷ ଉପରେ ଶୋହି ।
ବାଡ଼ବର ଚନ୍ଦ୍ର ପ୍ରତିମା ପରି ଧରି ତା ଉଭା
ବାଡ଼ବର ମଧ୍ୟେ ପକାଅ ଆନ ସମାନ ଶୋଭା ।
ବିଡ଼ମ୍ବି ନୂତନ ମଞ୍ଜରୀ ତଳିତ କି ପବନେ
ବିଡ଼ମ୍ବଣ ଅନ୍ୟ ଦୃଷ୍ଟି ଯେ ଟଳଟଳ ଗମନେ ।

× × ×

ବେଣୀ ଗୁରୁଶିରେ ଶୁକଳ ରଙ୍ଗ ଫୁଲ ଯତନେ
ବେଣୀ କି ପୂର୍ବ କି ନଭରୁ ହେଉଛନ୍ତି ପତନ ।"

(୩।୨୩—୨୮)

ତାହାଙ୍କର ନବଯୌବନ ଉଦ୍‌ଗମ କାଳୀନ ବର୍ଣ୍ଣନା ପ୍ରସଙ୍ଗରେ କବି ଯେଉଁ ଉପମା ଓ ଉତ୍ପ୍ରେକ୍ଷା ପ୍ରୟୋଗ କରିଛନ୍ତି, ତାହା ମଧ୍ୟ ଏକାନ୍ତ ଅନବଦ୍ୟ ହୋଇଛି । ଉଦାହରଣ ସ୍ୱରୂପ—

"ବର୍ଣ୍ଣମାଳୀ ପରି ରୋମାଳି କି ସେ ସରଦ୍ଧାପନ୍ତି
ବର୍ଣ୍ଣୀୟ ଏହି କରନ୍ତି କି ସେ ଉର୍ଦ୍ଧ୍ୱକୁ ଗତି ।
ବିକଳନା କରି ସଞ୍ଚନ୍ତି ମଧ୍ୟ କଳ୍ପଦ୍ରୁମରେ
ବିକଳପ, ଫଳ ଅଙ୍କୁରୁ ଭଜେ ବୃଦ୍ଧି କ୍ରମରେ ।
ବିଜୟୀ ହୋଇଲା କମ୍ବୁକ ଠାରୁ ତାଳସରିକା
ବିଜୟୀ ହୃଦୟେ ସ୍ୱୟମ୍ଭୂ ରୂପେ କଲେ ଶମ୍ଭୁ କି ।

ବଳଶ୍ରେଷ୍ଠ ଜାନ ତାହାଙ୍କ ବାମ କଲ ପ୍ରହାର
ବଳ ବାଟୁଳ କଣ୍ଠସ୍ତନାଗ୍ର ରୂପେ ସେ ମନୋହର ।"

(୩।୩୭—୪୦)

ସୀତାଙ୍କ କଟୀ, ଗତି, ଉରୁ, ବାହୁ ପ୍ରଭୃତି ବର୍ଣ୍ଣନା ପ୍ରସଙ୍ଗରେ କବି ବ୍ୟତିରେକ ଓ ଉତ୍ପ୍ରେକ୍ଷା ଇତ୍ୟାଦି ଅଳଙ୍କାର ପ୍ରୟୋଗ ପୂର୍ବକ ଲେଖିଛନ୍ତି—

"ବନଧବକୁ ସେ ଜିଣିଲ କଟୀ କୃଶତା ହୋଇ
ବନଧର କେଶୀ କଙ୍କିଣୀ ଜୟବାଦ୍ୟ ବଜାଇ ।

ବଳାହଂସକ ନାଦେ ଗତି ବଢ଼ାଇ କି ଶୁଣାଇ
ବଳାତ୍କାରେ ମନ୍ଦ ସରଣେ ଗଜ ହଂସ ଜିଣାଇ ।

ବାରବେଶ୍ୟା-ଗର୍ବ ଖର୍ବ କରି ଉରୁ ଧାପିତ
ବାରଣଦନ୍ତ କୁନ୍ଦା ସ୍ତମ୍ଭ କି କୁଙ୍କୁମ ଲେପିତ ।

ବାହୁ ଶୋଭା ଗୃହିଁ ମୃଣାଳ କଣ୍ଟକକୁ ବହିଲ
ବାହୁଟି ତାଡ଼ରେ ଜାଣିଲି ସେ ପୂଜା ପାଇଲ ।"

(୩।୪୨—୫୪)

କବିମାନେ ନାରୀମାନଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ସାଧାରଣତଃ ସେମାନଙ୍କୁ ସିଂହକଟୀ, ମରାଳମଗନା ବା ଗଜଗମନା, ରମ୍ଭୋରୁ, ମୃଣାଳବାହୁ ବୋଲି ବର୍ଣ୍ଣନା କରିଥାନ୍ତି । ଏଠାରେ ସୀତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଅବିକଳ ସେହି ରୀତି ଅନୁସରଣ କରିଛନ୍ତି । କବି ବ୍ୟତିରେକ ଅଳଙ୍କାର ମାଧ୍ୟମରେ ଉକ୍ତ ସୌନ୍ଦର୍ଯ୍ୟ ପ୍ରକାଶ କରାଇଛନ୍ତି । କାବ୍ୟର ଅଷ୍ଟମ ଛାନ୍ଦରେ ସୀତାଙ୍କ ମୁଖର ବିଭିନ୍ନ ଅବୟବର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଯେଉଁ-ପରି ଭାବରେ ବ୍ୟତିରେକ, ଅତିଶୟୋକ୍ତି ଇତ୍ୟାଦି ଅଳଙ୍କାରର ସମାବେଶ ଘଟାଇଛନ୍ତି, ତାହା ଏକାନ୍ତ ଅନବଦ୍ୟ ହୋଇଛି । ଦଶମ ଛାନ୍ଦରେ ମଧ୍ୟ କବି ସୀତାଙ୍କ ବେଶ ବର୍ଣ୍ଣନା କରିବାକୁ ଯାଇ ବହୁ ଉପମା, ଉତ୍ପ୍ରେକ୍ଷା ଓ ରୂପକ ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରୁ ନିମ୍ନ ଦୁଇଟି ପଦ ଏଠାରେ ବିଚାରଣୀୟ—

"ବାଳେଲିପି ଅଳ୍ପ ତଇଳ ଶାମଳ
ବାରଣଦନ୍ତ ପ୍ରସାଧନୀ ଗୃଳ

ବିଭାବସୁଜା-କଲ୍ଲୋଳରେ ଭାସେ
ବିକଶି ଆସିଲା କୁମୁଦ କି ସେ ସେ
ବାନ୍ଧିଲେ ଚୂଡ଼ା ଯତନେ ଯେ
ବନ୍ଦୀ ହୋଇଲା ମର୍କତ କୁନ୍ତବେଣୀରେ
ବନ୍ଦୀ ହେବେ ମନମୀନ ଯେ ॥
ବିତୁଲ ମଥାମଣି ମାଣିକ୍ୟର
ବିଭାଗ ସୀମନ୍ତ ସିନ୍ଦୂର ଗାର
ବନ୍ଧବସ୍ତ୍ରେ ଭଡ଼ ପାଟସୂତ୍ରରେ
ବିଧୁନ୍ତୁଦ ଗଳ ମିତ୍ର ହସ୍ତରେ ଯେ
ବିଧିବଶେ କିବା ପଡ଼ଯେ
ବକୁଳ ଗର୍ଭିକ ସୁଧା ଉଦ୍‌ଗାରୁଛି
ଭୟରୁ ନ ଦେଇ ଗ୍ରାଡ଼ ଯେ ॥" (୧୦।୪—୫)

ଉକ୍ତ ଉଦ୍ଧୃତିରେ କବିଙ୍କର ଅପୂର୍ବ କଳ୍ପନାଶକ୍ତି ସହିତ ତାହାଙ୍କର ଉପମା ପ୍ରୟୋଗ-କୌଶଳ ଏକ ଉଲ୍ଲେଖ ଯୋଗ୍ୟ ବିଷୟ ।

## ଅନ୍ୟାନ୍ୟ ବିଭିନ୍ନ ପ୍ରସଙ୍ଗରେ ଉପମା ପ୍ରୟୋଗ—

କାବ୍ୟର ନବମ ଛାନ୍ଦରେ ସେହିପରି କବିଙ୍କ ଉପମା ପ୍ରୟୋଗ ଶକ୍ତି ଲକ୍ଷ୍ୟ କରିବା କଥା । ତନ୍ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରିବା ଯଥାର୍ଥ ମନେହୁଏ । ରାମଚନ୍ଦ୍ର, ଲକ୍ଷ୍ମଣ ଓ ବିଶ୍ୱାମିତ୍ର ମିଥିଳା ନଗରୀ ଦେଇ ଗମନ କରିବା ଦୃଶ୍ୟ ବର୍ଣ୍ଣନା କ୍ଷେତ୍ରରେ କବି ବହୁ ଉପମା ଓ ଉପମା ଜାତୀୟ ଅଳଙ୍କାରର ସମାବେଶ ଘଟାଇଛନ୍ତି । ଉଦାହରଣ ସ୍ୱରୂପ ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣଙ୍କୁ ଯଥାକ୍ରମେ ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱର ରୂପେ ମିଥିଳା ବାସୀଗଣ ଯେଉଁପରି କଳ୍ପନା କରିଥିଲେ, ସେ ପ୍ରସଙ୍ଗରେ କବି ଲେଖିଛନ୍ତି—

" × × ×

ବିପଣିରେ ଥିଲେ ଜନେ ଭାବନା କଲେ ଦର୍ଶନେ
ଆଗତ କି ଧାତାହରି ମଧ୍ୟରେ ହର ।" (୯।୭)

ଏହି ଗ୍ରନ୍ଥରେ କବି ଯେଉଁ 'ବିପୁର ଲୀଳା'ର କଳ୍ପନା କରିଛନ୍ତି, ତାହାଙ୍କ ଉପମା ପ୍ରୟୋଗ ଚାତୁରୀ ତହିଁରେ ଲକ୍ଷ୍ୟ କରିବା କଥା । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର କଳ୍ପନା କରିବାକୁ ଯାଇ କବି ଲେଖିଛନ୍ତି—

ବିବୁଧାଳୟ ନଗରୀ ସ୍ଥିତ ନାରୀ ସୁରୀ-ଭ୍ରାନ୍ତି
ସୁମନା ମନମୋହନ ଛବି ଯାହାର
ବଳି ବାହାରିଲି ପରି ନାଗ-ନାଗରୀ ଚାତୁରୀ
ମଣି-ଭୂଷଣୀ ମଧୁରୁ ଯେତେ ବାହାର
ବେଶରେ ତ ମାନବୀ ସର୍ବେ
ବିଶୁଦ୍ଧ ବିପୁର ଲୀଳା ତହିଁ ସମ୍ଭବେ ॥" (୯।୧୬)

ରାମ ଓ ଲକ୍ଷ୍ମଣଙ୍କୁ ଦେଖି ମିଥିଳାବାସୀଙ୍କ ମନରେ ଯେଉଁ ଭାବନା ପ୍ରକାଶ ପାଇଥିଲା, ସେହି ବିଷୟ ବର୍ଣ୍ଣନା ପ୍ରସଙ୍ଗରେ ଅପୂର୍ବ ଉପମା ପ୍ରୟୋଗ ଚାତୁରୀ ପ୍ରକଟିତ ହୋଇଛି । ଯଥା—

"ବାମୀ କାଳେ ଭାନୁବାମା ପ୍ରସବ ସୂନୁ ସୁଷମା
ଲକ୍ଷିତି ହୁଅନ୍ତା ଆନ ଆନନ ଶ୍ରୀ
ବରନ ବସନ ଧରେ ନୀଳପୀତ ପରସ୍ପରେ
ସ୍ମରମଧୁ ଆଲିଙ୍ଗନ ବହିଲି ଶୋଭା
ବହିଲିତ ଦମ୍ଭ ଅନାଇ
ବାସ କଲି ଚିତ୍ତ ରାମ ଲକ୍ଷ୍ମଣେ ଯାଇ ॥" (୯।୧୭)

ଶିବ ଧନୁର ବର୍ଣ୍ଣନା ପ୍ରସଙ୍ଗରେ କବିଙ୍କ ଉପମା ହେଉଛି—

"ବିଭାବସୁ ବିଭାବସୁ ଏକ ସ୍ଥାନେ ଏ କି ବିଶୁଁ
ଭାବି ନେନି ବୁଜ ମୁଖ ପଛକୁ କଲେ
ବିନେ ନିଦ୍ରା ହରି ବୃଷ ବିନେ ନିଦ୍ରା ହରି ବୃଷ
ଦେଖି ଯଥା ପଳାୟିତ ତଥା ହୋଇଲେ
ବାସେ ଯାଇ କେତକୀ ପାଶେ
ବସେ ପଲାଶେ ଭୃଙ୍ଗାଳି କି ସ୍ୱଭାବୁଁ ସେ ॥" (୯।୩୨)

ଲକ୍ଷ୍ମଣଙ୍କଦ୍ୱାରା ନାସା କର୍ଣ୍ଣ ଛେଦିତା ହେବାପରେ ରକ୍ତ ଜର୍ଜରିତା ହୋଇ ଯେତେବେଳେ ସୂର୍ପଣଖା ପଳାୟନ କରୁଛି, ତାହାର ସେହି ଅବସ୍ଥାରେ

ବର୍ଣ୍ଣନା ପ୍ରଦାନ କରିବାକୁ ଯାଇ କବି ଅତ୍ୟନ୍ତ ଚମତ୍କାର ଉପମା ପ୍ରୟୋଗ କରିଛନ୍ତି—

"ହିନାସୁଁ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର
ବୃକ୍ଷ ପାଟଳୀରୁ ଫୁଲ ଝାଡ଼ି ଉଡ଼ି ଯାଉଛି କି ଝାର ।
ବହେ ନେତ୍ରୁ ଅଶ୍ରୁ ପତ୍ରୁ କି ପଡ଼ୁଛି ପଡ଼ିଲା ତୁଷାର
ବାରବାୟୁରେ ଧୈର୍ଯ୍ୟ ମୂଳ ଉପୁଡ଼ି ପଡ଼ିଲା ପ୍ରକାର ॥" (୨୦।୧)

ଅଷ୍ଟାବିଂଶ ଛାନ୍ଦରେ କବି ଯେଉଁ କେତୋଟି ଉପମା ପ୍ରୟୋଗ କରିଛନ୍ତି, ତାହା ଯେଉଁ ପରି ସରଳ, ସେହିପରି ହୃଦୟସ୍ପର୍ଶୀ ହୋଇଛି । ଯଥା—

(କ) ସୁଗ୍ରୀବର ପରାକ୍ରମ ବର୍ଣ୍ଣନା ପ୍ରସଙ୍ଗରେ—

"ବଳବନ୍ତ ହେଲେ ଯଥା କେଶରୀ
ବଧେ ଗଜାଦି ଶରଭକୁ ଡରି ।" (୨୮।୯)

(ଖ) ରାମଚନ୍ଦ୍ର ଦୁନ୍ଦୁଭି ଅସ୍ଥିକୁ ଯେତେବେଳେ ଆକାଶକୁ ନିକ୍ଷେପ କଲେ, ତାହା ଦେଖି ମିଥିଳାବାସୀଙ୍କ କଳ୍ପନା—

"ହିତର୍କିଲେ ସେ ମଇନାକ ଉଡ଼ି
ବଜ୍ର ଘାଏ ବହୁତ ଦୂରେ ପଡ଼ି ।" (୨୮।୨୧)

(ଗ) ସୁଗ୍ରୀବ ଯୁଦ୍ଧ କରିବା ନିମିତ୍ତ ଯେତେବେଳେ ବାଳୀକୁ ଆହ୍ୱାନ କରୁଛି, ସେ ପ୍ରସଙ୍ଗରେ ଉଲ୍ଲିଖିତ ହୋଇଛି—

"ଘୋର ଡାକ ସଜିଲା ଅତି ଟାଣ
ବର୍ଷା ହିନା କି ଗର୍ଜେ ମେଘ ଦ୍ରୋଣ ।" (୨୮।୫୦)

(ଘ) ବାଳୀଠାରୁ ଆଘାତ ପ୍ରାପ୍ତ ହୋଇ ସୁଗ୍ରୀବ ଯେତେବେଳେ ପ୍ରାଣ ଭୟରେ ପଳାୟନ କରିଛି, ସେହି ପ୍ରସଙ୍ଗରେ କବିଙ୍କ ବର୍ଣ୍ଣନା ହେଉଛି—

"ବଳେଇକଲେ ଏତିକ ଗୃପଧାରୀ
ବିଦ୍ୟୁ ଝଟକେ ଲୀନ ହେଲାପରି ।

ବିପଥ ଯେ ଶୁଷ୍କନଦୀ ସନ୍ନିଭ

ବଳି-ଜଳ ପଡ଼ି ଶୀଘ୍ର ସହଜ ।

× × ×

ବୃଷଦଂଶ ଭୟେ ଯଥା ଇନ୍ଦୁର

ବାହାରଇ ନାହିଁ ନିଜ ବିବର ।” (୨୮।୫୪—୬୦)

(ଙ) ସୁଗ୍ରୀବକୁ ଦେଖି କିଷ୍କିନ୍ଧ୍ୟାବାସୀମାନଙ୍କ ଭାବନା—

“ବିସ୍ମୟେ କିଷ୍କିନ୍ଧ୍ୟାବାସୀ ଗୃହିଁ

ବୋଲେ ପୀତବାସ ହେଲା କି ତହିଁ ।

ବୋଲେ କେ ଖଗବନ୍ଧ ପକ୍ଷ ଥିବ

ବିଶେଷରେ ତେଜରହ ସମ୍ଭବ ।

ବୋଲେ ଅପୂର୍ବ ଶିବ ହେବ କାହିଁ

ବିଭୂଷଣେ ଫୁଲମାଳୀ ସେବଇ ।

ବୋଲେ କେ କର୍ମ ଉଦ୍ଦେଶ୍ୟ ହିଁ ଖ୍ୟାତ

ବିଧିରେ ହଂସ ତୋଷଦାନେ ସ୍ୱତ ।

ବୋଲେ କେହି ବନୌକାସାର ଏହି

ବାଞ୍ଛା ଭସ୍ମ ଚିତାରେ କି କରଇ ॥” (୨୮।୬୧—୬୫)

(ଚ) ବାଳୀ-ସୁଗ୍ରୀବ ଯୁଦ୍ଧ ବର୍ଣ୍ଣନା—

“ବଗ୍ଧବର ଦ୍ୱୀପୀ ଭେଟାଭେଟି

ବଗ୍ଧବ ରଣ ଯଥା ରଟି ।

ବିବାଦୀ କି ସଉଷ୍ଣ କୁଳ ଦୁଇ

ବିଶୃଙ୍ଖଳ ଗର୍ବବଶେ କମ୍ପଇ ।

ବ୍ୟାଳଯୁଗ କି ଖେଳ ଗଡ଼ାଗଡ଼ି

ବୃକ୍ଷ ପାଷାଣ ଉନ୍ମୂଳଗି ଛୁଡ଼ି ।

ବାଳି ସୁଗ୍ରୀବ ଉପରେ ବସିଲା

ବାଜ ଶୁକକୁ କି ମାଡ଼ି ବସିଲା ।

× × ×

ବିଘ୍ନ ରାଜ ମୂଷିକ କର ଯମ

ବନ୍ଧନରେ ପାଶରେ ଯଥା କ୍ଷମ ।” (୨୮।୯୦—୯୬)

(ଛ) ବାଳିର ମୃତ୍ୟୁକାଳୀନ ଦୃଶ୍ୟ ବର୍ଣ୍ଣନା ପ୍ରସଙ୍ଗରେ ଉପମା ପ୍ରୟୋଗ ଦୃଷ୍ଟବ୍ୟ—

"ବିଚଞ୍ଚଳ ନେତ୍ରମୀନ ସ୍ତବଧ
ବିକଶିଲା ନାହିଁ ହାସକୁମୁଦ ।
ବାଳିବରେ ଯେମନ୍ତ ଶୁଷ୍କ ହ୍ରଦ
ବାର୍ତ୍ତାବନ୍ତୁ ତାର ଶୁଣି ବିଷାଦ ।" (୨୮।୧୩୯—୧୪୦)

(ଜ) ତାରର ଶୋକ ବର୍ଣ୍ଣନା ପ୍ରସଙ୍ଗରେ କବିଙ୍କ ଉପମା ପ୍ରୟୋଗ ଦୃଷ୍ଟବ୍ୟ ହୋଇଛି—

"ବାଳ ଫିଟି ଲୋଟେ ପୃଷ୍ଠେ ଧାବନ୍ତେ
ବାରିଦ କି ଖେଳେ ହେମ ପର୍ବତେ ।
ବିକ ଖସିଲା ପର ପୁଷ୍ପ ପଡ଼େ
ବାଷ୍ପଜଳ ନୟନଯୁଗୁଁ ଗଡ଼େ ।
ବିଲୋଚନୁ ଦ୍ରବି ବହେ କଜ୍ଜଳ
ବିକ୍ରପାଶେ ଚଞ୍ଚଳିତ ତାଟଙ୍କ ।
ବିକାରେ କି ବାତର ଶୋକ-ଜଳେ
ବେନି କମଳତର ତୀର ଚଳେ ।
ବକ୍ଷୋଜରୁ ଖସେ ହାର ମୁକୁତା
ବସୁନ୍ଧର ମାରବନ୍ଧୁ ଶୋଭିତା ॥" (୨୮।୧୪୧—୧୪୫)

## ପ୍ରାକୃତିକ ଶୋଭା ବର୍ଣ୍ଣନା ପ୍ରସଙ୍ଗରେ ଉପମା ପ୍ରୟୋଗ—

ଭଞ୍ଜ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା ପ୍ରସଙ୍ଗରେ ମଧ୍ୟ ବହୁ ଉପମାର ସମାବେଶ ଦେଖିବାକୁ ମିଳେ । ଗଣିଗଣି ଦୃଷ୍ଟାନ୍ତ ମଧ୍ୟରୁ ଗୋଟିଏ ଦୁଇଟି ଉଦାହରଣ ଏଠାରେ ପ୍ରଦାନ କଲେ ଯଥେଷ୍ଟ ହେବ ।

"ବୈଦେହୀଶ ବିଳାସ"ର ସପ୍ତମ ଛାନ୍ଦରେ କବି ସିଦ୍ଧବନର ଶୋଭା ବର୍ଣ୍ଣନା କରିଛନ୍ତି । ବନଶୋଭା ବର୍ଣ୍ଣନା ପ୍ରସଙ୍ଗରେ କବି ଅଦ୍ଭୁତ, ଦ୍ୱିଜ, ବନିତା, କବି ଓ ସଙ୍ଗୀତଶାଳା ଇତ୍ୟାଦି ଉପମା ପ୍ରଦାନ କରିଛନ୍ତି । ଯଥା—

"ବନର କେଉଁ ପ୍ରଦେଶ ଅର୍ପିତ ପ୍ରକାର
ବସ୍ତ୍ରକ ଅନୁଭବରେ ଶିଖୀ ଶୋଭାକର ।
ବରୁଣ ଦେବବଲ୍ଲଭ ଉଦୟ କରନ୍ତି
ବହୁ ସୁମନା ସନ୍ତୋଷ କର ହୋଇଅଛି ।
ବନର କେଉଁ ପ୍ରଦେଶ ଦନ୍ତ ଛବି ଧରି
ବର୍ଜନିତ ଦୈତ୍ୟଗଣ ରୂପ ଅଛି ଧରି ।
ବସ୍ତାରନ୍ତି ପ୍ରବଳ ଲୀଳାକୁ ନିରନ୍ତର
ବିଶେଷିତ ମୂନ ନଗରେ ସେ ମନୋହର ।
ବନର କେଉଁ ପ୍ରଦେଶ ରଞ୍ଜନେ ରଞ୍ଜନ
ବନିତା ପ୍ରାପ୍ତେ ଅରୁଣ ସୁପର୍ଣ୍ଣ ସୁମନ ।
ବନର କେଉଁ ପ୍ରଦେଶ କଦ୍ରୁ ଛବି ବହି
ବହୁସ୍କନ୍ଧର ହୋଇଛି ନାଗଈଶ୍ୱରହିଁ ।
ବନର କେଉଁ ପ୍ରଦେଶ ସଙ୍ଗୀତର ଶାଳା
ବ୍ୟୋମନ୍ତସିକା ନର୍ତ୍ତନେ ହୋଇଅଛି ମେଳା ।
ବରକ ଗନ୍ଧର୍ବଗାନେ ଖ୍ୟାତ ସାତସ୍ୱର
ବିତାନ ହୋଇଣ ପିକ ଜାତ ମନୋହର ।"

(୭ । ୬—୧୩)

କାବ୍ୟର ଷଷ୍ଠଛାନ୍ଦରେ କବି ପ୍ରଭାତ ବର୍ଣ୍ଣନା ପ୍ରସଙ୍ଗରେ ଏକ ସୁନ୍ଦର ଉପମା ପ୍ରୟୋଗ କରିଛନ୍ତି । ପ୍ରଭାତର ସୂର୍ଯ୍ୟୋଦୟକୁ କବି ହସ୍ତିନୀର ଶାବକ ପ୍ରସବ ଦୃଶ୍ୟ ରୂପେ କଳ୍ପନା ପୂର୍ବକ ଲେଖିଛନ୍ତି—

"ବାସବ ଦିଗେ ଅଭ୍ରମୁ କରିଣୀ
ବିଜନ୍ୟ କଳ ରକ୍ତପିଣ୍ଡ ଜାଣି
ବିମ୍ବ ସବିତାର ଦିଶି ଆସିଲା
ବିଞ୍ଚ କର୍ଣ୍ଣେ ଶୀତ ବାତ ସେ ହେଲା ।।" (୬।୩୦)

ପଞ୍ଚମଛାନ୍ଦରେ କବି ସନ୍ଧ୍ୟା ବର୍ଣ୍ଣନା କରିବାକୁ ଯାଇ ଅତି ସୁନ୍ଦର ଉପମା ଓ ଉତ୍ପ୍ରେକ୍ଷାର ସମାବେଶ ଘଟାଇଛନ୍ତି । ଯଥା—

"ବିଧିନୁଦ ପ୍ରାପ୍ତ ହୋଇ ସନ୍ଧ୍ୟା ଆସିଲା
ବିବସ୍ୱାନଗ୍ରାସୀ ରଙ୍ଗଭାବ ଦିଶିଲା ।
ବାଳୀ ସେ କାଳୀ ପିଧାନ୍ନ କ ପାଟଶାଢ଼ୀ
ବିହିଲେ କ ପରସ୍ୱରେ କାଳନ୍ଦୀ ଜଡ଼ି ।
ବନଜାର-କର କଟୁ ଆସିଲା ଦିଶି
ବାରୁଣୀ-ବିବେଣୀଘାଟେ ପଡ଼ିଲା ଘୋଷି ।
ବିସ୍ମୃତ ପକ୍ଷେ ଦିବାନ୍ଧ ଦ୍ରୁମଖ ଦ୍ୱିଜେ
ବିକାଶି ଶ୍ଳୋକବାଣୀକି ବିହାରେ ମଜ୍ଜେ ।"

(୫ । ୧୩—୧୭)

ଏହିପରି ଭାବରେ କାବ୍ୟର ବିଭିନ୍ନ ସ୍ଥାନରେ କବି ପ୍ରକୃତି ବର୍ଣ୍ଣନା ପ୍ରସଙ୍ଗରେ ନାନାବିଧ ଉପମା ପ୍ରୟୋଗ କରିଛନ୍ତି ।

କବି ଉପେନ୍ଦ୍ର ଭଞ୍ଜଙ୍କ ଉପମା ପ୍ରୟୋଗ କୃତିତ୍ୱ କିପରି ଅତି ଉଚ୍ଚ-କୋଟୀର ଥିଲା, ଏହି ବର୍ଣ୍ଣନାରୁ ସ୍ପଷ୍ଟ ଅବଧାରଣ କରିହୁଏ । ବିଭିନ୍ନ ବର୍ଣ୍ଣନାରେ କବି ସ୍ୱକୀୟ କଳ୍ପନାବିଳାସ ଫୁଟାଇବାକୁ ଯାଇ ଉପମାଳଙ୍କାରର ଯେଉଁ ଅପୂର୍ବ ସମାବେଶ ଘଟାଇଛନ୍ତି, ତାହା ବାସ୍ତବରେ ଏକାନ୍ତ ଅନବଦ୍ୟ ହୋଇଛି । ସମସାମୟିକ ଓ ପରବର୍ତ୍ତୀ କାଳର ବହୁ ଓଡ଼ିଆ କବି ଉପେନ୍ଦ୍ର ଭଞ୍ଜଙ୍କର ଉକ୍ତ ଉପମାପ୍ରୟୋଗ କୃତିତ୍ୱ ଦ୍ୱାରା ପ୍ରଭାବିତ ହୋଇଥିବା ଦେଖାଯାଏ । ଭଞ୍ଜ ସାହିତ୍ୟରେ ଉପମାର ଯେଉଁ ବିରାଟ ରତ୍ନଭଣ୍ଡାର ସୃଷ୍ଟି ହୋଇଛି, ତାହା ସମଗ୍ର ଭାରତୀୟ ସାହିତ୍ୟରେ ଏକାନ୍ତ ଦୁର୍ଲ୍ଲଭ । କବି ତାହାଙ୍କର ବିଭିନ୍ନ କାବ୍ୟରେ ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଷେତ୍ରରେ ବହୁ ସ୍ଥାନରେ "ନାହିଁ ନଥିଲା ନୋହିବ" ବୋଲି ଲେଖିଛନ୍ତି । ବର୍ତ୍ତମାନ ତାହାଙ୍କ ଉପମା ପ୍ରୟୋଗ କୃତିତ୍ୱ ବିଷୟ ଆଲୋଚନା କରିବାକୁ ଗଲାବେଳେ ଏହି ଉକ୍ତିହିଁ ଏଥିପ୍ରତି ପ୍ରଯୁଜ୍ୟ ମନେହୁଏ । ଅର୍ଥାତ୍ ଉପେନ୍ଦ୍ରଭଞ୍ଜଙ୍କ ଉପମା ପ୍ରୟୋଗକୃତିତ୍ୱ 'ନ ଭୂତୋ ନ ଭବିଷ୍ୟତି' ।



# ନୈଷଧୀୟ ଚିନ୍ତା

ମହାକବି ଶ୍ରୀହର୍ଷଙ୍କ 'ନୈଷଧ' କାବ୍ୟ ଭାରତୀୟ ସାରସ୍ୱତ ଭଣ୍ଡାରରେ ଏକ ବହୁମୂଲ୍ୟ ସମ୍ପଦ ରୂପେ ବିବେଚିତ ହୋଇଥାଏ । ସଂସ୍କୃତ 'ଷଟ୍‌କାବ୍ୟ' ମଧ୍ୟରେ ଏହା ସର୍ବାଧିକ କବିତ୍ୱବିଳସିତ ଓ ପାଣ୍ଡିତ୍ୟପୂର୍ଣ୍ଣ କୃତି ରୂପେ ଗୃହୀତ ହୋଇଛି । ଏହାର କବିତ୍ୱପୂର୍ଣ୍ଣ ଉଚ୍ଚାଙ୍ଗ କଳ୍ପନା, ବିଚିତ୍ର ଶବ୍ଦବିନ୍ୟାସ ଶୃଙ୍ଖଳା ଓ ମନୋରମ ପରିବେଷଣ ପରିପାଟୀ କାବ୍ୟଟିକୁ ଭାରତୀୟ ବିଦ୍ୱାନ୍‌ମଣ୍ଡଳୀରେ ଗତ ବହୁ ଶତାବ୍ଦୀ ଧରି ବିଶେଷ ଲୋକପ୍ରିୟତା ପ୍ରଦାନ କରିଛି । ଏହି କାବ୍ୟଟି ରଚିତ ହେବାପରେ ତାହାର କବିତ୍ୱବିକାଶ ଭାରତୀୟ ପଣ୍ଡିତମାନଙ୍କୁ ଏପରି ଭାବରେ ଉଦ୍‌ବୁଦ୍ଧ କରାଇଲା, ଯାହାଫଳରେ ସେମାନଙ୍କ ଦୃଷ୍ଟିରେ ମାଘ କବିଙ୍କ 'ଶିଶୁପାଳବଧ' ଓ ଭାରବିଙ୍କ 'କିରାତାର୍ଜୁନୀୟମ୍' ତୁଲ୍ୟ କୃତିର ମହତ୍ତ୍ୱ ମଧ୍ୟ ହ୍ରାସ ପାଇଗଲା । ଏହି କାରଣରୁ 'ନୈଷଧୀୟ' କାବ୍ୟର ଗୌରବ ସମ୍ପର୍କରେ କୁହାଯାଇଛି—

"ତାବଦ୍ ଭା ଭାରବେଃ ଭାତି
ଯାବନ୍ମାଘସ୍ୟ ନୋଦୟଃ
ଉଦିତେ ନୈଷଧେ କାବ୍ୟେ
କ୍ୱ ମାଘଃ କ୍ୱ ଚ ଭାରବିଃ ।।"

ଅର୍ଥାତ୍ ଯେତେବେଳେ ପର୍ଯ୍ୟନ୍ତ ମାଘକାବ୍ୟର ଆତ୍ମପ୍ରକାଶ ଘଟିନଥିଲା, ସେହି ସମୟ ପର୍ଯ୍ୟନ୍ତ ଭାରବିଙ୍କ 'କିରାତାର୍ଜୁନୀୟମ୍'ର କାନ୍ତି ପ୍ରକାଶିତ ହେଉଥିଲା । ମାତ୍ର ମାଘକାବ୍ୟ (ଶିଶୁପାଳ ବଧ) ସୃଷ୍ଟି ହେବା ପରେ କିରାତାର୍ଜୁନୀୟମ୍‌ର ମହତ୍ତ୍ୱ ହ୍ରାସ ପାଇଗଲା । ଯେତେବେଳେ ଶ୍ରୀହର୍ଷଙ୍କ 'ନୈଷଧ' ମହାକାବ୍ୟ ଉଦିତ ହେଲା, ସେତେବେଳେ 'କିରାତାର୍ଜୁନୀୟମ୍' ଓ 'ଶିଶୁପାଳବଧ' ଏହି ଉଭୟ କୃତି ଅତ୍ୟନ୍ତ ନଗଣ୍ୟ ବୋଧହେଲା ।

'ନୈଷଧ' କାବ୍ୟ କାହିଁକି ଭାରତୀୟ ପଣ୍ଡିତମଣ୍ଡଳୀରେ ଏପରି ଗୌରବମୟ ସ୍ଥାନର ଅଧିକାରୀ ହେଲା, ସେ ସମ୍ପର୍କରେ କେତେକ ବିଷୟ ଏଠାରେ ଉଲ୍ଲେଖ କରିବା ନିତାନ୍ତ ଆବଶ୍ୟକ ମନେହୁଏ ।

'ନୈଷଧ'ର ପ୍ରଥମ ସର୍ଗରେ ମହାରାଜା ନଳଙ୍କ ଯଶ, ଗୁଣାବଳୀ ଓ ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଛି । ତାହାଙ୍କ ପାଦର ରକ୍ତିମା, ହସ୍ତର କାନ୍ତି ଓ ମୁଖର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

"ଅଧାରି ପଦ୍ମେଷୁ ତଦଙ୍ଘ୍ରିଣା ଘୃଣା
କ୍ୱ ତଚ୍ଛୟଚ୍ଛାୟ୍ଯ ଲବୋଽପି ପଲ୍ଲବେ
ତଦାସ୍ୟ ଦାସ୍ୟେଽପି ଗତୋଽଧିକାରିତାଂ
ନ ଶାରଦଃ ପାର୍ବିକ-ଶର୍ବରୀକରଃ ।।"

(୧।୨୦)

ଏଠାରେ ନଳଙ୍କ ପାଦର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ 'ପଦ୍ମ' ଶବ୍ଦର ଅର୍ଥ ବିଶ୍ଳେଷଣ କରାଯାଇଛି । ପଦ (ପାଦ)ର ମା (ଶୋଭା)ପରି ଶୋଭା ଯାହାର, ସେ 'ପଦ୍ମ' । ଅର୍ଥାତ୍ କବି ଶ୍ରୀହର୍ଷ କମଳ (ପଦ୍ମଫୁଲ)ର ନାମ କାହିଁକି 'ପଦ୍ମ' ହେଲା, ତାହାର କାରଣ ନିର୍ଦ୍ଦେଶ କରିଛନ୍ତି । ସେ କହିଛନ୍ତି ଯେ, ନଳଙ୍କ ପାଦର କୋମଳତା ଓ ରକ୍ତିମା ପଦ୍ମଠାରେ ଥିବାଯୋଗୁଁ ତାହାର ଏପରି ନାମକରଣ ହୋଇଛି । ସେହିପରି ବୃକ୍ଷର କଅଁଳିଆ ପତ୍ରକୁ କାହିଁକି 'ପଲ୍ଲବ' କୁହାଯାଉଛି, ସେ ସମ୍ପର୍କରେ ଶ୍ରୀହର୍ଷ କବି କହିଛନ୍ତି, ନଳଙ୍କ ପାଦର ଲବମାତ୍ର ଗୁଣ (ରକ୍ତିମା ଓ କୋମଳତା) ହାସଲ କରିଥିବାରୁ ବୃକ୍ଷର କୋମଳ ପତ୍ରକୁ 'ପଲ୍ଲବ' କୁହାଯାଇଛି ।

ଏହା ହେଉଛି ନୈଷଧୀୟ କଳ୍ପନାର ଗୋଟିଏ ଦୃଷ୍ଟାନ୍ତ ।
ସେହିପରି ଅନ୍ୟ ଏକ ଦୃଷ୍ଟାନ୍ତ ନିଆଯାଉ—

ଦମୟନ୍ତୀଙ୍କ କେଶପାଶର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ନୈଷଧକାର ଲେଖିଛନ୍ତି—

"ଚିକୁର ପ୍ରକରା ଜୟନ୍ତି ତେ
ବିଦୁଷୀ ମୂର୍ଦ୍ଧନି ସା ବିଭର୍ତ୍ତି ଯାନ୍ ।
ପଶୁନାଽପ୍ୟ ପୁରସ୍କୃତେନ ତତ୍
ତୁଳନାମିଚ୍ଛତୁ ଚାମରେଣ କଃ ।।"

(୨।୨୦)

ଅର୍ଥାତ୍, କବିମାନେ ନାୟିକାର କେଶପାଶର ସୌନ୍ଦର୍ଯ୍ୟ ବର୍ଣ୍ଣନା କଲବେଳେ ତାହାକୁ ଚାମରକେଶୀ ବୋଲି ଉଲ୍ଲେଖ କରିଥାନ୍ତି । ମାତ୍ର ଦମୟନ୍ତୀଙ୍କ କେଶର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ତାହାଙ୍କୁ "ଚାମରକେଶୀ କହିବା ଯଥାର୍ଥ ନୁହେ ବୋଲି କବି କହିଛନ୍ତି । କାରଣ, ଚାମର ଚମରୀ ମୃଗ (ଯାହା କି ଏକ ପଶୁ)ର ପୁଚ୍ଛରୁ ସଂଗୃହୀତ ହୁଏ । ଉକ୍ତ ଚାମର ଏତେ ନିକୃଷ୍ଟ ଯେ, ସୌନ୍ଦର୍ଯ୍ୟଜ୍ଞାନଶୂନ୍ୟ ପଶୁ ମଧ୍ୟ ତାହାକୁ ନେଇ ନିଜ ଶରୀରର ପଛଭାଗରେ ରଖିଛି । ଅତଏବ କେଉଁ ବିବେକରେ ବା ପଶୁଦ୍ୱାରା ମଧ୍ୟ ଅପୁରସ୍କୃତ (ଶରୀରର ପଛ ଭାଗରେ ଥିବା) ଚାମର ସହିତ ଦମୟନ୍ତୀଙ୍କ ମନୋରମ କେଶପାଶ ତୁଳନୀୟ ହେବ ?

ଏ ସମଗ୍ର 'ନୈଷଧକାବ୍ୟ'ରେ ଏତାଦୃଶ ଉଚ୍ଚାଙ୍ଗ କବିତ୍ୱବ୍ୟଞ୍ଜକ ଗଣିଗଣି ଶ୍ଳୋକ ରହିଛି । କବି ଉପେନ୍ଦ୍ରଭଞ୍ଜଙ୍କୁ ନୈଷଧର ଏହି କବିତ୍ୱକୌଶଳ ଯଥେଷ୍ଟ ପରିମାଣରେ ମୁଗ୍ଧ କରିଥିଲା । ଏହା ସଙ୍ଗେସଙ୍ଗେ ତତ୍କାଳୀନ ଓଡ଼ିଶାରେ ପଣ୍ଡିତମାନେ ବହୁଳ ପରିମାଣରେ ନୈଷଧ କାବ୍ୟ ଚର୍ଚ୍ଚା କରୁଥିଲେ । ଓଡ଼ିଆ କାବ୍ୟରେ ମଧ୍ୟ କିପରି ନୈଷଧତୁଲ୍ୟ ବିଲକ୍ଷଣ କଳ୍ପନାଚାତୁରୀ ଓ ଶବ୍ଦବିନ୍ୟାସ କୌଶଳ ପ୍ରକାଶ କରାଯାଇପାରେ, ତାହା ଉପେନ୍ଦ୍ରଭଞ୍ଜ ସ୍ୱ ରଚନାବଳୀ ମାଧ୍ୟମରେ ପ୍ରମାଣ କରିଦେଇଥିଲେ । କବି 'ବୈଦେହୀଶ ବିଳାସ'ରେ ନୈଷଧୀୟ କବିତ୍ୱ ଚାତୁରୀର କେତେକ ହିଭାବ ଫୁଟାଇଛନ୍ତି ।

'ଉକ୍ତ କାବ୍ୟର' ବିଭିନ୍ନ ଛାନ୍ଦରେ ସନ୍ନିବେଶିତ ନାୟିକା ସୀତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ପାଠ କଲେ, କବିଙ୍କ ନୈଷଧକାବ୍ୟାନୁରକ୍ତି ସହଜରେ ଅନୁମାନ କରି ହେବ । ତନ୍ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦାନ କରାଗଲା ।

ସୀତାଙ୍କ ଅଧରର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି —

ବନ୍ଧ୍ କରିବାର ଇଚ୍ଛିଲା ଯେଣୁ ଅଧର ତୁଲେ,
ବନ୍ଧୁକ ନାମହିଁ ରହିଲା ତେଣୁ ରକତ ଫୁଲେ ।

(୩।୫୬)

ଅର୍ଥାତ୍, ବନ୍ଧୁଲି ଫୁଲର ଅନ୍ୟ ନାମ ହେଉଛି 'ବନ୍ଧୁକ ଫୁଲ' । ଏହା ସ୍ୱଭାବତଃ ଲାଲବର୍ଣ୍ଣର । ଏହାର ନାମ କାହିଁକି 'ବନ୍ଧୁକ'ଫୁଲ ହେଲା, ସେ ସମ୍ପର୍କରେ

କବି ଉପେନ୍ଦ୍ର ଭଞ୍ଜ କହିଛନ୍ତି ଯେ, ସାଧାରଣତଃ ନାରୀମାନଙ୍କ ଓଷ୍ଠ ଓ ଅଧରକୁ ବଧୂଲି ଫୁଲ ସହିତ ତୁଳନା କରାଯାଇଥାଏ । ସୁତରାଂ ବଧୂଲିଫୁଲ ଉଦ୍ୟାନ ଭବରେ ନାରୀମାନଙ୍କ ଓଷ୍ଠ ଓ ଅଧର ଅପେକ୍ଷା ଅଧିକ ଲାଲବର୍ଣ୍ଣ । ମାତ୍ର ସୀତାଙ୍କ ଅଧରର ରକ୍ତିମା ବନ୍ଧୁଲି ଫୁଲକୁ ଯଥେଷ୍ଟ ପରିମାଣରେ ବଳି ପଡ଼ିଲା । ଅତଏବ ବଧୂଲି ସୀତାଙ୍କ ରକ୍ତିମା ନିକଟରେ ପରାଜିତ ହେଲା । ଏହି କାରଣରୁ ସେ ଅନ୍ୟ ଉପାୟ ନଦେଖି ସୀତାଙ୍କ ଅଧର ସହିତ ବନ୍ଧୁ ହେବାକୁ ଇଚ୍ଛାକଲା । ସେଥିପାଇଁ ତାହାର ନାମ 'ବନ୍ଧୁକ ଫୁଲ' ରଖାଗଲା ।

'ନୈଷଧ' କାବ୍ୟରେ 'ପଲ୍ଲବ' ଓ 'ପଦ୍ମ'ର ନାମଗତ ତାତ୍ପର୍ଯ୍ୟ ପ୍ରତିପାଦନ ତୁଲ୍ୟ ଏଠାରେ ମଧ୍ୟ କବି ଉପେନ୍ଦ୍ରଭଞ୍ଜ 'ବନ୍ଧୁକ'ର ନାମଗତ ତାତ୍ପର୍ଯ୍ୟ ଉଲ୍ଲେଖ କରିଛନ୍ତି ।

'ବୈଦେହୀଶ ବିଳାସ'ର ଅଷ୍ଟମ ଛାନ୍ଦରେ ଏହିପରି ବହୁ ଦୃଷ୍ଟାନ୍ତ ରହିଛି ।

ସୃଷ୍ଟିର ସର୍ବାପେକ୍ଷା ସୁନ୍ଦରୀ ସ୍ତ୍ରୀ 'ରତି'ର ଏପରି ନାମକରଣ କାହିଁକି ହେଲା, ସେ ସମ୍ପର୍କରେ କବି ଲେଖିଛନ୍ତି—

× × ×

"ବିଲକ୍ଷ ସ୍ମରପ୍ରିୟାଟି ସ୍ମର ରତି ନାମକୁ ପାଏ ।" (୮ । ୫)

କନ୍ଦର୍ପର ସ୍ତ୍ରୀ ବିଶ୍ୱର ଅଦ୍ୱିତୀୟା ସୁନ୍ଦରୀ ହେଲେ ମଧ୍ୟ ସୀତାଙ୍କ ସୌନ୍ଦର୍ଯ୍ୟ ସମକ୍ଷରେ ତାହାର ସୌନ୍ଦର୍ଯ୍ୟ ଅତି ନଗଣ୍ୟ ବୋଧହେଲା । 'ରତି'ର ଅର୍ଥହେଉଛି ଓଜନର ଏକ କ୍ଷୁଦ୍ର ଅଂଶ ବିଶେଷ । ଏଥି ପ୍ରତି ଦୃଷ୍ଟି ଦେଇ ବିଧାତା କନ୍ଦର୍ପର ସ୍ତ୍ରୀକୁ 'ରତି' ନାମରେ ନାମିତ କଲେ, ଯଦ୍ଦ୍ୱାରା ସୀତାଙ୍କ ସୌନ୍ଦର୍ଯ୍ୟର ରତିଏ ବା ସାମାନ୍ୟ ଅଂଶ ମାତ୍ର ତାହାଙ୍କଠାରେ ଅଛି ବୋଲି ଜଣାଗଲା ।

ପାଟଳି ଫୁଲର ନାମକରଣ ସମ୍ପର୍କରେ ମଧ୍ୟ କବି ଉପେନ୍ଦ୍ରଭଞ୍ଜ ଏକ ଚମତ୍କାର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ସେ ଲେଖିଛନ୍ତି—

× × ×

"ବୋଲୁ ପାଟଳି ପା ବୋଲୁ ଟଳିବାର ଉପମା ଝଳା ।" (୮ । ୧୫)

ଅର୍ଥାତ୍ ପାଟଳ ଫୁଲ ସୀତାଙ୍କ ପାଦର ରକ୍ତିମାର ଏକ ଚତୁର୍ଥାଂଶ (ଏକପା) ସହିତ ମଧ୍ୟ ସମାନ ହେଲ ନାହିଁ । ଫଳରେ ତାହାଙ୍କ ପାଦର ଏକ ପାଅ ସୌନ୍ଦର୍ଯ୍ୟ (ଏକ ଚତୁର୍ଥାଂଶ ସୌନ୍ଦର୍ଯ୍ୟ) କଥା ଉଠିବା ମାତ୍ରେ ଉକ୍ତ ଆରକ୍ତ ବର୍ଣ୍ଣର ଫୁଲ ଟଳି ପଡ଼ିଲା । ଏହି କାରଣରୁ ତାହାକୁ 'ପାଟଳି' (ପା+ଟଳି) ବୋଲି କୁହାଯାଇଛି ।

ଏହିପରି ଭାବରେ ଅଷ୍ଟମ ଛନ୍ଦରେ କବି ସୀତାଙ୍କ ମୁଖର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ନୈଷଧୀୟ ଛଟାରେ ଗୋରୋଚନା, ତିଳ, ମନ୍ଦାର, ମୁକ୍ତା ପ୍ରଭୃତିର ନାମକରଣର ତାତ୍ପର୍ଯ୍ୟ ବୁଝାଇଛନ୍ତି । ଅନ୍ୟାନ୍ୟ କବିଙ୍କ ଛନ୍ଦରେ ମଧ୍ୟ ଭୂଜାକୋଟି, ତିଳକ, ରମ୍ଭୋରୁ, ଇତ୍ୟାଦି ଶବ୍ଦର ବିଚିତ୍ର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ନୈଷଧ କାବ୍ୟରେ କବି ଦମୟନ୍ତୀଙ୍କ ନାମକରଣର ସାର୍ଥକତା ବୁଝାଇଲ ପରି କବି ଉପେନ୍ଦ୍ରଭଞ୍ଜ ଲୋପାମୁଦ୍ରା ଓ ତାଙ୍କ ନାମକରଣର ସାର୍ଥକତା ପ୍ରତିପାଦନ କରିଛନ୍ତି ।

କାବ୍ୟର ୩ୟ ଛନ୍ଦରେ ସୀତାଙ୍କ ଅଧରର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ବନ୍ଧୁଲି ଅଧର ବୋଲିବା ଯୁକ୍ତ ଅର୍ଥରେ ଆନ
ବନ୍ଧୁ କରେ ତହିଁ ଉପରେ ହାସ ପ୍ରକାଶ ମାନ ।"

(୩।୫୫)

ଏହା ନୈଷଧ'ର ନିମ୍ନ ଶ୍ଳୋକର ଅନୁରୂପ ଭୂଳି ପ୍ରତୀତ ହୁଏ—

"ଅଧରଂ ଖଳୁ ବିମ୍ବନାମକଂ
ଫଳମସ୍ମାଦିତି ଭବ୍ୟମନ୍ୱୟମ୍,
ଲଭତେ ଽଧରବିମ୍ବମିତ୍ୟଦଃ
ପଦମସ୍ୟା ରଦନଚ୍ଛଦଂ ବଦତ୍ ।।"  (୨ ।୨୪)

ସୀତାଙ୍କ ମୁଖର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ କବି 'ବୈଦେହୀଶ ବିଳାସ'ରେ ଲେଖିଛନ୍ତି,—

"ବିଧୁ ସମୁଦ୍ର ମନ୍ଥନୁ ଚନ୍ଦ୍ର ଜନମ ଯେଉଁକାଳେ
ବିହୀନ କ୍ଷୀଣ କଳଙ୍କେ ଜାଣ ନିର୍ମଳ ହୋଇଥିଲେ ।

ବନ୍ଧନେ ଜାନକୀର ସମାନ ମନ ଜାଣିଚି ବହୁ
ବନ୍ଧ ବେଷ୍ଟନ ନୋହିଲ ବର୍ଣ୍ଣ ଘଟେବଟି କାଟି ଦେଇ ।
(୮ । ୬)

ଏହି ଭାବ 'ନୈଷଧ'ର ନିମ୍ନ ଶ୍ଳୋକରୁ ଗୃହୀତ ହୋଇଥିବା ସ୍ପଷ୍ଟ ପ୍ରତୀତ ହୁଏ—

"ତଦୋ ଜସଧ୍ରଦ୍ୟଶସଃ ସ୍ଥିତାବମୌ
ଦୃଡ଼ଥିତି ଚଡ଼େ କୁରୁତେ ଯଦା ଯଦା ।
ତନୋତି ଭାନୋଃ ପରିବେଷକୈ ତଦାତଦା
ବିଧିଃ କୁଣ୍ଡଳନଂ ବିଧୋରପି ॥" (୧ । ୧୪)

ସୂର୍ପଣଖା ସୀତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ରାବଣ ସମକ୍ଷରେ କହୁଛି—

"ବଦନ ଓଷ୍ଠ ସୁଷମା କରି ପୁଷ୍ଟ
ପୂର୍ଣ୍ଣିମୀ ପ୍ରାଚୀ କି
ବିଧି ବାଳାର୍କ ବ୍ୟାଜେ ରୌପ୍ୟ ମାଣିକ୍ୟ
ସ୍ଥାଳୀ କି ରଚି କି ।
ବନ୍ଦାଇ ମାସକେ ରଚେ କେ ଉତ୍ତରକେ
କେ ନିତି ବନ୍ଦାଇ
ବହିଗ ଆଳି ଦିକାଳେ ହୁଳହୁଳି
ତହିଁକି କି ଦେଇ ॥"
(୨୪ । ୬)

ନୈଷଧର ନିମ୍ନ ଶ୍ଳୋକ ସହିତ ଏହା ତୁଳନୀୟ—

"ଧୃତ ଲାଞ୍ଛନ ଗୋମୟାଞ୍ଜନଂ
ବିଧୁମାଲେପନ ପାଣ୍ଡୁରଂ ବିଧିଃ
ଭ୍ରମୟ-ଚ୍ୟୁଚିତଂ ବିଦର୍ଭଜା—
ନନନୀରଜନ ବର୍ଦ୍ଧମାନକମ୍ ॥"
(୨।୨୬)

'ବୈଦେହୀଶ ବିଳାସ'ର ଦ୍ୱାଦଶ ଛନ୍ଦରେ ସୀତାଙ୍କ ଚନ୍ଦ୍ରନନ୍ଦା ଓ ସ୍ୱରନନ୍ଦା ଇତ୍ୟାଦି ଯେଉଁପରି ଭାବରେ ବର୍ଣ୍ଣିତ ହୋଇଛି, ତହିଁରେ ନୈଷଧ

କାବ୍ୟର ଚତୁର୍ଥ ସର୍ଗସ୍ଥ 'ଚନ୍ଦ୍ରୋପାଲମ୍ଭ'ର ଭାବ ସ୍ପଷ୍ଟ ଫୁଟି ଉଠିଛି । ତନ୍ମଧ୍ୟରୁ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରାଯାଇପାରେ—

'ବୈଦେହୀଶ ବିଳାସ'ରେ ସୀତାଙ୍କ ବିରହକାଳୀନ ଅବସ୍ଥା ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

ବାରେବାରେ ଶିବଶିବ ସେ ଘୋଷେ
ବାରେବାରେ ଗ୍ରତମାନ ମନାସେ
ବାରେବାରେ ନାହିଁ ମୂର୍ଚ୍ଛାରେ ସଖୀ
ବାରେବାରେ ଭୟ ଫଣୟ ରଖି
ବନରୁହ ନାଡ଼
ବନଜାକ୍ଷୀ ଦେଖି ଚନ୍ଦ୍ର ଗରୁଡ଼ ॥"

(୧୨।୪)

ଏଥିପାଇଁ କବି 'ନୈଷଧ'ର ନିମ୍ନ ଶ୍ଳୋକରୁ ପ୍ରେରଣା ଲାଭ କରିଥିବା ଅନୁମିତ ହୁଏ—

"ବିରହ ତାପିନି ଚନ୍ଦ୍ରପାଂସୁଭିବର୍ଷୁଷି
ସାର୍ପିତ-ପାଣ୍ଡି ମମଣ୍ଡନା
ବିଷଧରା ଭବିସାଭରଣା ଦଧେ
ରତିପତିଂ ପ୍ରତି ଶମ୍ଭୁବିଭୀଷିକାମ୍ ॥"

(୪।୨୭)

ଦ୍ୱାଦଶ ଛାନ୍ଦର ସପ୍ତମ ପଦରେ ସୀତାଙ୍କ ଚନ୍ଦ୍ରନିନ୍ଦା ଯେଉଁପରି ଭାବରେ ସନ୍ନିବେଶିତ ହୋଇଛି, ତାହା ନୈଷଧ କାବ୍ୟର ଚତୁର୍ଥ ସର୍ଗସ୍ଥ ୪୩ ଶ୍ଳୋକଠାରୁ ୭୪ ଶ୍ଳୋକ ମଧ୍ୟରେ ବର୍ଣ୍ଣିତ ବିଷୟର ସାରପର୍ଯ୍ୟାସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତତ୍କାଳୀନ ଓଡ଼ିଶାରେ ନୈଷଧକାବ୍ୟର ବହୁଳ ଚର୍ଚ୍ଚା ଦୃଷ୍ଟିରୁ କବି ଉପେନ୍ଦ୍ର ଭଞ୍ଜ ତାହାଙ୍କ ରଚନାବଳୀରେ ନୈଷଧୀୟ ଛଟାର ପରିପ୍ରକାଶ ଘଟାଇଛନ୍ତି । 'ବୈଦେହୀଶ ବିଳାସ' ଏହାର ଯଥାର୍ଥ ଦୃଷ୍ଟାନ୍ତ । ଏଥିରେ ନୈଷଧୀୟ ଶବ୍ଦପ୍ରୟୋଗ ଶୃଙ୍ଖଳା, ଉଚ୍ଚକୋଟୀର କଳ୍ପନାବିଳାସ ତଥା ମନୋଜ୍ଞ କବିତ୍ୱବିଳାସ ପ୍ରକଟିତ ହୋଇଛି ।

# କବିଙ୍କ ଭକ୍ତିମତ୍ତା

କବି ଉପେନ୍ଦ୍ରଭଞ୍ଜଙ୍କ ଭକ୍ତିଭାବନା ହେଉଛି ତାହାଙ୍କ କାବ୍ୟରାଜିର ଅନ୍ୟତମ ବୈଶିଷ୍ଟ୍ୟପୂର୍ଣ୍ଣ ବିଷୟ । ସେ ତାହାଙ୍କ ପ୍ରତ୍ୟେକ ରଚନାର ପ୍ରାରମ୍ଭରେ ନିଜର ଅଭୀଷ୍ଟ ଦେବତାଙ୍କୁ ସ୍ତୁତି କରିଥିବା ଦେଖାଯାଏ । କେଉଁଠାରେ ରାମ, କେଉଁଠାରେ ପଞ୍ଚ ଦେବଦେବୀ ଓ କେଉଁଠାରେ ଜଗନ୍ନାଥ ହେଉଛନ୍ତି କବିଙ୍କ ବନ୍ଦନୀୟ ଦେବତା । ବହୁ ସ୍ଥାନରେ ସେ ନିଜକୁ ରାମଚନ୍ଦ୍ରଙ୍କର ପରମ ଭକ୍ତ ବୋଲି ପ୍ରକାଶ କରିଛନ୍ତି ।

'ବୈଦେହୀଶ ବିଳାସ'ର ପ୍ରାରମ୍ଭ ଭାଗରେ କବି ବିଭିନ୍ନ ଦେବଦେବୀଙ୍କୁ ସ୍ତୁତି କରିଥିବା ଦେଖାଯାଏ । ଉକ୍ତ କାବ୍ୟର ପ୍ରଥମ ଛାନ୍ଦର ପ୍ରଥମ ଦୁଇଟି ପଦକୁ ଓଡ଼ିଶାର ଛାନ୍ଦାର୍ଥୀଗଣ ଶିବ, ବିଷ୍ଣୁ, ଦୁର୍ଗା, ସୂର୍ଯ୍ୟ, ଗଣେଶ ଓ ରାମଚନ୍ଦ୍ର ଏହିପରି ବିଭିନ୍ନ ଦେବଦେବୀଙ୍କ ପକ୍ଷରେ ଅର୍ଥ କରିଥାନ୍ତି । ପ୍ରଥମ ଛାନ୍ଦର ତୃତୀୟ ପଦରେ କବି ନିଜର ତାରକମନ୍ତ୍ରସିଦ୍ଧି ବିଷୟ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି—

''ବିଷ୍ଣୁର ଶ୍ରବା ବ୍ରହ୍ମାଣ୍ଡେଶ୍ୱର ପରମ ପଦ ଭଜିଲି ନର
ଲଭେ ଏ ଯେନି ଗ୍ରନ୍ଥ ଆଦ୍ୟର ଭାବିତ ତାଙ୍କୁ ଯେ,
ବଂଶ ଯାହାର ଠାରୁ ଉତ୍ପତ୍ତି କବି ବିଗ୍ରହରେ ସେ ଦେବେ ସ୍ତୁତି
ବିଧାନ କରି ଅତି ସୁମତି ଆଣ ମନକୁ ଯେ,

× × ×

ବନାଇ ଚିତ୍ତ ଅନବରତ ଭାଗ୍ୟେ ତ୍ରିହଣ ତାରକମନ୍ତ୍ର
ସୀତା ଶ୍ରୀରାମ ଚରିତ ଗୀତ କୃତେ ଲାଳସ ଯେ ॥'

(୧/୩)

ଉକ୍ତ ଉଦ୍ଧୃତିର ଶେଷଭାଗରେ କବି ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଯେ, ବିଖ୍ୟାତ ରାମତାରକମନ୍ତ୍ରରେ ସିଦ୍ଧି ଲଭ କରି ରାମଚନ୍ଦ୍ର ଓ ସୀତା ଚରିତ ବିଷୟକ କାବ୍ୟ ରଚନା ନିମିତ୍ତ ସେ ଲାଳସା ପ୍ରକାଶ କରିଛନ୍ତି । କାବ୍ୟର

ଶେଷଭାଗରେ ମଧ୍ୟ କବି ନିଜର ରାମତାରକମନ୍ତ୍ର ସିଦ୍ଧି ବିଷୟ ଉଲ୍ଲେଖ କରିଛନ୍ତି ଏବଂ ଏହାର ପ୍ରଭାବରେ ସେ ସୀତାରାମ ବିଷୟକ କାବ୍ୟ ରଚନା କରିଛନ୍ତି । ଏହା ତାହାଙ୍କର ଏକ ପରମ ସିଦ୍ଧି ବୋଲି ସେ କହିଛନ୍ତି—

"ବୀରବର ପଦ ଉପଇନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇଁ ସୀତାରାମ ଯେ ।
ବିଶଦ କବିତ୍ୱମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ ସିଦ୍ଧି ଯେ ।"

(୫୨/୫୦,୫୧)

କାବ୍ୟରେ ଅନ୍ୟାନ୍ୟ ବହୁ ଛାନ୍ଦରେ ମଧ୍ୟ କବିଙ୍କ ଐକାନ୍ତିକ ଭକ୍ତିଭାବନା ପ୍ରକାଶ ପାଇଛି । ବହୁଳ ଛାନ୍ଦର ଶେଷ ଭାଗରେ ତାହାଙ୍କ ଆଶୀର୍ବଶ୍ୱାସ ପ୍ରକଟିତ ହୋଇଥିବା ଦେଖାଯାଏ । ଉଦାହରଣ ସ୍ୱରୂପ—

(କ) ବିରଚି ବୀରବର ଉପେନ୍ଦ୍ର ଭଞ୍ଜ ସ୍ୱଚ୍ଛନ୍ଦେ ବିଶଦ ଛାନ୍ଦ
ଚିନ୍ତି ନିଶ୍ଚିନ୍ତ ମାଲାଦ୍ରି ଚନ୍ଦ୍ର ଧ୍ୟାନ ସଫଳେ ଯେ ॥ (୧।୨୨)

(ଖ) ବାସ କରନ୍ତୁ ସେହି ସୀତାଲୀଳା ସଦା ମୋ ହୃଦ
ବାଛି ପଦେ ଉପଇନ୍ଦ୍ର ଭଞ୍ଜ କହେ ଏ ଛାନ୍ଦ ॥ (୩।୬୨)

(ଗ) ବାତ୍ସଲ୍ୟ ରସ ବର୍ଣ୍ଣନେ ରାମଚନ୍ଦ୍ରର
ବଚନ ମନ ପବିତ୍ର ହୋଇଲା ମୋର ॥ (୫ । ୯୧)

(ଘ) × × ×

ବଇଦେହୀଜା ପଦ ଗୁଣି ଯେ,
ବଂଶଣ୍ଡ ପଦେ ଏ ଛାନ୍ଦ ଉପଇନ୍ଦ୍ର
ଭଞ୍ଜ ବୀରବର ଭଣି ଯେ ॥ (୧୦ । ୨୦)

(ଙ) × × ×

ବଂଶପଦେ ଶେଷ ଶେଷଶାୟୀ ଚିନ୍ତି
ଉପଇନ୍ଦ୍ର ଭଞ୍ଜ କହିଲେ ॥ (୧୧ । ୨୦)

(ଚ) ବୀରବର ଭଞ୍ଜ ସୀତାରାମଙ୍କୁ ଧ୍ୟାୟିଲି
ବାଷଠି ଛାନ୍ଦେ ଏ ଗ୍ରନ୍ଥ ଶେଷକୁ ବହିଲି ।। (୧୬ । ୬୨)

(ଛ) ବଶି ଧ୍ୟାନ ମାନସେ ବୀର ରସ ସପ୍ତପଦେ
ବୋଲିଲେ ଭଞ୍ଜ ଉପଇନ୍ଦ୍ର ବେନବଂଶ ଛାନ୍ଦେ ଯେ ।।
(୧୯ । ୪୦)

(ଜ) ବୟାଳିଶ ଛାନ୍ଦେ ଗ୍ରନ୍ଥ
ବିରଚିନ ବୀରବର ଚିନ୍ତି ରାମଚନ୍ଦ୍ର । (୨୫ । ୪୨)

(ଝ) ବନ୍ଦେ ବୀରବର ଭଞ୍ଜ ଆନନ୍ଦେ ।
ବଇଦେହୀଶ ଚରଣାର ବନ୍ଦେ । (୨୮ । ୧୭୩)

ଏହି ସମସ୍ତ ଉକ୍ତିରେ କବି ଜଗନ୍ନାଥ, ରାମ ଓ ସୀତାଙ୍କ ପ୍ରତି ସ୍ୱକୀୟ ଭକ୍ତି ଭାବନା ପ୍ରକାଶ କରିଛନ୍ତି ।

ଭକ୍ତକବି ମାନେ ସେମାନଙ୍କ ରଚନାବଳୀରେ ବିଭିନ୍ନ ଘଟଣା ବର୍ଣ୍ଣନା ତଥା କେତେକ ଚରିତ୍ର ମାଧ୍ୟମରେ ବେଳେବେଳେ ନିଜନିଜ ଭକ୍ତିଭାବନା ପ୍ରକାଶ କରିଥାନ୍ତି । କବି ଉପେନ୍ଦ୍ରଭଞ୍ଜ ମଧ୍ୟ ସେହିପରି ବୈଦେହୀଶ ବିଳାସରେ ବିଭିନ୍ନ ସ୍ତୁତି ତଥା ଘଟଣା ବିନ୍ୟାସ ମାଧ୍ୟମରେ ଆପଣାର ଭକ୍ତିଭାବନା ଉଦ୍ଘାଟନ କରିଛନ୍ତି । ତନ୍ମଧ୍ୟରୁ କେତୋଟି ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରାଗଲା ।

କାବ୍ୟର ଦ୍ୱିତୀୟ ଛାନ୍ଦରେ ବ୍ରହ୍ମାଦି ଦେବଗଣଙ୍କ ସ୍ତୁତି ଉଲ୍ଲିଖିତ ହୋଇଛି । ସେହି ସ୍ତୁତି ମାଧ୍ୟମରେ କବିଙ୍କ ଭକ୍ତିମନ୍ତ୍ର ପ୍ରକାଶ ପାଇଛି । ଯଥା-—

"ବିହିତ ଲୀଳା ରେହିତ ରୋହିତ ମୂରତି
ବେଗେ ଦର ଦୈତ୍ୟ ଦରଦାନେ ହେଲି ରତି ହେ ।
ବହି ଅମନ୍ଦ ମନ୍ଦର କୂର୍ମ ନମୋ ନମ
ବାରିଧି ଅମୃତ ମନ୍ଥୁ ଅମୃତ ଜନମ ଯେ ।।
ବିପକ୍ଷେ ଦେବାରି ବାରି ବରଷିଲ ସୁଧା
ବିଶ୍ୱ ମୋହିତ ମୋହିନୀ ରୂପରେ ବିଶୁଦ୍ଧା ଯେ ।।

ବରାହବର ବରାହବର ସୁପଣ୍ଡିତ
ବଲ୍ଲଭ ମହୀର ହିରଣ୍ୟାକ୍ଷ୍ୟଙ୍କୁ ଖଣ୍ଡିତ ଯେ ॥
ବପୁବନ୍ତ ହରି ହରି ପ୍ରହ୍ଲାଦ ପୁଣ୍ୟକୁ
ବିଦାରିଲ କଣ୍ଠ ଚିରି କରି ହିରଣ୍ୟଙ୍କୁ ଯେ ॥
ବାମନ ମନମୋହନ ହୋଇ ଭୂଦାନରେ
ବଳିଷ୍ଠ ବଳୀକି ଚାପି ଅଧୋ ଭୁବନରେ ଯେ ॥
ବିଭୁ ଭୃଗୁବଂଶପର ପରଶୁ ଧାରଣ
ବାହୁଜ ବାହୁ ସହସ୍ର ଦାରଣ କାରଣ ହେ ॥"

(୨ । ୪—୧୦)

ଏଥିରେ କବି ଭଗବାନ ବିଷ୍ଣୁଙ୍କର ମତ୍ସ୍ୟାବତାର ଠାରୁ ଆରମ୍ଭ କରି ପରଶୁରାମାବତାର ପର୍ଯ୍ୟନ୍ତ ଲୀଳା ସଂକ୍ଷିପ୍ତ ଭାବରେ ବର୍ଣ୍ଣନା ପୂର୍ବକ ସ୍ୱକୀୟ ଐଶୀ ଭକ୍ତି ପ୍ରକାଶ କରିଛନ୍ତି ।

ପୁନଶ୍ଚ ଏହି ଛାନ୍ଦରେ କ୍ଷୀରାବ୍ଧିଶାୟୀ ବିଷ୍ଣୁଙ୍କ ପ୍ରତି ଶିବଙ୍କ ଉକ୍ତି ମାଧ୍ୟମରେ ମଧ୍ୟ କବିଙ୍କ ଭକ୍ତିଭାବନା ପ୍ରକଟିତ ହୋଇଛି । ଏକନିଷ୍ଠ ରାମଭକ୍ତ ଉପେନ୍ଦ୍ର ଶିବଙ୍କ ମୁଖରେ ପ୍ରକାଶ କରାଇଛନ୍ତି—

" ×    ×    ×

ବିଭୋ ତାର ଯେଉଁ ନାମ ତାରକ ମନ୍ତ୍ର ଯେ ।
ବହି ସେହି ମୂରତି ରଖିଣ କୋଟି ଜଡ
ବାଞ୍ଛାଦ୍ଭୁ ହେ ପୁରୁଷୋତ୍ତମ ମୁଁ ଭାବିତ ହେ ।"

(୨ । ୧୭,୧୮)

ନବମ ଛାନ୍ଦରେ କୈବର୍ତ୍ତର ଭକ୍ତି ଏବଂ ୨୮ଶ ଛାନ୍ଦରେ ସୁଗ୍ରୀବର ସ୍ତୁତି ମାଧ୍ୟମରେ କବିଙ୍କ ଭକ୍ତିତତ୍ତ୍ୱ ପ୍ରକାଶ ପାଇଛି । କବି ଉପେନ୍ଦ୍ରଭଞ୍ଜ ଥିଲେ ଭଗବାନ ରାମଚନ୍ଦ୍ର ଓ ସୀତା ଏବଂ ଓଡ଼ିଶାର ଆରାଧ୍ୟ ଦେବତା ଜଗନ୍ନାଥଙ୍କର ଏକନିଷ୍ଠ ଭକ୍ତ । ରାମଚରିତ ମୂଳକ 'ବୈଦେହୀଶ ବିଳାସ' କବିଙ୍କ ଅନ୍ତରର ଏକନିଷ୍ଠ ଭକ୍ତିଭାବନାର ପରିଚାୟକ । ଉକ୍ତ କାବ୍ୟର ବିଭିନ୍ନ ଛାନ୍ଦରେ ବିଭିନ୍ନ ପ୍ରସଙ୍ଗରୁ ତାହାଙ୍କ ଭକ୍ତିମତର ଯଥାର୍ଥ ସ୍ୱରୂପ ଉପଲବ୍ଧ ହୋଇଥାଏ ।



# ଓଡ଼ିଆ ରାମସାହିତ୍ୟ
# ଓ
# ବୈଦେହୀଶ ବିଳାସ

ଓଡ଼ିଆ ଭାଷାରେ ରାମସାହିତ୍ୟର ପରଂପରା ଅତ୍ୟନ୍ତ ଉନ୍ନତ ଓ ବ୍ୟାପକ । ବହୁ ପ୍ରାଚୀନ କାଳରୁ ଲୋକମୁଖରେ କବିତା ଓ କାହାଣୀ ମାଧ୍ୟମରେ ରାମକଥା ପରିବେଷିତ ହୋଇଥିବା ଦେଖାଯାଏ । ପରବର୍ତ୍ତୀକାଳରେ ପୁରାଣ, ତନ୍ତ୍ରଗ୍ରନ୍ଥ, କାବ୍ୟ ଓ ନାଟକ ଇତ୍ୟାଦି ରୂପରେ ରାମସାହିତ୍ୟ ସୃଷ୍ଟି ହୋଇଛି । ଏହି ଦୃଷ୍ଟିରୁ ଓଡ଼ିଆ ରାମସାହିତ୍ୟକୁ ପାଞ୍ଚଗୋଟି ବିଭାଗରେ ଆଲୋଚନା କରାଯାଇପାରେ । ଯଥା—(୧) ଲୋକସାହିତ୍ୟ, (୨) ପୁରାଣ, (୩) ତନ୍ତ୍ର ବା ଦର୍ଶନ ମୂଳକ ରାମସାହିତ୍ୟ, (୪) କାବ୍ୟ, ମହାକାବ୍ୟ ଓ ଖଣ୍ଡକାବ୍ୟ ଏବଂ (୫) ନାଟକ ଓ ବିଭିନ୍ନ ଗଦ୍ୟରଚନା ।

## ୧ । ଲୋକ ସାହିତ୍ୟ—

ଓଡ଼ିଶାରେ ଉଚ୍ଚାଙ୍ଗ ରାମସାହିତ୍ୟ ସୃଷ୍ଟି ହେବାର ବହୁ ପୂର୍ବରୁ ଲୋକ ମୁଖରେ ରାମାୟଣର ବିଭିନ୍ନ ଘଟଣାଭିତ୍ତିକ କବିତାମାନ ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ କେତେକ ହଳିଆଗୀତ, ଶିଶୁଗୀତିକା ଇତ୍ୟାଦି ପ୍ରଧାନ । ଏହିପରି ରାମାୟଣରେ ବିଭିନ୍ନ ଘଟଣା ସମ୍ପର୍କୀୟ କେତେକ ଲୋକଗୀତିକାର ଦୃଷ୍ଟାନ୍ତ ହେଉଛି—

(କ) ଚକୁଳିଆପଣ୍ଡା ଗୀତ—

ଧର୍ମରୁ ରାମଚନ୍ଦ୍ର ଲଙ୍କା କଲେ ଜୟ
ଅଧର୍ମରୁ ରାବଣ ବଂଶଗଲା କ୍ଷୟ ।।

(ଖ) ନବ ବଧୂରକାନ୍ଦଣା—

ସୀତାଙ୍କ କଷଣ ଅଶୋକ ବନେ
ମୋର କଷଣତ ଯମଭୁବନେ, ହେ ନୂଆ ବୋଉ ।"

(ଗ) ପ୍ରବଚନ —

ଘଇ ହଂସାରେ ଲଙ୍କାଗଡ଼ ଜୟ ।
ଆରେ ରାବଣ, ଆପଣାଗ୍ରୁ ହରାଇଲୁ ବଡ଼ପଣ ।
ମାଇଲ ରାବଣ, ଆଣିଲ ସୀତା, ଏଥିପାଇଁକି ପୋଥି ସାତଟା ।
ରାବଣ ଯେ ସୀତା ନ ନଅନ୍ତା, ତେବେ କାହିଁକି ରାମାୟଣ ହୁଅନ୍ତା ?
ଲଲାଟ ଲେଖନ କେ କରିବ ଆନ,
ଲଲାଟେ ଥିଲାକୁ ରାମ ଗଲେ ବନ
ପଥ ପଗ୍ବର ପିତାଘର ଯିବୁ
ଆଉ ଅଯୋଧ୍ୟା ମନ ନ କରିବୁ ।

(ଘ) ହଳିଆ ଗୀତ—

ରାମ ବିଭାଘରେ ହୋ ଲକ୍ଷ୍ମଣ ବରଜାତ
କନକ ବେଧା ତନେ ମୋ କଳାଧଳା ଛତି ।
କଳାଧଳା ଛତିକ ତ ସୁବର୍ଣ୍ଣ ଗୁଆଣି
ମୁକୁତା ପେନ୍ଥି ପେନ୍ଥି ଯେ ହୀରାତ ଖୋଷଣି ।
ବାଘ ସମ୍ବରବ ତ ନିଶାଖା ମୁକୁଟ
ବେଗେ ସଜକର ସୀତାଙ୍କୁ ଯେ
ଲକ୍ଷ୍ମଣ ବାହୁ ରଥ ।।

ଏହିପରି ଭାବରେ ରାମସୀତା ବିଷୟକ ବହୁ ଲୋକଗୀତିକା ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇଛି ।

## ବିଭିନ୍ନ ରାମାୟଣ ବା ପୁରାଣ —

ଓଡ଼ିଆ ଭାଷାରେ ପଞ୍ଚଦଶ ଶତାବ୍ଦୀରୁ ରାମସୀତା ବିଷୟକ ବହୁ ପୁରାଣ ଗ୍ରନ୍ଥ ରଚିତ ହୋଇଛି । ଏ କ୍ଷେତ୍ରରେ ସାରଳା ଦାସ, ବଳରାମ ଦାସ, ବାରଂନାଧ ଦାସ

ପ୍ରମୁଖଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ସର୍ବପ୍ରଥମେ ମହାକବି ସାରଳାଦାସ ତାହାଙ୍କ ମହାଭାରତରେ ରାମାୟଣର କେତେକ ଘଟଣା ଉଲ୍ଲେଖ କରିଥିବା ଦେଖାଯାଏ । ସାରଳା ମହାଭାରତ ବନପର୍ବରେ ଭଗୀରଥଙ୍କ ଜନ୍ମ ଓ ଗଙ୍ଗାଆନୟନ ଏବଂ ରାମ ଜନ୍ମଠାରୁ ରାବଣବଧ ଓ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଘଟଣା ସଂକ୍ଷିପ୍ତ ଭାବରେ ବର୍ଣ୍ଣିତ ହୋଇଛି । ପାଣ୍ଡବମାନଙ୍କ ବନବାସ ସମୟରେ ଯୁଧିଷ୍ଠିରଙ୍କ ଜିଜ୍ଞାସା କ୍ରମେ ମାର୍କଣ୍ଡେୟ ଋଷି ଏହି ଘଟଣା ପ୍ରକାଶ କରିଥିବା ବିଷୟ କବି ଉଲ୍ଲେଖ କରିଛନ୍ତି । ଓଡ଼ିଆ ଭାଷାରେ ରାମାୟଣ ସାହିତ୍ୟ ରଚନା ନିମିତ୍ତ ମହାକବି ସାରଳା ଦାସଙ୍କର ଏହା ସର୍ବପ୍ରଥମ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବନାହିଁ ।

ପୁନଶ୍ଚ କବି ସାରଳାଦାସ 'ବିଲଙ୍କା ରାମାୟଣ' ନାମକ ଏକ ଗ୍ରନ୍ଥ ରଚନା କରିଛନ୍ତି । ଏଥିରେ ସୀତାଙ୍କଦ୍ୱାରା ବିଲଙ୍କାର ସହସ୍ରଶିରା ରାବଣ କିପରି ବଧ ହୋଇଥିଲା, ତାହା ବର୍ଣ୍ଣିତ ହୋଇଛି । ମାତ୍ର ବାଲ୍ମୀକି ରାମାୟଣ ବର୍ଣ୍ଣିତ ବିଷୟବସ୍ତୁ ସହିତ ଏହାର କୌଣସି ସଂପର୍କ ନାହିଁ ।

୧୬ଶ ଶତାବ୍ଦୀରେ ରଚିତ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ବା 'ଦାଣ୍ଡି ରାମାୟଣ' ଓଡ଼ିଆ ରାମସାହିତ୍ୟର ରାଜମାର୍ଗରେ ଏକ ଦୀପ୍ତିମନ୍ତ ଆଲୋକସ୍ତମ୍ଭ ରୂପେ ପ୍ରତିଭାତ ହୋଇଥାଏ । ଏହା ହେଉଛି ବାଲ୍ମୀକିରାମାୟଣରେ କଥାବସ୍ତୁ ଅବଲମ୍ବିତ ସର୍ବପ୍ରଥମ ଓଡ଼ିଆ ରାମାୟଣ । କବି ଉପେନ୍ଦ୍ରଭଞ୍ଜ "ବୈଦେହୀଶ ବିଳାସ"ର ବିଷୟବିନ୍ୟାସ କ୍ଷେତ୍ରରେ ଦାଣ୍ଡି ରାମାୟଣଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ଓଡ଼ିଆ ଭାଷାରେ ରଚିତ ସମସ୍ତ ରାମାୟଣ ଗ୍ରନ୍ଥ ମଧ୍ୟରେ ଦାଣ୍ଡି ରାମାୟଣ ଆକାରରେ ବୃହତ୍ତମ ।

ପଞ୍ଚସଖା ଯୁଗର ଅନ୍ୟତମ ସାଧକ ଜଗନ୍ନାଥ ଦାସ ତାଙ୍କର ଭାଗବତ ନବମ ସ୍କନ୍ଧର ସପ୍ତମ, ଅଷ୍ଟମ, ଦଶମ, ଏକାଦଶ, ପଞ୍ଚଦଶ ଓ ଷୋଡ଼ଶ ଅଧ୍ୟାୟରେ ରାମାୟଣର କେତେକ ଘଟଣା ବର୍ଣ୍ଣନା କରିଛନ୍ତି । ଏହାର ପରବର୍ତ୍ତୀ କାଳରେ ରଚିତ ରାମାୟଣ ଗ୍ରନ୍ଥରାଜି ହେଉଛି—

ବିଲଙ୍କା ରାମାୟଣ—ବାଗଂନିଧି ଦାସ

ଟୀକା ରାମାୟଣ—ମହେଶ୍ୱର ଦାସ

ଅଧ୍ୟାତ୍ମ ରାମାୟଣ —ହଳଧର ଦାସ

(ଏହି କବିଙ୍କ ରାମାୟଣ ଅଦ୍ୟାବଧି ଲୋକଲୋଚନକୁ ଆସି ନାହିଁ । ହରିହରଙ୍କ ପ୍ରଦତ୍ତ କବିତାଲିକାରେ ଏହାଙ୍କ ନାମ ଓ ସେ 'ରାମାୟଣ' ରଚନା କରିଥିବା ବିଷୟ ଦେଖିବାକୁ ମିଳେ । ).

ଅଧ୍ୟାତ୍ମ ରାମାୟଣ—କବିଚନ୍ଦ୍ର ନରହରି
ଆର୍ଷ ରାମାୟଣ—କୃଷ୍ଣଚନ୍ଦ୍ର ରାଜେନ୍ଦ୍ର
ଅଧ୍ୟାତ୍ମ ରାମାୟଣ—ସୂର୍ଯ୍ୟମଣି ଚମ୍ପାଭଜପଟ୍ଟନାୟକ
ବାଲ୍ମୀକି ରାମାୟଣ—କୃଷ୍ଣଚରଣ ପଟ୍ଟନାୟକ
( ଏହା ମୂଳ ବାଲ୍ମୀକି ରାମାୟଣର ଏକ ସୁନ୍ଦର ପଦ୍ୟାନୁବାଦ )
ସିଦ୍ଧ ରାମାୟଣ—କୃପାସିନ୍ଧୁ ଦାସ
ପୂର୍ଣ୍ଣ ରାମାୟଣ—କେଶବ ତ୍ରିପାଠୀ

ଏତଦ୍‌ବ୍ୟତୀତ ଆଧୁନିକ ଯୁଗରେ ବାଲ୍ମୀକି ରାମାୟଣର ବହୁ ପଦ୍ୟାନୁବାଦ ହୋଇଛି । ତନ୍ମଧ୍ୟରୁ ରତ୍ନାକର ଗର୍ଗବଟୁଙ୍କ ବାଲ୍ମୀକି ରାମାୟଣ, ଫକୀର ମୋହନ ସେନାପତିଙ୍କ ରାମାୟଣ, ଭଗବତି ପ୍ରସାଦ ଦାନ୍‌ଙ୍କ 'ଦାନ ରାମାୟଣ', ବାଳକୃଷ୍ଣଙ୍କ କରଙ୍କ 'ସାରସ୍ୱତ ରାମାୟଣ' ଏବଂ ମୋହନ ଚରଣ ଦାସଙ୍କ ରାମାୟଣ ପ୍ରଭୃତି ଉଲ୍ଲେଖ ଯୋଗ୍ୟ ।

ଏହିପରି ଭାବରେ ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ କରି ବର୍ତ୍ତମାନ କାଳ ପର୍ଯ୍ୟନ୍ତ ଓଡ଼ିଆଭାଷାରେ ବହୁ ରାମାୟଣ ଗ୍ରନ୍ଥ ରଚିତ ହୋଇଛି । ଏଗୁଡ଼ିକ ହେଉଛି ପୁରାଣ ଜାତୀୟ ରାମସାହିତ୍ୟ ।

## ତତ୍ତ୍ୱ ବା ସନ୍ଦର୍ଭମୂଳକ ରାମସାହିତ୍ୟ—

ଓଡ଼ିଆ ଭାଷାରେ ସ୍ୱଳ୍ପ କେତେଗୋଟି ତତ୍ତ୍ୱ ବା ସନ୍ଦର୍ଭମୂଳକ ରାମସାହିତ୍ୟ ସୃଷ୍ଟି ହୋଇଥିବା ଦେଖାଯାଏ । ଏଥି ମଧ୍ୟରୁ ମାର୍କଣ୍ଡ ଦାସ ('କେଶବ କୋଇଲିର' ରଚୟିତା) ଙ୍କ 'ମହାଭାବ', ସାଧୁଚରଣ ଦାସଙ୍କ 'ରାମଗୀତା ପ୍ରଭୃତି ଗ୍ରନ୍ଥର ନାମ ବିଶେଷ ଉଲ୍ଲେଖଯୋଗ୍ୟ । 'ରାମଗୀତା'ରେ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ବିଭିନ୍ନ ଆଧ୍ୟାତ୍ମିକ ତତ୍ତ୍ୱ ବୁଝାଇଛନ୍ତି । ସେହିପରି 'ରାମ ହୃଦୟ' ନାମକ ଗ୍ରନ୍ଥରେ ରାମଙ୍କୁ ପରମପୁରୁଷ ଓ ସୀତାଙ୍କୁ ପ୍ରକୃତି ରୂପେ ପ୍ରତିପାଦନ କରାଯାଇଛି ।

## ବିଭିନ୍ନ ରାମକାବ୍ୟ—

ଓଡ଼ିଆ ଭାଷାରେ ରାମକାବ୍ୟ ରଚନାର ପରମ୍ପରା ଖ୍ରୀ: ୧୫ଶ ଶତାବ୍ଦୀରୁ ଆରମ୍ଭ ହୋଇଛି । ରାମାୟଣର କଥାବସ୍ତୁକୁ ଅବଲମ୍ବନ କରି ଛାନ୍ଦୋବଦ୍ଧ ରୀତିରେ କାବ୍ୟ ରଚନା ଦୃଷ୍ଟିରୁ ବିଚାର କରିବାକୁ ଗଲେ, ଓଡ଼ିଆ ସାହିତ୍ୟ ଯଥେଷ୍ଟ ସମୃଦ୍ଧ ଥିବା ଜଣାଯାଏ । ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' ରଚିତ ହେବାର ପ୍ରାୟ ଦୁଇଶତ ବର୍ଷ ପୂର୍ବରୁ ଓଡ଼ିଆ ଭାଷାରେ ରାମକାବ୍ୟ ରଚନାର ଧାରା ପ୍ରବାହିତ ହୋଇଥିଲା ଏବଂ ଏହି ସ୍ରୋତ ସାଂପ୍ରତିକ କାଳ ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ତନ୍ମଧ୍ୟରୁ କେତେଜଣ କାବ୍ୟକାର ଓ ସେମାନଙ୍କ ରଚନା ବିଷୟ ନିମ୍ନରେ ଆଲୋଚନା ହେଲା ।

## 'ବୈଦେହୀଶ ବିଳାସ'ର ପୂର୍ବବର୍ତ୍ତୀ ଓଡ଼ିଆ ରାମକାବ୍ୟ—

'ବୈଦେହୀଶ ବିଳାସ' ରଚିତ ହେବା ପୂର୍ବରୁ ଦୁଇଗୋଟି ରାମକାବ୍ୟ ସୃଷ୍ଟି ହୋଇଥିବା ଦେଖାଯାଏ । ତନ୍ମଧ୍ୟରୁ ଗୋଟିଏ ହେଉଛି, ଅର୍ଜୁନ ଦାସଙ୍କ 'ରାମବିଭା' । ଏହା ହେଉଛି ଓଡ଼ିଆ ଭାଷାର ପ୍ରାଚୀନତମ କାବ୍ୟ ଓ ପ୍ରଥମ ଓଡ଼ିଆ ରାମକାବ୍ୟ । ଏହା ସମୁଦାୟ ୧୨ଗୋଟି ଛାନ୍ଦରେ ରଚିତ ହୋଇଛି । ପ୍ରତ୍ୟେକ ଛାନ୍ଦ ବିଭିନ୍ନ ବୃତ୍ତରେ ରଚିତ । ଏହାର ପରବର୍ତ୍ତୀ କାଳର ଅନ୍ୟତମ ବିଖ୍ୟାତ ରାମକାବ୍ୟ ହେଉଛି ଧନଞ୍ଜୟ ଭଞ୍ଜଙ୍କ 'ରଘୁନାଥ ବିଳାସ' । ଧନଞ୍ଜୟ ଭଞ୍ଜ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଥିଲେ । ସୁତରାଂ, ଏହି କାବ୍ୟଦ୍ୱାରା ଉପେନ୍ଦ୍ରଭଞ୍ଜ ଅନୁପ୍ରାଣିତ ହୋଇଥିବା ଜଣାଯାଏ । କଥିତ ଅଛି ଯେ, ଧନଞ୍ଜୟ ଭଞ୍ଜଙ୍କର ଏହି କାବ୍ୟରେ ଆଳଙ୍କାରିକ ବିଦଗ୍ଧତା ଓ ଶବ୍ଦପାଣ୍ଡିତ୍ୟ ନଥିବା ଦେଖି ଉପେନ୍ଦ୍ରଭଞ୍ଜ ନିଜେ ଏହି ବୈଶିଷ୍ଟ୍ୟ ପରିପୂର୍ଣ୍ଣ 'ବୈଦେହୀଶ ବିଳାସ' 'ବ' ଆଦ୍ୟ ନିୟମରେ ରଚନା କରିବା ନିମିତ୍ତ କୃତନିଶ୍ଚୟ ହୋଇଥିଲେ ।

'ରଘୁନାଥ ବିଳାସ'ରେ ଯେଉଁଠାରେ ଅତି ସରଳ ପଦାବଳୀ ମାଧ୍ୟମରେ ବିଷୟ ବିନ୍ୟାସ କରାଯାଇଛି, କବି ଉପେନ୍ଦ୍ରଭଞ୍ଜ ତାହାକୁ କବିତ୍ୱପୂର୍ଣ୍ଣଛନ୍ଦା, ଚମତ୍କାର ଶବ୍ଦ ଯୋଜନା ତଥା ଆଳଙ୍କାରିକ ରୀତିରେ ପରିବେଷଣ କରିଥିବା ଦେଖାଯାଏ । ଉଦାହରଣ ସ୍ୱରୂପ, 'ରଘୁନାଥ ବିଳାସ'ର ଷଷ୍ଠ ଛାନ୍ଦରେ କୈବର୍ତ୍ତ ପ୍ରସଙ୍ଗ ବର୍ଣ୍ଣନା ବେଳେ ଧନଞ୍ଜୟ ଭଞ୍ଜ ଲେଖିଛନ୍ତି—

"ପଚ୍ଛେ ରଘୁକୁଳ ମଣି ନାବକକୁ ବୋଲେ ବାଣୀ
ଆଣ ତୋର ନାବ ବେଗେ ଆମ୍ଭେ ଯିବୁ ଋଷି ସଙ୍ଗେ ।

ଶୁଣି ଶ୍ରୀରାମ ଉତ୍ତର, ବୋଲନ୍ତି ତହୁଁ ଧୀବର
ତୁମ୍ଭେ ରହ ରଘୁବୀର ଧୋଇବ ତୋର ପୟର ।

ଏନାବ ମୋର ଜୀବିକା, ଏ ପୁଣି ହେବ ନାୟିକା
ମୁଁ ପୁଣି କରିବି କସ ହେବ ମୋ କୁଟୁମ୍ବ ନାଶ ।

ତୋର ଏ ଚରଣରେଣୁ, ଲଗିଲ ପାଷାଣେ ଯେଣୁ
ହୋଇଲ ସେ ଦିବ୍ୟ ନାରୀ ଗଲ ଉତ୍ତମ ପୁରୀ ।।"

ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ର ଏହି ଭାବପ୍ରକାଶକ ଅଂଶଟି ହେଉଛି—

" × × ×

ବିଶାରଦ ସେ ସାମନ୍ତ ମନ୍ତ୍ରରେ ଦାସ ସେବିତ
ତାକୁ ନ ଶୁଣନ୍ତେ ରଘୁନାଥ କହିତ
ବିଷଧର ପ୍ରାୟେ କି ତୁହି
ବେଳେ ନେଇ ତାଳି ଶୁଣ ଉଦାସ ନୋହି ।।

ବଧିର ନୁହଇ ବୀର ବୋଇଲ ତହୁଁ ଧୀବର
ଶୁଣିଲଣି ପଥରେ ପଥର ଅବଳା
କାଳି ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନାଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ ।।" (୯ । ୨,୩)

ଏହିପରି ଭାବରେ ଦେଖିବାକୁ ଗଲେ, କବି ଉପେନ୍ଦ୍ର ଭଞ୍ଜ 'ରଘୁନାଥ ବିଳାସ'ର କେତେକ ଘଟଣାକୁ ଅନୁସରଣ ପୂର୍ବକ ତାହାକୁ ଅଧିକ ଚମତ୍କାରପୂର୍ଣ୍ଣ ଭଙ୍ଗୀରେ ପରିବେଷଣ କରିଛନ୍ତି ।

## ଉପେନ୍ଦ୍ର ଭଞ୍ଜଙ୍କର ବିଭିନ୍ନ ରାମକାବ୍ୟ—

କବି ଉପେନ୍ଦ୍ରଭଞ୍ଜଙ୍କର ରାମଚରିତମୂଳକ ଚାରିଗୋଟି କୃତି ରହିଛି । ତନ୍ମଧ୍ୟରୁ 'ବୈଦେହୀଶ ବିଳାସ' ହେଉଛି ସର୍ବଶ୍ରେଷ୍ଠ କାବ୍ୟ । ଏତଦ୍‌ବ୍ୟତୀତ 'ରାମଲୀଳାମୃତ', 'ଷୋଳପୋଇ' ଓ 'ଅବନାରସତରଙ୍ଗ' ଅନ୍ୟ ତିନିଗୋଟି ରାମକାବ୍ୟ । 'ରାମଲୀଳାମୃତ'ରେ ଅତି ସରଳ ଭାଷା ଓ ସଂକ୍ଷିପ୍ତ ପରିସର ମଧ୍ୟରେ ରାମାୟଣର କଥାବସ୍ତୁ ବର୍ଣ୍ଣିତ ହୋଇଛି । କେବଳ 'ଅ' ବର୍ଣ୍ଣରେ 'ଅବନା ରସ-ତରଙ୍ଗ' ରଚିତ ହୋଇଛି । ଏଥିରେ ମଧ୍ୟ କବି ଅତି ସଂକ୍ଷିପ୍ତ ଭାବରେ ରାମଚରିତ ବର୍ଣ୍ଣନା କରିଛନ୍ତି । 'ଷୋଳପୋଇ' ସମୁଦାୟ ଷୋହଳ ଗୋଟି ଛାନ୍ଦରେ ଋଷ୍ୟଶୃଙ୍ଗଙ୍କ ଆଗମନଠାରୁ ରାମଚନ୍ଦ୍ରଙ୍କ ସ୍ୱର୍ଗଗମନ ପର୍ଯ୍ୟନ୍ତ ବିଷୟ ବର୍ଣ୍ଣିତ ହୋଇଛି । ପ୍ରତ୍ୟେକ ଛାନ୍ଦରେ ଷୋହଳଗୋଟି ଲେଖାଏଁ ପଦ (Stanza) ରହିଛି । ଏହି ଚାରିଗୋଟି କାବ୍ୟ ବ୍ୟତୀତ 'ଲାବଣ୍ୟବତୀ' କାବ୍ୟର ପଞ୍ଚଦଶ ଛାନ୍ଦରେ କବି ଅତି ସଂକ୍ଷିପ୍ତ ଭାବରେ ସମଗ୍ର ରାମାୟଣର କଥାବସ୍ତୁ ସୁନ୍ଦର ପଦଯୋଜନା ଓ ଆଳଙ୍କାରିକ ଶୈଳୀରେ ବର୍ଣ୍ଣନା କରିଛନ୍ତି ।

'ବୈଦେହୀଶ ବିଳାସ' କବିଙ୍କର ସର୍ବାପେକ୍ଷା ଗୌରବମୟ କୃତି । ଏହି କାବ୍ୟ ପରବର୍ତ୍ତୀକାଳର ବହୁ କବିଙ୍କୁ ବର୍ଣ୍ଣାଦ୍ୟ ନିୟମରେ କାବ୍ୟରଚନା ନିମିତ୍ତ ପ୍ରେରଣା ଯୋଗାଇ ଥିଲା । ନିମ୍ନରେ 'ବୈଦେହୀଶ ବିଳାସ' ପରେ ରଚିତ କେତେକ ବିଖ୍ୟାତ ରାମକାବ୍ୟ ଓ ତାହାର ସ୍ରଷ୍ଟାଙ୍କ ବିଷୟ ସଂକ୍ଷେପରେ ଆଲୋଚିତ ହେଲା ।

### 'ବୈଦେହୀଶ ବିଳାସ' ପରବର୍ତ୍ତୀ ରାମକାବ୍ୟ ସ୍ରଷ୍ଟା ଓ ସେମାନଙ୍କ କୃତି

୧ । **ବିଶ୍ୱନାଥ ଖୁଣ୍ଟିଆ**—କବି ବିଶ୍ୱନାଥ ଖୁଣ୍ଟିଆ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭ ଭାଗରେ 'ବିଚିତ୍ର ରାମାୟଣ' ନାମକ ରାମକାବ୍ୟ ସୃଷ୍ଟି କରିଥିଲେ । ଏହା ଓଡ଼ିଶାରେ 'ବିଶି ରାମାୟଣ' ନାମରେ ପରିଚିତ । ଉକ୍ତ ରଚନାଟି ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଛି । ସରଳ ଭାଷା ଓ ସୁନ୍ଦର ଛନ୍ଦଯୋଜନା ମାଧ୍ୟମରେ କବି ଏହାକୁ ରଚନା କରିଛନ୍ତି । ଏଥିରେ 'ବୈଦେହୀଶ ବିଳାସ'ର କ୍ଲିଷ୍ଟ ଭାଷା ନାହିଁ, ମାତ୍ର ସାଂଗୀତିକ ଛନ୍ଦମାଧୁରୀ ରହିଛି ।

୨ । **ଶିଶୁ ଦୀନବନ୍ଧୁ ଦାସ**—ଏହି କବି ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ 'ରାମାଶ୍ୱମେଧ ଯାଗ' ନାମକ କାବ୍ୟ ରଚନା କରିଥିଲେ । ଗ୍ରନ୍ଥଟି ଅଦ୍ୟାବଧି ଅପ୍ରକାଶିତ ରହିଛି ।

୩ । **ଶିଶୁ ଈଶ୍ୱର ଦାସ**—କବି ଶିଶୁ ଈଶ୍ୱର ଦାସ 'ନଳରାମ ଚରିତ' ନାମକ ଏକ କାବ୍ୟ ରଚନା କରିଥିଲେ । ଏହା ମଧ୍ୟ ଆନୁମାନିକ ଖ୍ରୀ: ୧୭୧୦ରୁ ୧୭୩୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିଲା । ପାଣ୍ଡବମାନଙ୍କ ବନବାସ ସମୟରେ ମାର୍କଣ୍ଡେୟ ଋଷି ଯୁଧିଷ୍ଠିରଙ୍କ ସମକ୍ଷରେ ନଳ ଓ ରାମଚନ୍ଦ୍ରଙ୍କ ବନବାସ ପ୍ରସଙ୍ଗ ଉପରେ ବ୍ୟାଖ୍ୟାନ କରିଥିଲେ, ତାହା ଏଥିରେ ଉଲ୍ଲିଖିତ ହୋଇଛି ।

୪ । **ଅରକ୍ଷିତ ଗୋବର୍ଦ୍ଧନ ଦାସ**—କବି ଅରକ୍ଷିତ ଗୋବର୍ଦ୍ଧନ ଦାସ ରାମାୟଣର ଲଙ୍କାକାଣ୍ଡର ଘଟଣାକୁ ନେଇ 'ପଚଶ ପୋଇ' ରଚନା କରିଥିଲେ । ଶିବପାର୍ବତୀ ଉକ୍ତି ପ୍ରତ୍ୟୁକ୍ତି ଛଳରେ ଏଥିରେ ବିଷୟ ବିନ୍ୟାସ କରାଯାଇଛି ।

୫ । **ବାଲୁକେଶ୍ୱର ମର୍ଦ୍ଦରାଜ**—କବି ବାଲୁକେଶ୍ୱର ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ସେ ରାମଚନ୍ଦ୍ରଙ୍କ ବିବାହ ପ୍ରସଙ୍ଗକୁ ଭିତ୍ତିକରି ଏକ କାବ୍ୟ ରଚନା କରିଥିଲେ ।

୬ । **ଗୋପୀନାଥ ପାତ୍ର କବିଭୂଷଣ**—ପାରଳାଖେମୁଣ୍ଡିର ସ୍ୱନାମଧନ୍ୟ କବି ଗୋପୀନାଥ ପାତ୍ର ଅଷ୍ଟାଦଶ ଶତାବ୍ଦୀରେ 'ରାମଚନ୍ଦ୍ର ବିହାର' ନାମକ କାବ୍ୟ ରଚନା କରିଥିଲେ । ଏହା ୮୦ ଛାନ୍ଦ ବିଶିଷ୍ଟ ଏକ ବିଶାଳକାବ୍ୟ ରଚନା । ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' ତୁଲ୍ୟ ଏଥିରେ ମଧ୍ୟ ଚମତ୍କାର ଶବ୍ଦ ପ୍ରୟୋଗ କୌଶଳ ମନୋରମ ଛନ୍ଦଯୋଜନା ଓ ଆଳଙ୍କାରିକ ବିଦଗ୍ଧତା ଦେଖିବାକୁ ମିଳେ ।

୭ । **ବିପ୍ର ଜନାର୍ଦ୍ଦନ ଦାସ**—କବି ଜନାର୍ଦ୍ଦନ ଦାସ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ 'ରାଘବ ଚରିତାମୃତ' ନାମକ କାବ୍ୟ ରଚନା କରିଥିଲେ । ଏହା ବହୁ ଚମତ୍କାର ରାଗରାଗିଣୀ ମଣ୍ଡିତ ।

୮ । **ମାଗଣି ପଟ୍ଟନାୟକ**—ଏହାଙ୍କ ଦ୍ୱାରା 'ରାମଚନ୍ଦ୍ର ବିହାର' ନାମକ ଏକ ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ ରଚିତ ହୋଇଥିଲା । ଏହି କାବ୍ୟଟି ସମୁଦାୟ

୩୬° ଛାନ୍ଦରେ ସମ୍ପୂର୍ଣ୍ଣ ହୋଇଛି ଏବଂ ଏଥିରେ ୮୭୦୮ ପଦ ରହିଛି । ପାଣ୍ଡିତ୍ୟର ପରପ୍ରକାଶ ଓ ପରବେଷଣ ପରିପାଟୀ ଦୃଷ୍ଟିରୁ ଏହା ବହୁ କ୍ଷେତ୍ରରେ 'ବୈଦେହୀଶ ବିଳାସ' ସହିତ ତୁଳନୀୟ ।

୯ । **ବ୍ରଜବନ୍ଧୁ ସାମନ୍ତସିଂହାର**—ଏହି କବି ବିଭିନ୍ନ ରାଗରାଗିଣୀ ସମନ୍ୱିତ 'ରାମଲୀଳାମୃତ' ନାମକ କାବ୍ୟରଚନା କରିଥିଲେ ।

୧୦ । **ବିପ୍ର ଭଗୀରଥି ଦାସ**—କବି ଭଗୀରଥି ଦାସ ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ 'ଶ୍ରୀରାମ ବିଳାସ' ନାମକ ଜନକୋଠୀର ରାମକାବ୍ୟ ରଚନା କରିଛନ୍ତି ।

୧୧ । **ଚିନ୍ତାମଣି ଦାସ**—ଏହି କବି 'ସୀତା ବିବାହ' ନାମକ କାବ୍ୟ ରଚନା କରିଥିଲେ ।

୧୨ । **ଯଦୁମଣି ମହାପାତ୍ର** 'ଉତ୍କଳଦର୍ପଣ' ଯଦୁମଣିଙ୍କ ରଚିତ 'ରାଘବ-ବିଳାସ' ଏକ ପାଣ୍ଡିତ୍ୟବିଳସିତ ରାମକାବ୍ୟ ଭାବରେ ଓଡ଼ିଶାର ବିଦ୍ୱାନ୍-ମଣ୍ଡଳୀରେ ସୁପରିଚିତ । ଏହାର ଶବ୍ଦଯୋଜନା କୌଶଳ ଓ ଉଚ୍ଚାଙ୍ଗ କଳ୍ପନାବିଳାସ ଗ୍ରନ୍ଥଟିକୁ ଓଡ଼ିଆ ସାହିତ୍ୟରେ ବିଶିଷ୍ଟ ସ୍ଥାନର ଅଧିକାରୀ କରାଇଛି । ମାତ୍ର ଅଦ୍ୟାବଧି ସମ୍ପୂର୍ଣ୍ଣ ଗ୍ରନ୍ଥଟି ଉପଲବ୍ଧ ହୋଇନାହିଁ ।

୧୩ । **ରାଧାଚରଣ ନାୟକ**—ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ କବି ରାଧାଚରଣ ନାୟକଙ୍କ ଦ୍ୱାରା 'ରସ ରାମାୟଣ ମଞ୍ଜରୀ' ନାମକ ଏକ ଚମତ୍କାର କାବ୍ୟ ରଚିତ ହୋଇଥିଲା ।

୧୪ । **ଭୁବନେଶ୍ୱର କବିଚନ୍ଦ୍ର**—ଗଞ୍ଜାମ ଜିଲ୍ଲାର ଏହି କବି ଊନବିଂଶ ଶତାବ୍ଦୀରେ 'ରାମଚନ୍ଦ୍ରବିଳାସ', 'ରାମାୟଣ ଚୂଡ଼ାମଣି' ଓ 'ସୀତେଶ ବିଳାସ' ନାମକ ତିନୋଟି ରାମକାବ୍ୟ ରଚନା କରିଥିଲେ । ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' 'ବ' ଆଦ୍ୟ ନିୟମରେ ରଚିତ ହେଲାପରି 'ସୀତେଶବିଳାସ' 'ସ' ଆଦ୍ୟନିୟମରେ ରଚିତ ହୋଇଛି ।

୧୫ । **ରଘୁନାଥ ରାୟଗୁରୁ**—ଏହି କବି 'ରଘୁନାଥ ବିଳାସ' ନାମକ ପ୍ରାଚୀନ ରାଗ ରାଗିଣୀ ସମ୍ବଳିତ ଏକ କାବ୍ୟ ରଚନା କରିଥିଲେ ।

୧୬ । **ବିଶ୍ୱମ୍ଭର ରାଜେନ୍ଦ୍ର**—ଶିକାରିର ରାଜା ବିଶ୍ୱମ୍ଭର ରାଜେନ୍ଦ୍ର 'ଶ୍ରୀରାମଚନ୍ଦ୍ର ବିଳାସ' ନାମକ କାବ୍ୟ ରଚନା କରିଥିଲେ । ଏହା 'ବ' ଆଦ୍ୟ ନିୟମରେ ରଚିତ ।

୧୭ । **ସୀତାଚରଣ ଦାସ**—ସୀତାଚରଣ ଦାସଙ୍କଦ୍ୱାରା 'ଭକ୍ତି ରସାର୍ଣ୍ଣବ ରାମାୟଣ', "ରାମଗୁଣସାଗର', 'ରାମରସାମୃତ ରାମାୟଣ' ଓ 'ଜାନକୀଶ ବିଳାସ' ନାମକ ଚାରିଗୋଟି ଗ୍ରନ୍ଥ ରଚିତ ହୋଇଛି । ଏଥି ମଧ୍ୟରୁ 'ଜାନକୀଶ ବିଳାସ, କାବ୍ୟ 'ଜ' (ଯ) ଆଦ୍ୟ ନିୟମରେ ରଚିତ ।

୧୮ । **ନାରାୟଣ ତ୍ରିପାଠୀ**—ଏହି କବିଙ୍କ ବାସସ୍ଥାନ ଭୁବନେଶ୍ୱର ନିକଟବର୍ତ୍ତୀ ମଞ୍ଚେଶ୍ୱର ଥିଲା । ସେ 'ବ' ଆଦ୍ୟନିୟମରେ 'ବୈଦେହୀଶ ବିଳାସ'ନାମକ କାବ୍ୟ ରଚନା କରିଥିଲେ । କାବ୍ୟଟି ପ୍ରକାଶିତ ହୋଇଛି ।

୧୯ । **ଗୋବିନ୍ଦ ଦାସ**—'ଅ' ଆଦ୍ୟ ନିୟମରେ 'ଅର୍କବଂଶାବତଂସ' କାବ୍ୟ ରଚନା କରିଥିଲେ ।

୨୦ । **ମାଧବ ଚନ୍ଦ୍ର ଦାସ**—ଏହାଙ୍କଦ୍ୱାରା 'ସତୀଚନ୍ଦ୍ରିକା' ନାମକ କାବ୍ୟ ରଚିତ ହୋଇଛି ।

୨୧ । **ନୀଳକଣ୍ଠ ରଥ**—ଏହି କବି 'ସ' ଆଦ୍ୟ ନିୟମରେ 'ସୀତା ପ୍ରେମ ତରଙ୍ଗିଣୀ' କାବ୍ୟ ରଚନା କରିଥିଲେ ।

୨୨ । **ଗୋକୁଳାନନ୍ଦ ପଟ୍ଟନାୟକ**—'ଜାନକୀ ବଲ୍ଲଭ ବିଳାସ' ନାମକ କାବ୍ୟ ରଚନା କରିଥିଲେ ।

ରାମାୟଣର ବିଭିନ୍ନ ଘଟଣାକୁ ନେଇ ବହୁ କବି ଅନେକ ଭଜନ, ଜଣାଣ, ପୋଇ ଓ କୋଇଲି ରଚନା କରିଛନ୍ତି । ଆଧୁନିକ ଯୁଗର ରାଧାନାଥ, ଫକୀର ମୋହନ, ମଧୁସୂଦନ ଓ ଗଙ୍ଗାଧର ପ୍ରମୁଖ କବି ରାମାୟଣ ବିଷୟକ ବହୁ କାବ୍ୟ ଓ ଖଣ୍ଡକାବ୍ୟ ରଚନା କରିଛନ୍ତି । ଏଥି ମଧ୍ୟରୁ ଗଙ୍ଗାଧରଙ୍କ 'ତପସ୍ୱିନୀ'ର ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ଏହି କାବ୍ୟର କେତେକ ସ୍ଥଳରେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବ ପଡ଼ିଥିବା ଦେଖାଯାଏ ।

**ନାଟକ ଓ ଗଦ୍ୟରଚନା**—ରାମାୟଣର ବିଭିନ୍ନ ଘଟଣାକୁ ନେଇ ଓଡ଼ିଆ ଭାଷାରେ ବହୁ ନାଟକ ରଚିତ ହୋଇଛି । ତନ୍ମଧ୍ୟରେ 'ପଦ୍ମମାଳୀ ସହ ଗମନ'

(ରାଧାମୋହନ ରାଜେନ୍ଦ୍ର), 'ରାମବନବାସ' (ରାମଶଙ୍କର ରାୟ), ସୀତା ବିବାହ (କାମପାଳ ମିଶ୍ର), 'ଜାନକୀ' (ଅଶ୍ୱିନୀ କୁମାର ଘୋଷ) ଏବଂ ବୈଷ୍ଣବପାଣିଙ୍କ ରାବଣ ବଧ, ତରଣୀ ସେନ ବଧ, ମହୀରାବଣ ବଧ ପ୍ରଭୃତି ଗୀତିନାଟ୍ୟର ନାମ ବିଶେଷ ଉଲ୍ଲେଖ ଯୋଗ୍ୟ ।

ରାମାୟଣୀ କଥା ଆଧାରିତ ନୀଳକଣ୍ଠ ଦାସଙ୍କ 'ପିଲାଙ୍କ ରାମାୟଣ' ଏବଂ ଦାମୋଦର ମିଶ୍ରଙ୍କ 'ଟୀକାରାମାୟଣ' ପ୍ରଭୃତି ଓଡ଼ିଆ ଗଦ୍ୟାତ୍ମକ ରାମ ସାହିତ୍ୟ ।

ଏହିପରି ଭାବରେ ରାମାୟଣର କଥାବସ୍ତୁକୁ ଭିତ୍ତିକରି ୧୫ଶ ଶତାବ୍ଦୀରୁ ଓଡ଼ିଆ ଭାଷାରେ ବିଭିନ୍ନ ପୁରାଣ, କାବ୍ୟ, କବିତା, ଜଣାଣ, ପୋଇ, କୋଇଲି, ନାଟକ ଓ ଗଦ୍ୟରଚନା ସୃଷ୍ଟି ହୋଇଛି । ଉପେନ୍ଦ୍ରଭଞ୍ଜ ତାହାଙ୍କ ପୂର୍ବବର୍ତ୍ତୀ ଓଡ଼ିଆ କବି ବଳରାମ ଦାସଙ୍କ ଦାଣ୍ଡିରାମାୟଣଦ୍ୱାରା କେତେକ ପରିମାଣରେ ପ୍ରଭାବିତ ହୋଇଥିବା ଜଣାଯାଏ । କାରଣ ଦାଣ୍ଡି ରାମାୟଣ ବର୍ଣ୍ଣିତ ବହୁ ଘଟଣା ତାହାଙ୍କ 'ବୈଦେହୀଶ ବିଳାସ'ରେ ଦେଖିବାକୁ ମିଳେ । ଏହା ସଙ୍ଗେସଙ୍ଗେ ପରବର୍ତ୍ତୀ କାଳର ବହୁ କବି ତାହାଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ଦେଖାଯାଏ । ବିଶେଷତଃ ଗୋପୀନାଥ ଦାସଙ୍କ 'ରାମଚନ୍ଦ୍ର ବିହାର', ମାଗୁଣି ପଟ୍ଟନାୟକଙ୍କ 'ରାମଚନ୍ଦ୍ରବିହାର', ବ୍ରଜବନ୍ଧୁ ସାମନ୍ତସିଂହାରଙ୍କ 'ରାମଲୀଳାମୃତ', ଯଦୁମଣିଙ୍କ 'ରାଘବ ବିଳାସ', ରାଧାଚରଣ ନାୟକଙ୍କ 'ରସ ରାମାୟଣ ମଞ୍ଜୁଷା', ଭୁବନେଶ୍ୱର କବିଚନ୍ଦ୍ରଙ୍କ 'ସୀତେଶ ବିଳାସ', ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ 'ଶ୍ରୀର ରାମଚନ୍ଦ୍ର ବିଳାସ', ସୀତା ଚରଣ ଦାସଙ୍କ 'ଜାନକୀଶ ବିଳାସ', ନାରାୟଣ ତ୍ରିପାଠୀଙ୍କ 'ବୈଦେହୀ ବିଳାସ', ଗୋବିନ୍ଦ ଦାସଙ୍କ 'ଅର୍କବଂଶାବତଂସ', ନୀଳକଣ୍ଠ ରଥଙ୍କ 'ସୀତାପ୍ରେମ ତରଙ୍ଗିଣୀ' ଏବଂ ଗୋକୁଳାନନ୍ଦ ପଟ୍ଟନାୟକଙ୍କ 'ଜାନକୀବଲ୍ଲଭ ବିଳାସ' ପ୍ରଭୃତି କାବ୍ୟ ଉପରେ 'ବୈଦେହୀଶ ବିଳାସ'ର ବହୁଳ ପ୍ରଭାବ ପଡ଼ିଛି । ଏ ପ୍ରସଙ୍ଗରେ ଉଲ୍ଲେଖ ଯୋଗ୍ୟ ଯେ, ଉପେନ୍ଦ୍ରଭଞ୍ଜ ନିଜର ବୈଦେହୀଶ ବିଳାସ ମାଧ୍ୟମରେ ଓଡ଼ିଆରେ ବହୁ ରାମକାବ୍ୟ ସୃଷ୍ଟି ନିମିତ୍ତ ପ୍ରେରଣା ଯୋଗାଇଛନ୍ତି । ଓଡ଼ିଆ ରାମକାବ୍ୟର ପରଂପରାରେ ବୈଦେହୀଶ ବିଳାସ ଶୀର୍ଷ ସ୍ଥାନର ଅଧିକାରୀ । ଏହି ଉଚ୍ଚାଙ୍ଗ ରାମାୟଣ ଗ୍ରନ୍ଥ ଭିତରେ ଏହା ବାଲ୍ମୀକି ରାମାୟଣ, ଅଧ୍ୟାତ୍ମରାମାୟଣ ତଥା ବଳରାମ ଦାସଙ୍କ ଦାଣ୍ଡିରାମାୟଣର ମୂଳ ବିନ୍ୟାସ ବହନ କରିଛି ଏବଂ ଅତି ଚମତ୍କାର ଭାବରେ ଏଥିରେ କଥାବସ୍ତୁ ପରିବେଷିତ ହୋଇଛି । ସେହିପରି କାଳିଦାସଙ୍କ

ରଘୁବଂଶ, ହନୁମାନଙ୍କ 'ମହାନାଟକ', ଭୋଜଙ୍କ 'ଚମ୍ପୂ ରାମାୟଣ' ଏବଂ ମୁରାରି ମିଶ୍ରଙ୍କ 'ଅନର୍ଘରାଘବ' ତୁଲ୍ୟ ଏହା ଏକ ଉଚ୍ଚାଙ୍ଗ ମହାକାବ୍ୟର ସମସ୍ତ ବିଶିଷ୍ଟ ଲକ୍ଷଣ ବହନ କରିବା ସଙ୍ଗେ ସଙ୍ଗେ ରସ, ଅଳଙ୍କାର, ଶବ୍ଦଯୋଜନା ଇତ୍ୟାଦି ଦୃଷ୍ଟିରୁ ପାଣ୍ଡିତ୍ୟର ଚରମ ଉତ୍କର୍ଷ ପ୍ରଦର୍ଶନ କରିଛି । ଓଡ଼ିଆରେ ରାମକଥାତ୍ମକ ଯେତେଗୋଟି ଗ୍ରନ୍ଥ ରଚିତ ହୋଇଛି, ତନ୍ମଧ୍ୟରେ ବୈଦେହୀଶ ବିଳାସ ହିଁ, ସର୍ବଶ୍ରେଷ୍ଠ ଆସନ ଅଧିକାର କରିଛି, ଏଥିରେ ସନ୍ଦେହ ନାହିଁ ।

କେବଳ ଓଡ଼ିଆ ଭାଷା ନୁହେ, ସମଗ୍ର ଭାରତବର୍ଷର ଅନ୍ୟ ଯେକୌଣସି ପ୍ରାନ୍ତୀୟ ସାହିତ୍ୟରେ ଏହିପରି ପାଣ୍ଡିତ୍ୟପୂର୍ଣ୍ଣ ରାମକାବ୍ୟ ଏକାନ୍ତ ଦୁର୍ଲ୍ଲଭ । ଏହି କାବ୍ୟଟିକୁ କବି ଉପେନ୍ଦ୍ରଭଞ୍ଜଙ୍କର ସର୍ବଶ୍ରେଷ୍ଠ କୃତି ରୂପେ ବିବେଚନା କରାଯାଇ-ଥାଏ । କବି ତାହାଙ୍କ ପୂର୍ବବର୍ତ୍ତୀ ରାମ ସାହିତ୍ୟକୁ 'ବୈଦେହୀଶ ବିଳାସ' ମାଧ୍ୟମରେ ସମୃଦ୍ଧ କରିବା ସଙ୍ଗେସଙ୍ଗେ ପରବର୍ତ୍ତୀ କାଳର ରାମକାବ୍ୟ ସ୍ରଷ୍ଟାମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛନ୍ତି ।



ସରଳ ଟୀକା ସହିତ

# ବୈଦେହୀଶ ବିଳାସ

ର

କେତୋଟି ଛାନ୍ଦ

# ପ୍ରଥମ ଛାନ୍ଦ

ରାଗ—ପାହାଡ଼ିଆ କେଦାର

ବନ୍ଦଇ ଦୀନବାନ୍ଧବ ହରି　　　ଯେ ତମଚକ୍ର ଖଣ୍ଡନକାରୀ
ସଦା କମଳାନନ୍ଦ ବିସ୍ତାରୀ ସ୍ୱଭାବେ ଈନ ଯେ ।
ବିଭୁ ଅନନ୍ତଅଙ୍କ ବିହାରୀ　　　କରପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବଇନତେୟ ଯାହା ଅଗ୍ରତେ ସ୍ଥିତ
ବଇକୁଣ୍ଠପକ୍ଷକ ଲୋକ ତୋଷିତ ଯେ ।
ବିକାଶ ଅଖଣ୍ଡିତମଣ୍ଡଳେ　　　ସିଂହ ଭାବରେ କ୍ରୀଡ଼ିତ କାଳେ
ଭବେ ତରଣୀ ହୋଇ ମଞ୍ଜୁଳେ ଗିର ଉଦିତ ଯେ ॥ ୧ ॥

---

[ ପ୍ରଥମ ଛାନ୍ଦର ପ୍ରଥମ ଦୁଇଟି ପଦକୁ କବି ଶ୍ଳେଷାଳଙ୍କାରରେ ରଚନା କରିଛନ୍ତି । ଏହାକୁ ବିଷ୍ଣୁ, ଶିବ, ଦୁର୍ଗା, ସୂର୍ଯ୍ୟ ପ୍ରଭୃତି ବିଭିନ୍ନ ଦେବଦେବୀଙ୍କ ପକ୍ଷରେ ଅର୍ଥ କରାଯାଇ ଥାଏ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ଏହାର ଆଠ ପ୍ରକାର ଅର୍ଥ ବ୍ୟାଖ୍ୟା କରିଛନ୍ତି । ଏଠାରେ ତିନିଗୋଟି ଅର୍ଥ ମାତ୍ର ପ୍ରଦାନ କରାଯାଉଛି । ]

୧ । ବିଷ୍ଣୁଙ୍କ ପକ୍ଷେ—

**ଶବ୍ଦାର୍ଥ**—ବନ୍ଦଇ—ବନ୍ଦନା କରୁଛି । ଦୀନବାନ୍ଧବ—ଦୁଃଖୀ ଓ ଦରିଦ୍ରମାନଙ୍କ ବନ୍ଧୁ ବା ଆଶ୍ରୟଦାତା । ହରି—ବିଷ୍ଣୁ । ତମଚକ୍ର-ଖଣ୍ଡନକାରୀ—ତମ=ରାହୁ; ରାହୁକୁ ଯେ ଚକ୍ରଦ୍ୱାରା ଖଣ୍ଡନ କରିଥିଲେ । କମଳା—ଲକ୍ଷ୍ମୀ । ଈନ—ଲକ୍ଷ୍ମୀପତି । ବିଭୁ—ପ୍ରଭୁ । କରପ୍ରତାପ—ହସ୍ତର ଶକ୍ତି ବା ବାହୁବଳ । ନିଶାଚର—ରାକ୍ଷସ । ଉଲ୍ଲାସ ହରି—ଆନନ୍ଦକୁ ଯେ ହରଣ କରନ୍ତି । ସୁମନ—ଦେବତା । ବଇନତେୟ—ବିନତାସୁତ=ଗରୁଡ଼ । ବଇକୁଣ୍ଠ ପକ୍ଷକ—ବିଷ୍ଣୁଙ୍କ ପକ୍ଷର (ବଇକୁଣ୍ଠ=ବିଷ୍ଣୁ) । ସିଂହଭାବରେ—ସିଂହ ରୂପଧରି । ଭବେ—ସଂସାରରେ । ତରଣୀ—ନୌକା । ମଞ୍ଜୁଳେ—ସୁନ୍ଦର ଭାବରେ । ଗିର ଉଦିତ—ଯାହାଙ୍କଠାରୁ ବଚନ ଉଦିତ ହୋଇଛି ।

**ସରଳାର୍ଥ**—ଯେଉଁ ବିଷ୍ଣୁ ନିଜର ଚକ୍ରଦ୍ୱାରା ରାହୁକୁ ଖଣ୍ଡନ କରିଥିଲେ, ଯେ ସାଧୁଲୋକମାନଙ୍କୁ ଓ ଲକ୍ଷ୍ମୀଙ୍କୁ ଆନନ୍ଦ ପ୍ରଦାନ କରନ୍ତି, ଯେ ସ୍ୱଭାବତଃ ଶ୍ରୀପତି ଏବଂ ସମସ୍ତ

ବହିତ ଯେହୁ ଗେହ୍ବଭମୂର୍ତ୍ତି                    ଶ୍ରୁତିରଞ୍ଜନ କାରକ ଅତି
ହଂସ ହୋଇଣ ଯାହା ପ୍ରଶସ୍ତି ଅଛି ପ୍ରବର୍ତ୍ତି ମେ
ବିରାଜ ରୂପ ଯାହାର ପୁଣି                    ଦ୍ୱିଜବନ୍ଧୁ ନା ଦର୍ଶନ ଗୁଣି
ଆତ୍ମଭୂପର ସଂସାରେ ଭଣି କ ଶୁଭ୍ରକାନ୍ତି ଯେ
ବୁଧ-ଜନକ ଶିରୋଭୂଷଣ ଯେହୁ ଯେ,
ବିନୟରୁ ବଚନ ଆନ ନ କହୁ ଯେ,

---

ଲୋକର ପ୍ରଭୁ, ଯେ ଶେଷଦେବଙ୍କ ଅଙ୍କରେ ଶୟନ କରନ୍ତି, ରକ୍ଷସମାନଙ୍କ ଆନନ୍ଦ ହରଣ କ୍ଷେତ୍ରରେ ଯାହାଙ୍କ ବାହୁବଳ ପ୍ରକଟିତ ହୋଇଛି, ଯାହାଙ୍କୁ ଦେବତାମାନେ ପୂଜା କରନ୍ତି, ଯାହାଙ୍କ ସମ୍ମୁଖରେ ଗରୁଡ଼ ଦଣ୍ଡାୟମାନ ହୋଇଥାଏ, ଯେ ବନ୍ଧୁ ଭକ୍ତ-ମାନଙ୍କୁ ସନ୍ତୋଷ ପ୍ରଦାନ କରନ୍ତି, ଯେ ସମଗ୍ର ପୃଥିବୀରେ (ଅଖଣ୍ଡିତ ମଣ୍ଡଳେ) ପ୍ରକାଶିତ ବା ପରିବ୍ୟାପ୍ତ ହୋଇଛନ୍ତି, ଯେ ଏକ ସମୟରେ ନୃସିଂହ ରୂପ ଧାରଣ ପୂର୍ବକ ଲୀଳା ପ୍ରକାଶ କରିଥିଲେ, ସଂସାରସାଗରରୁ ଲୋକମାନଙ୍କୁ ତ୍ରାଣ କରିବା ନିମିତ୍ତ ନୌକାରୂପୀ ଶ୍ରୀମଦ୍ ଭଗବଦ୍‌ଗୀତା ବାଣୀ ଯାହାଙ୍କ ମୁଖରୁ ପ୍ରକାଶ ପାଇଥିଲା, ସେହି ଦୀନବାନ୍ଧବ ହରିଙ୍କୁ ମୁଁ ବନ୍ଦନା କରୁଛି ।

**ଶିବଙ୍କ ପକ୍ଷେ ଅର୍ଥ**—ଦୀନବାନ୍ଧବ—ଦୀନ=ଶ୍ମଶାନ, ତାହାର ପ୍ରିୟ । ଯେ ତମଚର—ଯେଉଁ ଶିବ ତମୋଗୁଣର ସ୍ଥାନ (ଚର) । ଖଣ୍ଡନକାରୀ—ଯେ ସଂହାରକର୍ତ୍ତା ବା ପ୍ରଳୟକର୍ତ୍ତା । ସଦା କମଳାନନ୍ଦ ବିହାରୀ —ଯେ ସବୁବେଳେ ଜଳଠାରେ (କମଳ) ଆନନ୍ଦ ପ୍ରକାଶ କରନ୍ତି । ଇନ—ପ୍ରଭୁ । ବିଭୁ—ଯାହାଙ୍କ ଠାରୁ ଭୂ ବା ଐଶ୍ୱର୍ଯ୍ୟ ବିଗତ ହୋଇଛି । ଅନନ୍ତ ଅଙ୍ଗ ବିହାରୀ—ଅନନ୍ତ ପ୍ରଭୃତି ସର୍ପମାନେ ଯାହାଙ୍କ ଶରୀରରେ ବିହାର କରନ୍ତି । କର ପ୍ରତାପ ଯାର ସଞ୍ଚର—କାମଦେବ (କ) ଠାରେ ଯେ ନିଜର ଶକ୍ତି (ର) ସଞ୍ଚାର କରାଇଥିଲେ । ନିଶାଚରଙ୍କ ଉଲ୍ଲାସ ହର ପୂଜେ ସୁମନ—ବିଷ୍ଣୁ (ନିଶାଚରଙ୍କ ଉଲ୍ଲାସ ହର) ଯାହାଙ୍କୁ ପୁଷ୍ପଦ୍ୱାରା ପୂଜା କରନ୍ତି ।

**ସୂର୍ଯ୍ୟଙ୍କ ପକ୍ଷେ ଅର୍ଥ**—ଦିନବାନ୍ଧବ—ଦିବସର ବନ୍ଧୁ । ହରି—ସୂର୍ଯ୍ୟ । ତମଚର ଖଣ୍ଡନକାରୀ—ଯେ ଅନ୍ଧକାରସମୂହର ବିନାଶକାରୀ । ସଦା କମଳାନନ୍ଦ ବିହାରୀ—ଯେ ସବୁବେଳେ ପଦ୍ମର ଆନନ୍ଦ ବିସ୍ତାରକାରୀ । ସ୍ୱଭାବେ ଇନ—ଯେ ସ୍ୱଭାବତଃ ପ୍ରଭୁ ଅଟନ୍ତି । ବିଭୁ—ସର୍ବତ୍ରଗାମୀ । ଅନନ୍ତ ଅଙ୍ଗ ବିହାରୀ—ଆକାଶ (ଅନନ୍ତ)ରେ ଯେ ବିହାର କରନ୍ତି । କର—କିରଣ । ନିଶାଚର—ପେଚା ପ୍ରଭୃତି ରାତ୍ରିଚର (ଯେଉଁ

ବଳିଯାହାଙ୍କୁ ସର୍ବଦା ନାହିଁ        ଦ୍ୱୀପ ପ୍ରସନ୍ନ କରନ୍ତା ଯେହି
ପୂନତ ଧର୍ମସ୍ୱରୂପଗ୍ରାହୀ କି ସ୍ତୁତ ତାହିଁ ଯେ ॥ ୨ ॥

---

ସୂର୍ଯ୍ୟ ନିଜର କିରଣ ବା ଆଲୋକଦ୍ୱାରା ରାତ୍ରିଚରମାନଙ୍କ ଆନନ୍ଦ ହରଣ କରନ୍ତି)। ପୂଜେ ସୁମନ—ଯାହାଙ୍କୁ ପଣ୍ଡିତ ବା ବ୍ରାହ୍ମଣମାନେ ପୂଜା କରନ୍ତି। ବିଇନତେୟ—ବିନତାଙ୍କ ପୁଅ ଅରୁଣ (ସୂର୍ଯ୍ୟଙ୍କ ସାରଥି)। ବଇକୁଣ୍ଠ ପକ୍ଷକ—ଇନ୍ଦ୍ରଙ୍କ ସହାୟକ। ଲୋକତୋଷିତ—ଲୋକମାନଙ୍କ ସନ୍ତୋଷ ବିଧାନକାରୀ। ବିକାଶ ଅଖଣ୍ଡିତ ମଣ୍ଡଳେ—ଯେ ଅଖଣ୍ଡ ମଣ୍ଡଳାକାରରେ ବିରାଜିତ। ସିଂହ ଭାବରେ କ୍ରୀଡ଼ିତକାଳେ—ଯେ ସିଂହ ରାଶିରେ ବର୍ଷରେ ଥରେ ଅବସ୍ଥାନ କରନ୍ତି। ଭବେ—ସଂସାରରେ। ତରଣୀ—ସୂର୍ଯ୍ୟ। ଗିରଉଦିତ—ବଚନ ପ୍ରକାଶ ପାଇଛି (ସଂସାରରେ ସୂର୍ଯ୍ୟ ନାମରେ ଯେ ପରିଚିତ)।

[ଏହି ପଦଟିର ଅଧିକ ବିସ୍ତୃତ ଅର୍ଥ ଜାଣିବା ନିମିତ୍ତ ଦ୍ରଷ୍ଟବ୍ୟ—ବୈଦେହୀଶ ବିଳାସ—ସଂ : ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ପ୍ରକାଶକ—ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗ।]

୨। **ବିଷ୍ଣୁଙ୍କ ପକ୍ଷେ**—ବହି—ଧାରଣ କରି। ତ—ଏକଥା ନିଶ୍ଚିତ। ଯେହୁ—ଯେ। ରୋହିତ ମୂର୍ତ୍ତି—ମତ୍ସ୍ୟରୂପ (ମତ୍ସ୍ୟାବତାର)। ଶ୍ରୁତି—ବେଦ। ହଂସ—ପରମାତ୍ମା। ବିରାଜ—ବିରାଟ। ଦ୍ୱିଜଚକ୍ର—ବ୍ରାହ୍ମଣମାନେ। ଆତ୍ମଭୂପର—କନ୍ଦର୍ପଠାରୁ ମଧ୍ୟ ଅଧିକ ସୁନ୍ଦର (ଆତ୍ମଭୂ=କନ୍ଦର୍ପ)। ବୁଧଜନକ ଶିରୋଭୂଷଣ—ମହାଦେବ (ବୁଧଜନକ=ବୁଧଗ୍ରହଙ୍କ ପିତା ଚନ୍ଦ୍ର)। ବଳି—ବଳିରାଜା। ଦ୍ୱୀପ—ହାତୀ। ପୂନତ—ପୂର୍ଣ୍ଣତଃ ବା ପୂର୍ଣ୍ଣଭାବରେ। ଧର୍ମ ସ୍ୱରୂପଗ୍ରାହୀ—ସାକ୍ଷାତ୍ ଧର୍ମଦେବଙ୍କ ରୂପଧାରୀ। ଯେଉଁ ବିଷ୍ଣୁ ମତ୍ସ୍ୟାବତାର ଧାରଣ ପୂର୍ବକ ବେଦକୁ ଉଦ୍ଧାର କରିଥିଲେ, ପରମାତ୍ମା ରୂପରେ ଯାହାଙ୍କ ଖ୍ୟାତି ପୃଥିବୀରେ ପ୍ରସାର ଲାଭ କରିଛି, ବେଦ ପ୍ରଭୃତି ବିଭିନ୍ନ ଶାସ୍ତ୍ରରେ ଯାହାଙ୍କୁ ବିରାଟ ପୁରୁଷ ରୂପେ ବର୍ଣ୍ଣନା କରାଯାଇଛି, ବ୍ରାହ୍ମଣ ପ୍ରଭୃତି ଜାତିର ଲୋକମାନେ ଯାହାଙ୍କ ଦର୍ଶନ ଲାଭ ନିମିତ୍ତ ମନେମନେ ଚିନ୍ତା କରନ୍ତି, ଯେ କନ୍ଦର୍ପ ଠାରୁ ମଧ୍ୟ ଅଧିକ ସୁନ୍ଦର ବୋଲି ସଂସାରରେ କୀର୍ତ୍ତି ବିସ୍ତାର କରିଛନ୍ତି, ଯାହାଙ୍କ ସମ୍ପର୍କରେ ମହାଦେବ ବିନୟପୂର୍ଣ୍ଣ ବଚନ ବ୍ୟତୀତ ଅନ୍ୟ କିଛି କହନ୍ତି ନାହିଁ, ଦାନ ଗର୍ବୀ ବଳିରାଜା ଯାହାଙ୍କୁ ସମସ୍ତ ପଦାର୍ଥ (ଦାନମାଗି ଯାଇଥିବା) ଦେଇପାରି ନଥିଲା, ଯେ ହାତୀର ଆନନ୍ଦ ବିଧାନକାରୀ (କୁମ୍ଭୀର କବଳରୁ ହାତୀକୁ ରକ୍ଷାକରି), ଯେ ପୂର୍ଣ୍ଣତଃ ସାକ୍ଷାତ୍ ଧର୍ମଦେବ ସ୍ୱରୂପୀ, ସେହି ବିଷ୍ଣୁଙ୍କର ମୁଁ ଅବା କି ସ୍ତୁତି କରିପାରିବି।

**ଶିବଙ୍କ ପକ୍ଷେ**—ବହିତ ଯେହୁ ରୋହିତ ମୂର୍ତ୍ତି—ଯେ ହସ୍ତରେ ଏକ ମୃଗ (ରୋହିତ) ଧାରଣ କରିଥାନ୍ତି। ଶ୍ରୁତିରଞ୍ଜନ କାରକ—ସଂଗୀତ ଶାସ୍ତ୍ରକର୍ତ୍ତା। ହଂସ—ଯୋଗୀ।

ବିଷ୍ଟରଶ୍ରବା ବ୍ରହ୍ମାଣ୍ଡେଶ୍ୱର ପରମ ପଦ ଭଜନ୍ତି ନର
ଲଭେ ଏ ଯେବେ ଗ୍ରନ୍ଥ ଆଦ୍ୟରେ ସ୍ତବନ୍ତି ତାଙ୍କୁ ଯେ ।
ବଂଶ ଯାହାର ଠାରୁ ଉତ୍ପତ୍ତି କବି ବଂଶରେ ଏସ ଦେବେ ସ୍ତୁତି
ବିଧାନ କରି ଅତି ସୁମତି ଆଣ ମନକୁ ଯେ ।
ବର୍ଣ୍ଣ ଅଭଙ୍ଗ ସଭଙ୍ଗରେ ଏ ଶ୍ଳେଷ ଯେ
ବୁଝ ସ୍ଥାନ ସ୍ଥାନକେ କରି ପ୍ରକାଶ ଯେ
ବଳାଇ ଚିତ୍ତ ଅନବରତ ଶ୍ରୋତାଏ ଗ୍ରହଣ ତାରକ ମନ୍ତ୍ର
ସୀତା ଶ୍ରୀରାମ ଚରିତ ଗୀତ କୃତେ ଲଳସ ଯେ ॥ ୩ ॥

---

ବିରାଜରୂପ—ଯେ ରାଜାଙ୍କ ତୁଲ୍ୟ ଆଡ଼ମ୍ବରପୂର୍ଣ୍ଣ ବେଶଭୂଷା ଶୂନ୍ୟ (ବିଗତ ହୋଇଛି ରାଜରୂପ ଯାହାଙ୍କ ଠାରୁ) ଦ୍ୱିଜରାଜ—ସର୍ପସମୂହ, ବ୍ରାହ୍ମଣମାନେ । ଆତ୍ମଭୂପର—କନ୍ଦର୍ପ (ଆତ୍ମଭୂ)ର ଶତ୍ରୁ । ବୁଧଜନକ ଶିରୋଭୂଷଣ—ଯେ ମସ୍ତକରେ ଚନ୍ଦ୍ରଙ୍କୁ (ବୁଧ ଜନକ=ଚନ୍ଦ୍ର) ଧାରଣ କରିଛନ୍ତି । ବଳି ଯାହାକୁ ସର୍ବଦା ନାହିଁ—ଶିବଙ୍କର ନାମ 'ଆଶୁତୋଷ' ହୋଇଥିବାରୁ ସର୍ବସିଦ୍ଧିଦାୟିନୀ ଦୁର୍ଗା ମଧ୍ୟ ଭକ୍ତମାନଙ୍କୁ ସନ୍ତୁଷ୍ଟ କରିବା ବିଷୟରେ ଯାହାଙ୍କୁ ବଳିପାରି ନାହାଁନ୍ତି । ଦ୍ୱିପପ୍ରସନ୍ନ କରତା—ମହାଦେବ ହସ୍ତୀଚର୍ମ (ଦ୍ୱିପୀ) ଧାରଣ କରିଥିବାରୁ ହସ୍ତୀର ପ୍ରସନ୍ନକର୍ତ୍ତା ଅଟନ୍ତି । ପୁନତ—ପୁଣି ମଧ୍ୟ । ଧର୍ମ ସ୍ୱରୂପ—ମୃତ୍ୟୁଦେବଙ୍କ ରୂପ (ମହାଦେବ ମୃତ୍ୟୁକୁ ଜୟକରି ଆୟୁଷକୁ ଆଣି 'ମୃତ୍ୟୁଞ୍ଜୟ' ନାମ ଧାରଣ କରିଛନ୍ତି) ।

ସୂର୍ଯ୍ୟଙ୍କପକ୍ଷେ—ବହୁତ ଯେତୁ ରୋହିତ ମୂର୍ତ୍ତି—ଯେଉଁ ସୂର୍ଯ୍ୟ ଲାଲବର୍ଣ୍ଣ (ରୋହିତ) ଧାରଣ କରିଥାନ୍ତି (ଉଦୟ ଓ ଅସ୍ତ କାଳରେ) । ଶ୍ରୁତିରଞ୍ଜନ କାରକ ଅତି—ଯେ ଅତି ମାତ୍ରାରେ ମାର୍ଗର (ଶ୍ରୁତି) ସୌନ୍ଦର୍ଯ୍ୟ ସଂପାଦନ କରିଥାନ୍ତି । ହଂସ—ସୂର୍ଯ୍ୟ । ବିରାଜରୂପ—ବିରାଜିତ ହେବାର ସୌନ୍ଦର୍ଯ୍ୟ । ଦ୍ୱିଜ—ପକ୍ଷୀ, ବ୍ରାହ୍ମଣ । ଆତ୍ମଭୂପର—ଚନ୍ଦ୍ରଠାରୁ ଶ୍ରେଷ୍ଠ (ଆତ୍ମଭୂ=ଚନ୍ଦ୍ର, ପର=ଶ୍ରେଷ୍ଠ) । ବୁଧଜନକ··ବଚନ କହି—ଦେବଗଣଙ୍କ ଅଧିପତି (ବୁଧଜନକ ଶିରୋଭୂଷଣ) ଇନ୍ଦ୍ର ମଧ୍ୟ ଯାହାଙ୍କଠାରେ ବିନୟ ପ୍ରକାଶ କରିଥାନ୍ତି । ଦ୍ୱିପପ୍ରସନ୍ନ କରତା—ଯେ ଜମ୍ବୁ, ପ୍ଲକ୍ଷ ପ୍ରଭୃତି ଦ୍ୱୀପକୁ ଆଲୋକମୟ କରିଥାନ୍ତି । ଧର୍ମ ସ୍ୱରୂପ ଗ୍ରାହୀ—ଧର୍ମଦେବ ନାମରେ ଯାହାଙ୍କର କୀର୍ତ୍ତି ରହିଛି ।

୩ । ବିଷ୍ଟର ଶ୍ରବା—ଯେ ବୃକ୍ଷକୁ (ବିଷ୍ଟର) ଆଶ୍ରୟ କରିଥାନ୍ତି । ବିଭିନ୍ନ ଦେବତା ବିଭିନ୍ନ ବୃକ୍ଷକୁ ଆଶ୍ରୟ କରିଥାନ୍ତି । ବ୍ରହ୍ମାଣ୍ଡେଶ୍ୱର—ସମସ୍ତ ବ୍ରହ୍ମାଣ୍ଡର ପ୍ରଭୁ । ପରମପଦ ଭଜନ୍ତି ନର—ତାହାଙ୍କୁ ଭଜୁଥିବା ଲୋକ ପରମପଦ(=ମୋକ୍ଷ) ଲାଭ କରେ । ଅତି ସୁମତି—ଅତିଶୟ ପଣ୍ଡିତ ।

ବାଲ୍ମୀକି ବ୍ୟାସ କବି ପର୍ଯ୍ୟନ୍ତରେ          ମହାକାବ୍ୟ କେ ପୁରାଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ
ବହୁଲେ କାବ୍ୟ ଯେ କାଳିଦାସେ          ଚମ୍ପୂ ରଚନା ଭୋଜ ନରେଶେ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ଗ୍ରନ୍ଥ ଉଜ୍ଜ୍ୱଳ ଚନ୍ଦ୍ରା ଯେ ।
ବିବେକ ହିଁ ଉଦୟ ଏମନ୍ତ ଧାୟୁ ଯେ
ବ୍ୟୋମେ ତାରକା ଯେବେ ଝଲକୁଥାଇ ଯେ
ବିଭାବରୀରେ ଜ୍ୟୋତିରିଙ୍ଗଣ-          ଗଣ ଜ୍ୟୋତିକି ଦେଖାନ୍ତି ପୁଣ
ସୁଜନେ ସବଧାନରେ ଶୁଣ ଗ୍ରନ୍ଥ ରଚଇ ଯେ ॥ ୪ ॥

---

ସମଗ୍ର ବ୍ରହ୍ମାଣ୍ଡର ଅଧିପତି ବିଷ୍ଣୁର ଅବତାରଙ୍କୁ (ବିଷ୍ଣୁ, ଶିବ, ଦୁର୍ଗା ପ୍ରଭୃତି ଦେବଗଣ) ଭଜୁଥିବା ବ୍ୟକ୍ତି ପରମପଦ ଲାଭ କରେ । ଏହି କାରଣରୁ କାବ୍ୟାରମ୍ଭରେ ମୁଁ ତାହାଙ୍କୁ ବନ୍ଦନା କଲି । ଏହି କାବ୍ୟରେ ଯେଉଁ ରାମଙ୍କ ବିଷୟ ବର୍ଣ୍ଣନା କରାଯିବ, ସେହି ବଂଶର ମୂଳ ପୁରୁଷ ହେଉଛନ୍ତି ସୂର୍ଯ୍ୟ । ସୁତରାଂ, ଏଥିରେ ସୂର୍ଯ୍ୟଙ୍କୁ ମଧ୍ୟ ସ୍ତୁତି କରାଯିବା ଉଚିତ ମନେ କରୁଛି । ହେ ପଣ୍ଡିତଗଣ ! ଆପଣମାନେ ଏହି ବିଷୟ ବିଚାର କରନ୍ତୁ । ଏଥିରେ ବହୁ ସ୍ଥାନରେ ଅଭଙ୍ଗ ଓ ସଭଙ୍ଗ ଶ୍ଳେଷ ସ୍ଥାନ ପାଇଛି । ତାହା ଉପଯୁକ୍ତ ସ୍ଥାନରେ ଆପଣମାନେ ଉପଲବ୍ଧି କରିପାରିବେ । ମୁଁ ସର୍ବଦା ମନ ମଧ୍ୟରେ ବିଷ୍ଣୁର ପୂଜା କରି ମୋର ସୌଭାଗ୍ୟ ବଳରେ ରାମତାରକ ମନ୍ତ୍ର ଗ୍ରହଣ କଲି ଏବଂ ଉକ୍ତ ମନ୍ତ୍ର ପ୍ରସାଦରୁ ସୀତାରାମଚରିତ ମୂଳକ କାବ୍ୟ ରଚନା ନିମିତ୍ତ ମୋର ଲାଳସା ଜାତ ହେଲା ।

୪ । ବାଲ୍ମୀକି—ରାମାୟଣ ଗ୍ରନ୍ଥ ରଚୟିତା । ବ୍ୟାସ—ଅଧ୍ୟାତ୍ମ ରାମାୟଣ-ରଚୟିତା । ମହାକାବ୍ୟ—ବାଲ୍ମୀକିଙ୍କ ରାମାୟଣକୁ ଏକ ମହାକାବ୍ୟ ରୂପେ ଗ୍ରହଣ କରାଯାଇଛି । ପୁରାଣ—ଅଧ୍ୟାତ୍ମ ରାମାୟଣ ଏକ ପୁରାଣ ରୂପେ ଗୃହୀତ ହୋଇଥାଏ । ମହା ନାଟକ······ରଚିତା ଯେ—ହନୁମାନଙ୍କ ଦ୍ୱାରା 'ମହାନାଟକ' ନାମକ ସଂସ୍କୃତ ଗ୍ରନ୍ଥ ରଚିତ ହୋଇଛି । ଏହି ନାଟକରେ ରାମଚରିତ ବର୍ଣ୍ଣିତ (ବାତସୁତ = ହନୁମାନ) । ବହୁଲେ ··· କାଳିଦାସେ — ମହାକବି କାଳିଦାସ ରାମାୟଣର କଥାବସ୍ତୁକୁ ନେଇ 'ରଘୁବଂଶ' ନାମକ କାବ୍ୟ ସଂସ୍କୃତ ଭାଷାରେ ରଚନା କରିଥିଲେ । ଚମ୍ପୂ ରଚନା ଭୋଜ ନରେଶେ—ଭୋଜରାଜା ସଂସ୍କୃତ ଭାଷାରେ ଚମ୍ପୂ ରାମାୟଣ ରଚନା କରିଛନ୍ତି । କୃପାସିନ୍ଧୁ—ଓଡ଼ିଶାର କବି ବଳରାମ ଦାସ । କେତେକଙ୍କ ମତରେ ଦୈବୀ କୃପା ବଳରେ ସିଦ୍ଧିଲାଭ କରିଥିବା ବିଭିନ୍ନ ଭାଷାର ରାମାୟଣ ଗ୍ରନ୍ଥକାରଗଣ (ତୁଳସୀ ଦାସ, ବଳରାମ ଦାସ ଇତ୍ୟାଦି) । ବିଭାବରୀ—ରାତି । ଜ୍ୟୋତିରିଙ୍ଗଣ—ଜୁଳୁଜୁଳିଆ ପୋକ । ସାବଧାନରେ—ମନଦେଇ । ବିବେକ ହିଁ···

ବିଦ୍ୟୁତକେଶ ବଂଶରେ ଜାତ          ସୁମାଳୀ ମାଳୀ ଯେ ମାଲ୍ୟବନ୍ତ
ସ୍ୱର୍ଗ ଲୁଣ୍ଠନେ ଅହି-ଅହିତ ଧିଆନ କରି ଯେ
ବିଧୁ ସମରେ ଜ୍ୟୋତି ଜାଜ୍ୱଳିତ          ବିଧୁ ସମରେ ହେଲେ ଆଗତ
ସେ ଆରୋହିତ ଅହି ଅହିତ ଗଦାବ୍ଜ ଧରି ଯେ
ବଜାଇଣ ଶଙ୍ଖାରି କରଣେ ଘାତ ଯେ
ବଧ କଲେ ଶଙ୍ଖାରି ଦ୍ୱିତୀୟ ଭ୍ରାତ ଯେ
ବଡଭୀ ଲଭି ପାତାଳେ ଲୁଚି          ଲଙ୍କା ବଡଭିପୁରକୁ ମୁଞ୍ଚି
ଲଙ୍କା ଯେ ଦଣ୍ଡପାଣିରେ ରହି ଭୟ ଯେମନ୍ତ ଯେ ।। ୫ ।।

---

ଛାନ୍ଦ ରଚଇ ଯେ—ମୋର ମନରେ ଏହି ଧାରଣା ଜାତ ହେଲା ଯେ, ରାତ୍ରିକାଳରେ ଆକାଶରେ ଅସଂଖ୍ୟ ନକ୍ଷତ୍ର ଜ୍ୟୋତି ବିକୀରଣ କରୁଥିଲା ବେଳେ ଜୁଳୁଜୁଳିଆ ପୋକ ମଧ୍ୟ ସେହି ସମୟରେ ନିଜର ଅତି କ୍ଷୀଣ ଆଲୋକ ପ୍ରକାଶ କରୁଥାଏ । ସୁତରାଂ, ହେ ପଣ୍ଡିତମାନେ ! ଆପଣମାନେ ମନ ଦେଇ ମୋଦ୍ୱାରା ରଚିତ ଏହି କାବ୍ୟର ବିଭିନ୍ନ ଛାନ୍ଦକୁ ଶୁଣନ୍ତୁ ।

୫ । ଅହି ଅହିତ—ଇନ୍ଦ୍ର (ଅହି = ବୃତ୍ରାସୁର, ତାହାର ଅହିତ = ଶତ୍ରୁ) । ଧିଆନ—ଧ୍ୟାନ । ବିଧୁସମରେ—ଚନ୍ଦ୍ରତୁଲ୍ୟ । ବିଧୁ—ବିଷ୍ଣୁ । ସମରେ—ଯୁଦ୍ଧରେ । ଅହି-ଅହିତ—ଗରୁଡ଼ (ଅହି = ସର୍ପ, ତାହାର ଅହିତ = ଶତ୍ରୁ) । ଗଦାବ୍ଜ—ଗଦା ଓ ପଦ୍ମ । ଶଙ୍ଖାରି—ଶଙ୍ଖ ଓ ଚକ୍ର (ଶଙ୍ଖ + ଅରି, ଅରି = ଚକ୍ର) । ଶଙ୍ଖାରି—ଶଙ୍ଖାସୁରର ଶତ୍ରୁ, ବିଷ୍ଣୁ । ଦ୍ୱିତୀୟ ଭ୍ରାତ—ଦୁଇଭାଇ । ବଡ଼ଭୀ—ବଡ଼ ଭୟ । ବଡ଼ଭିପୁର—ଚନ୍ଦ୍ରଶାଳାପୁର । ଲଙ୍କା—ଲଙ୍କାପୁରୀ । ମୁଞ୍ଚି—ତ୍ୟାଗକରି । ଲଙ୍କା—କୁଳଟା ସ୍ତ୍ରୀ । ଦଣ୍ଡପାଣି—ଜଗୁଆଳ ।

ବିଦ୍ୟୁତ୍ କେଶ ନାମକ ରାକ୍ଷସର ବଂଶରେ ସୁମାଳୀ, ମାଳୀ ଓ ମାଲ୍ୟବନ୍ତ ନାମକ ତିନି ଜଣ ରାକ୍ଷସ ଜାତ ହେଲେ । ସେମାନେ ସ୍ୱର୍ଗପୁରକୁ ଲୁଣ୍ଠନ କରିବାରୁ ଇନ୍ଦ୍ର ବିଷ୍ଣୁଙ୍କୁ ଧ୍ୟାନ କଲେ । ବିଷ୍ଣୁ ଚନ୍ଦ୍ର ତୁଲ୍ୟ ଜ୍ୟୋତି ପ୍ରକାଶ କରି ଏବଂ ଗରୁଡ଼ ଉପରେ ଆସୀନ ହୋଇ ହସ୍ତରେ ଗଦା, ପଦ୍ମ ଧାରଣ ପୂର୍ବକ ଦେବାସୁର ଯୁଦ୍ଧରେ ଆବିର୍ଭୂତ ହେଲେ । ସେ ଶଙ୍ଖନାଦ କରି ଚକ୍ର ସାହାଯ୍ୟରେ ମାଳୀ ଓ ମାଲ୍ୟବନ୍ତ ଏହି ଦୁଇ ଭାଇଙ୍କୁ ବଧ କଲେ । ଏହା ଫଳରେ ସୁମାଳୀ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଲା । କୁଳଟା ସ୍ତ୍ରୀମାନେ ରାତିରେ ଗାଁର ଜଗୁଆଳକୁ ଭୟ କରି ଲୁଚିଗଲା ପରି ସେ (ସୁମାଳୀ) ମଧ୍ୟ ଲଙ୍କାଗଡ଼ର ଚନ୍ଦ୍ରଶାଳା ପୁରକୁ ଛାଡ଼ି ପାତାଳରେ ଲୁଚି ରହିଲା ।

ବାହାର ପୁଣ୍ୟଜନେ ହୋଇଲେ                    ବହାର ପୁଣ୍ୟଜନେ ବହୁଲେ
ରଞ୍ଜନ ପୁଣ୍ୟଜନେ କୁବେରେ ସେ ପାପ୍ତିମାନ ଯେ

ବାସ ନଗର ମାଶ ନଗ୍ରର                    ନଗର ତଳେ କରି ସଞ୍ଚର
ଜଗତତାତ ସୂତକୁମର କଲେ ସେ ସ୍ଥାନ ଯେ

ବହୁ ସମୟ ଅନ୍ତେ ଏହି ପ୍ରକାରେ ଯେ
ବାର୍ତ୍ତା ପାଇ ସୁମାଳୀ ଏମାନ ଗୃଢ଼େ ଯେ

ବିଶ୍ରବାଋଷିର ସନ୍ନିଧିକ                    ନେଲା ଦୁହିତା ରସନିଧିକ
ଶୋଭାରେ କରେ ସେ ଧିକଧିକ ନାରୀ ମାତର ଯେ ।। ୬ ।

ତାଙ୍କେ ଅନାଇଁ ଅଙ୍କେ ବସାଇ                    ସେ ପଙ୍କେରୁହଶରକୁ ନେଇ
ଶଙ୍କେ ମଦନ ଆତଙ୍କେ ତହିଁ ମୁନିଉତ୍ତମ ଯେ ।

ବୋଲେ ସୁନ୍ଦରୀ କୋଳେ ମୋ ବସ                    ତୁଳେ ମନ୍ଦି ତୋ ହୋଇବ ତୋଷ
ଭୂଲେ ତୋ ରୂପ ମୋର ମାନସ ପ୍ରକାଶ ପ୍ରେମ ଯେ
ବାଳା ଓଳଗି ସନମତ କରାଇ ଯେ
ବନ୍ଧି ସାର୍ଦ୍ଧରେ ବଢ଼ାଇ ବଢ଼ାଇ ଯେ

---

୬ । ପୁଣ୍ୟଜନେ—ରାକ୍ଷସମାନେ, ପୁଣ୍ୟାତ୍ମା ଲୋକମାନେ, ଯକ୍ଷମାନେ । ବାସନଗର—ବାସସ୍ଥଳ (ଲଙ୍କାପୁର) । ନଗର—ପର୍ବତର (ନଗ = ପର୍ବତ) । ନଗର—ବୃକ୍ଷର (ନଗ = ବୃକ୍ଷ) । ଜଗତତାତସୁତକୁମର—ବିଶ୍ରବାଋଷି (ଜଗତତାତ = ବ୍ରହ୍ମା, ତାହାଙ୍କ ପୁତ୍ର = ପୁଲସ୍ତ୍ୟ, ତାହାଙ୍କ ପୁତ୍ର = ବିଶ୍ରବାଋଷି) । ଗୃଢ଼େ—ଚରଦ୍ୱାରା । ସନ୍ନିଧିକ—ନିକଟକୁ । ରସନିଧି —ଶୃଙ୍ଗାରରସର ଜନନୀସ୍ୱରୂପା (= ଅତ୍ୟନ୍ତ ସୁନ୍ଦରୀ) । ଧିକ ଧିକ—ନିନ୍ଦା କରିବା ।

ସୁମାଳୀ ପାତାଳ ପୁରକୁ ଗୁଳସିବାପରେ ରାକ୍ଷସମାନେ ଲଙ୍କାଗ୍ରଡ଼ି ପଳାୟନ କଲେ । ତତ୍ପରେ ପୁଣ୍ୟାତ୍ମା ଲୋକମାନେ ଆନନ୍ଦରେ ଚଳପ୍ରଚଳ ହେଲେ । ସେହି ଲଙ୍କାପୁରରେ ଯକ୍ଷମାନଙ୍କ ସହିତ କୁବେର ଅବସ୍ଥାନ କରିବାରୁ ତାହା ଅତ୍ୟନ୍ତ ପାପ୍ତିମନ୍ତ ହୋଇଉଠିଲା । ସେ ଲଙ୍କାନଗରୀ ନିକଟବର୍ତ୍ତୀ ସୁବଳ ପର୍ବତର ଏକ ବୃକ୍ଷମୂଳରେ ବିଶ୍ରବାଋଷି ଅତି ଶୀଘ୍ର ଅବସ୍ଥାନ କଲେ । ବହୁକାଳ ପରେ ସୁମାଳୀ ଏହି ଖବର ନିଜର ଗୁପ୍ତଚରମାନଙ୍କଠାରୁ ଶୁଣିବାକୁ ପାଇଲା । ସେ ନିଜର ଅପୂର୍ବ ସୁନ୍ଦରୀ କନ୍ୟା ନିକଷାକୁ ସେହି ଋଷିଙ୍କ ନିକଟକୁ ନେଲା । ଉକ୍ତ କନ୍ୟା ନିଜର ସୌନ୍ଦର୍ଯ୍ୟରେ ସମଗ୍ର ସୃଷ୍ଟିର ନାରୀମାନଙ୍କୁ ଧିକ୍କାର କରୁଥିଲା ।

ବେଗେ ସୁରତ ରତ ସନ୍ଧ୍ୟାରେ     ସନ୍ଧ୍ୟାମର୍ଣ୍ଣୀ ସେ ତାର ଗର୍ଭରେ
ଜାତ ହୋଇଲେ ରକ୍ଷ ଶରୀରେ ସୁତତନୟୀ ଯେ ॥ ୭ ॥

ବିଂଶତି ଭୁଜ ଦଶାନନରେ     କି ଦଶା ଦେବ ଦେବ କହନ୍ତରେ
ନର ନାଗରେ ଧରଣୀ ଧରେ ହେଉ ପତନ ଯେ
ବିକଟ ରୂପ ପ୍ରକଟ ଅତି     ରକତ ପରି ବ୍ୟକତ କାନ୍ତି
ଘଟଣ ଘଟ ସଦୃଶ ଶ୍ରୁତି ଭୈରବ ସ୍ୱନ ଯେ ।
ବଧିରତା ନିକଟ ଶୁଣିଲି ଜନ ଯେ
ବିଗତ ଯେ ଭୀଷଣେ ଭକ୍ତି ନନ୍ଦନ ଯେ ।
ବୋଲାଇଲେ ସେ ଦଶବଦନ     କୁମ୍ଭଶ୍ରବଣ ଯେ ବିଭୀଷଣ
ନନ୍ଦିନୀ ସୂର୍ପଣଖାର ନଖ ସୂର୍ପ ସମାନ ଯେ ॥ ୮ ॥

---

୭ । ଅଙ୍କେ – କୋଡ଼ରେ । ପଙ୍କେରୁହ—ପଦ୍ମ । ମଦନ—କାମ । ଶଙ୍କେ—ବିଚଳିତ । ମୁନିଉତ୍ତମ—ମୁନିଶ୍ରେଷ୍ଠ (ବିଶ୍ରବା ଋଷି) । ସନମତ—ସମ୍ମତ, ରାଜିକରାଇ । ବହ୍ନି—ଅଗ୍ନି । ବିଭାବ—ବିବାହ କାର୍ଯ୍ୟ । ସୁରତ ରତ—କାମକ୍ରୀଡ଼ା । ସନ୍ଧ୍ୟାମର୍ଣ୍ଣୀ — ରାକ୍ଷସୀ । ରକ୍ଷଶରୀରେ—ରାକ୍ଷସ ଶରୀରରେ । ସୁତତନୟୀ—ପୁଅ ଓ ଝିଅ ।

ସେହି କନ୍ୟା (କୈକସୀ) ନିଜର ପଦ୍ମନେତ୍ରଦ୍ୱାରା ବିଶ୍ରବା ଋଷିଙ୍କ ପ୍ରତି କଟାକ୍ଷପାତ କଲା । ତାହାର ଏହି କଟାକ୍ଷ କନ୍ଦର୍ପର ଶରତୁଲ୍ୟ ଋଷିଙ୍କ ଶରୀରକୁ ବିଦ୍ଧ କଲା ଏବଂ ସେ କାମପୀଡ଼ାରେ ବିଚଳିତ ହୋଇପଡ଼ିଲେ । ସେ ଉକ୍ତ କନ୍ୟାକୁ କହିଲେ—"ରେ ସୁନ୍ଦରି ! ମୋ କୋଳରେ ବସି ପ୍ରେମ ପ୍ରକାଶ କର । ତୋର ପ୍ରେମରେ ମୋର ମନ ବଶୀଭୂତ ହୋଇ ଯାଇଛି ।" ଏହା ଶୁଣି ସେହି କନ୍ୟା ଋଷିଙ୍କ ଓଳଗି ହୋଇ ନିଜର ସମ୍ମତି ଜଣାଇଲା । ତତ୍ପରେ ଅଗ୍ନିଙ୍କୁ ସାକ୍ଷୀ ରଖି ସେମାନେ ପରସ୍ପର ବିବାହ କାର୍ଯ୍ୟ ସମାପନ କଲେ । ଉଭୟେ ସେହି ସନ୍ଧ୍ୟାରେ ରତିକ୍ରୀଡ଼ାରେ ନିମଗ୍ନ ହେଲେ । ଫଳରେ ସେହି ରାକ୍ଷସୀର ଗର୍ଭରୁ ରାକ୍ଷସ ଶରୀରରେ ପୁତ୍ର ଓ କନ୍ୟା ଜାତ ହେଲେ ।

୮ । ବିଂଶତି ଭୁଜ—କୋଡ଼ିଏ ସଂଖ୍ୟକ ହାତ । ଦଶାନନ—ଦଶଗୋଟି ମୁଖ । ବିକଟ —ଭୟଙ୍କର । ବ୍ୟକତ—(ବ୍ୟକ୍ତ) ପ୍ରକଟିତ । ଘଟଣ—ଧାରଣ କରିଥିବା, ଗଠିତ ହୋଇଥିବା । ଘଟସଦୃଶ ଶ୍ରୁତି—କୁମ୍ଭ ପରି କାନ । ଭୈରବ ସ୍ୱନ —ଭୟଙ୍କର ଶବ୍ଦ । ବଧିର—କାଲ । ବିଗତ ଯେ ଭୀଷଣ—ଯାହାଠାରୁ ଭୀଷଣତା ବା ଭୟଙ୍କର ସ୍ୱଭାବ ଦୂର ହୋଇଛି (ବିଭୀଷଣ) । ଦଶବଦନ—ଦଶମୁଖ (ରାବଣ) । କୁମ୍ଭଶ୍ରବଣ—କୁମ୍ଭକର୍ଣ୍ଣ । ସୂର୍ପ—କୁଲା ।

ବୃଦ୍ଧି ଘଟନ ବନକୁ ବନୁ     ଗିରିସମରେ ଦିଶିଲ୍ଲ ତନୁ
ଗିମ୍ବଷମରେ ଏ ଅନୁମାନୁ ନୁହଇ ଆନ ଯେ ।
ବିଶାଳ ମହାଶାଳ କି କର     ସାନୁ ସମାନେ ଉନ୍ନତ ଶିର
କୃଶାନୁ ପରି ତେଜଜନକର ଜ୍ୱଳିତ ନୟନ ଯେ ।
ବିଦ୍ୟମାନ କୋଟର ତଥା ଲୋଚନ ଯେ ।
ବର୍ଦ୍ଧମାନ କରଣ ଜୀବ ଶୋଚନ ଯେ ।
ବୁଲିଲେ ଘୁରେ ଘୁରେ ସ୍ୱଚ୍ଛରେ     ମାଡିଲେ ନାନା ଦ୍ରବ୍ୟ ଭକ୍ଷରେ
ଗଲା ଦ୍ୱାଦଶ ସମ୍ବତ୍ସରରେ ଯେ କୁମ୍ଭକର୍ଣ୍ଣ ଯେ । ୯ ।

---

ସେହି ନିକଷାର ଗର୍ଭରୁ ସର୍ବ ପ୍ରଥମେ କୋଡ଼ିଏ ହାତ ଓ ଦଶମୁଖ ଥିବା ଏକ ପୁତ୍ର ଜନ୍ମ ହେଲା । ସେ ଭୂମିଷ୍ଠ ହେବା ମାତ୍ରେ ଦେବଲୋକ, ଅନ୍ତରୀକ୍ଷଲୋକ, ନରଲୋକ ଓ ନାଗଲୋକର କି ଭୟଙ୍କର ଅବସ୍ଥା ହେବ ଭାବି ପୃଥିବୀ ଭୟରେ ଥରି ଉଠିଲା । ଏହାପରେ ଅତି ଭୟଙ୍କର ରୂପ, ରକ୍ତବର୍ଣ୍ଣ କାନ୍ତି ତଥା ଘଟ (କୁମ୍ଭ) ସଦୃଶ କର୍ଣ୍ଣ ଧାରଣ କରିଥିବା ଦ୍ୱିତୀୟ ପୁତ୍ର ଜନ୍ମଲାଭ କଲା । ଜନ୍ମହେବା ମାତ୍ରେ ତାହାର ଭୟଙ୍କର ଶବ୍ଦରେ ନିକଟରେ ଥିବା ଲୋକମାନେ ବଧିର (କାଲା) ହୋଇଗଲେ । ତତ୍ପରେ ଆଉ ଗୋଟିଏ ପୁତ୍ର ଜନ୍ମ ହେଲା, ଯେ ଭଦ୍ର ରୁଚିତ (ସୁନ୍ଦର) ଥିଲା । ସେମାନେ ଦଶାନନ, କୁମ୍ଭକର୍ଣ୍ଣ ଓ ବିଭୀଷଣ ନାମରେ ଖ୍ୟାତ ହେଲେ । ଶେଷରେ ଗୋଟିଏ କନ୍ୟା ଜାତ ହେଲା, ଯାହାର ନଖଗୁଡ଼ିକ ସୂର୍ପ (କୁଲା) ପରି ହୋଇଥିବାରୁ ସେ ସୂର୍ପଣଖା ନାମ ଧାରଣ କଲା ।

୯ । ଗିରି ସମରେ—ପର୍ବତ ସମାନ । ତନୁ—ଶରୀର । ଗିମ୍ବଷମରେ—ଗ୍ରୀଷ୍ମଋତୁରେ । ସାନୁ—ପର୍ବତର ଶୃଙ୍ଗ । କୃଶାନୁ—ଅଗ୍ନି । କୋଟର—କୋରଡ଼ । ଶୋଚନ—ଶୋକ । ଦ୍ୱାଦଶ ସମ୍ବତ୍ସର—ବାରବର୍ଷ ।

ସେହି ପୁଅମାନେ ବନକୁବନ ଯତ୍ନରେ ବଢ଼ିବାକୁ ଲାଗିଲେ । ସେମାନଙ୍କ ଶରୀର ଗ୍ରୀଷ୍ମକାଳର ପର୍ବତ ପରି ଦେଖାଯାଉଥିଲା ବୋଲି ଅନୁମାନ କରିବା କିଛି ଅଯଥାର୍ଥ ନୁହେଁ (ଯଥାର୍ଥ) । (କାରଣ, ପର୍ବତରେ ଯାହା ଯାହା ଥାଏ, ସେମାନଙ୍କଠାରେ ସେ ସବୁ ରହିଥିଲା) ସେମାନଙ୍କ ହାତଗୁଡ଼ିକ ପର୍ବତରେ ଥିବା ବିଶାଳ ଶାଳବୃକ୍ଷ ତୁଲ୍ୟ, ମସ୍ତକ ପର୍ବତର ଶୃଙ୍ଗ ତୁଲ୍ୟ, ଦେହର କାନ୍ତି ପର୍ବତରେ ଜଳୁଥିବା ଅଗ୍ନି ତୁଲ୍ୟ ଏବଂ ନେତ୍ର ପର୍ବତର ଖୋଲ ବା ଗୁମ୍ଫାସଦୃଶ ଦେଖା ଯାଉଥିଲା । ସେମାନେ ପୃଥିବୀର ପ୍ରାଣୀମାନଙ୍କ ଶୋକ ବଢ଼ାଇବାକୁ ଲାଗିଲେ । ସେମାନେ ମନଇଚ୍ଛାରେ ଘୁରିଆଡ଼େ ବୁଲି ନାନାପ୍ରକାର ଦ୍ରବ୍ୟ ଭକ୍ଷଣ କଲେ । ଏହିପରି ବାରବର୍ଷ ଅତିବାହିତ ହେଲା । ଏହାପରେ କୁମ୍ଭକର୍ଣ୍ଣର କ୍ରିୟାକଳାପ (ପରବର୍ତ୍ତୀ ପଦରେ) ବର୍ଣ୍ଣନା କରାଯିବ ।

ବହୁତ ଜନ ଜୀବନ ନେଇ ଉତ୍ତର କୁରୁ ପ୍ରଦେଶେ ଯାଇ
ଉତ୍ତର ନିରନ୍ତର ନ ସହି ଇନ୍ଦ୍ରେ ନମାନ ଯେ ।
ବଜ୍ରାଘାତକୁ ମଣି ଇତର ଉତ୍ପାଟି ଦନ୍ତ ଐରାବତର
ପ୍ରହାରେ ମୋହ ସୁରଈଶ୍ୱର ପଳାଇ ଘେନ ଯେ ।
ବିଭୀଷଣ ଯକ୍ଷରେ ଦ୍ୱନ୍ଦ୍ୱ ରଚାନ୍ତ ଯେ
ବପ୍ତା-ଶ୍ୱଶୁର ସ୍ଥାନେ ଦଶାସ୍ୟ ଗତ ଯେ ।
ବିରୋଜାମଣ୍ଡଳରେ ତପସ୍ୟା ଜଗଜ୍ଜୟରେ କରି ମନୀଷା
ଅଶନହୀନେ ଦିବସ ନିଶା କାଳ ବଞ୍ଚିତ ଯେ । ୧୦ ।

ବିଗନ ଘାଲ ଲେଖନ ବର୍ଣ୍ଣି ମୁଣ୍ଡ ଚ୍ଛିଣ୍ଡାନଳେ ଦହନ
କରିଣ କଲା ଜ୍ୟେଷ୍ଠ ପଠନ କଷ୍ଟ ଅତ୍ୟନ୍ତ ଯେ
ବଳ୍କଳୀ ରଚ ଭୁଜମୂର୍ଦ୍ଧାରେ ସେ ଦଣ୍ଡ ଭୂର୍ମ୍ମାଭାବେ ଶ୍ରଦ୍ଧାରେ
ଧମନୀ ଗୁଣ କରି ବେଧାରେ ବିନର୍ଯ୍ୟୀ ଗୀତ ଯେ ।
ବାଉଁ ଗାଉଁ ହୋଇଲେ ଆସି ପ୍ରସନ୍ନ ଯେ
ବର କାମନା ପୂର୍ତ୍ତ୍ତି କଲେ ପ୍ରଦାନ ଯେ ।

---

୧୦ । ଉତ୍ତର କୁରୁ ପ୍ରଦେଶ—ହିମାଳୟ ଅଞ୍ଚଳ । ଉତ୍ତର ନିରନ୍ତର—କର୍କଶ ଉତ୍ତର । ଇତର—ତୁଚ୍ଛ । ଉତ୍ପାଟି—ଉପାଡ଼ି ଦେଇ । ସୁରଈଶ୍ୱର—ଇନ୍ଦ୍ର । ବପ୍ତାଶ୍ୱଶୁର ସ୍ଥାନ—ବାପାଙ୍କ ଶ୍ୱଶୁର ବା ଅଜାଙ୍କର ସ୍ଥାନ = ପାତାଳପୁର । ବିରୋଜାମଣ୍ଡଳ—ହିମାଳୟ ପର୍ବତ (ବିରୋଜା = ବିଡ଼ୋଜା = ଇନ୍ଦ୍ର) । ମନୀଷା—ଇଚ୍ଛା । ଅଶନହୀନେ—ଭୋଜନ ନକରି (ଉପବାସରେ) । ଦିବସନିଶା—ଦିନରାତି) ।

କୁମ୍ଭକର୍ଣ୍ଣ ସ୍ୱର୍ଗପୁରକୁ ଯାତ୍ରାକଲା । ମାର୍ଗରେ ବହୁତ ଲୋକଙ୍କୁ ହତ୍ୟାକରି ସ୍ୱର୍ଗରେ ଉପସ୍ଥିତ ହେଲା । ସେଠାରେ ଇନ୍ଦ୍ରଙ୍କୁ ନମାନି ତାହାଙ୍କୁ ନାନା ପ୍ରକାର କଟୁକଥା କହିଲା । ଇନ୍ଦ୍ରଙ୍କ ବଜ୍ରାଘାତକୁ ମଧ୍ୟ ଅତି ତୁଚ୍ଛ ମନେକରି ଐରାବତ ହସ୍ତୀର ଦାନ୍ତ ଉପାଡ଼ିଲା ଏବଂ ସେଥିରେ ଇନ୍ଦ୍ରଙ୍କୁ ପ୍ରହାର କରିବାରୁ ଇନ୍ଦ୍ର ଅଚେତ ହୋଇ ପଡ଼ିଲେ । ସେତେବେଳେ ଐରାବତ ହସ୍ତୀ ଇନ୍ଦ୍ରଙ୍କୁ ନେଇ ପଳାଇଗଲା । ତତ୍ପରେ ବିଭୀଷଣ ଯକ୍ଷଲୋକରେ ଯୁଦ୍ଧ ଆରମ୍ଭ କଲା । ରାବଣ ପାତାଳପୁରକୁ ଯାଇ ସେଠାରେ ସମସ୍ତ ପୂର୍ବଚରିତ ଶ୍ରବଣ କଲା । ତତ୍ପରେ ସେ ଜଗତ ଜୟକରିବା ନିମିତ୍ତ ମନରେ ଇଚ୍ଛା ପୋଷଣ ପୂର୍ବକ ତପସ୍ୟା ନିମିତ୍ତ ହିମାଳୟକୁ ଗଲା । ସେଠାରେ ସେ ଦିନରାତି ବିନା ଭୋଜନରେ ତପସ୍ୟାକଲା ।

ବର୍ତ୍ତିବୁ ଯୁଗ ଛପନଗଣ୍ଡା        ବରଣୀ ହେବ ବ୍ରହ୍ମାଣ୍ଡେ ଖଣ୍ଡା
ସୀତା ହରଣ ନଷ୍ଟେ ମରଣ କାରଣ ଜାଣ ଯେ ॥ ୧୧ ॥

ବେଦରେ ସୀତା ବହୁ ଯୋଷିତା        ଯେ ହୋଇଥିବ ଜନକସୁତା
ବହୁତ ରାମ ପରକାଶିତା ଯେ ଦାଶରଥି ଯେ
ବାଗ୍‌ଦେବୀ ଆସି ବସିଲେ ଗଳେ        କୁମ୍ଭକର୍ଣ୍ଣର ବରଦ କାଳେ
'ନିଦ୍ରା ମୁଁ ଚିର' ବୋଲି ଚପଳେ ମାଗିଲା ତଥି ଯେ ।
ବତ୍ସରକ ନ ପୂରୁ ଉଠିବୁ ଯେବେ ରେ
ବଧ ଅବଶ୍ୟ ହେବ ତୋହର ତେବେ ରେ ।
ବିଷ୍ଣୁ ଭକତ ହୋଇ ଅମର        ଜଗତ ମଧ୍ୟେ କର ବିହାର
ଗତ ପଦ୍ମଜ ଦେଇ ଏ ବର ସାନୁଜେ ଜବେ ଯେ ॥ ୧୨ ॥

---

୧୧ । ବିଖନ—ବିଧାତା । ଖଲ—କପାଳ । ବଲ୍ଲକୀ—ବୀଣା । ମୂର୍ଦ୍ଧା—ମସ୍ତକ । ଧମନି—ଶିରା । ବେଧା—ବିଧାତା (ବ୍ରହ୍ମା) । ବାଉଁ ଗାଉଁ—ବଜାନ୍ତେ ଓ ଗାଆନ୍ତେ । ବର୍ତ୍ତିବୁ—ବଞ୍ଚିବୁ । ବରଣୀ—ବର୍ଣ୍ଣନୀୟ (ପୂଜନୀୟ) ।

ଜ୍ୟେଷ୍ଠ ଭାଇ ରାବଣ ନିଜର ଦଶଗୋଟି ମୁଣ୍ଡକୁ ପ୍ରଚଣ୍ଡ ଜ୍ୱଳନ୍ତ ଅଗ୍ନି ମଧ୍ୟରେ ଆହୁତ ଦେଇ ଆପଣାର ଲଲାଟପଟରେ ବିଧି ଅଙ୍କିତ ଅକ୍ଷରଗୁଡ଼ିକ ଅତି କଷ୍ଟରେ ପଠନ କଲା । ବିଧାତାଙ୍କୁ ସନ୍ତୁଷ୍ଟ କରାଇବା ନିମିତ୍ତ ସେ ନିଜ ଶରୀରର ବିଭିନ୍ନ ଅଙ୍ଗକୁ ନେଇ ଏକ ବୀଣା ଗଠନ କଲା । ନିଜ ବାହୁକୁ ବୀଣାର ଦଣ୍ଡ, ମସ୍ତକକୁ ତାହାର ତୁମ୍ବୀ ଏବଂ ଶିରାପ୍ରଶିରାକୁ ଗୁଣ (ତାର) କରି ବୀଣା ବଜାଇଲା ଓ ସ୍ତୁତି ପାଠ କଲା । ତାହାର ବୀଣା ବାଦନ ଓ ସ୍ତୁତିପାଠରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ତାହା ନିକଟରେ ଉପସ୍ଥିତ ହେଲେ ଓ ତାହାକୁ ବର ପ୍ରଦାନ ପୂର୍ବକ କହିଲେ—"ତୁ ଛପନଗଣ୍ଡା ଯୁଗ ପର୍ଯ୍ୟନ୍ତ ବଞ୍ଚି ରହିବୁ । ତୋର ଖଣ୍ଡା ବା ବୀରତ୍ୱ ଜଗତରେ ବରଣୀୟ ହେବ । ମାତ୍ର ସୀତାହରଣ ତୋର ମୃତ୍ୟୁର ମୂଳ କାରଣ ହେବ ।

୧୨ । ବେଦରେ—ଲୋକ ପ୍ରସିଦ୍ଧିରେ । ଯୋଷିତା—ସ୍ତ୍ରୀ । ବାଗ୍‌ଦେବୀ—ସରସ୍ୱତୀ । ଚପଳେ—ତରତର ହୋଇ । ବତ୍ସର—ବର୍ଷ । ଗତ—ଚାଲିଗଲେ । ପଦ୍ମଜ—ବ୍ରହ୍ମା । ସାନୁଜେ—ସାନଭାଇ ବିଭୀଷଣଙ୍କୁ । ଜବେ—ଶୀଘ୍ର ।

ଲୋକ ପ୍ରସିଦ୍ଧିରେ 'ସୀତା' ନାମ ଧାରଣୀ ବହୁତ ସ୍ତ୍ରୀ ରହିଛନ୍ତି (ଯପରିକି ଲକ୍ଷ୍ମୀ, ପାର୍ବତୀ ଇତ୍ୟାଦି) । ସେହିପରି 'ରାମ'ନାମଧାରୀ ବହୁତ ବ୍ୟକ୍ତି ଅଛନ୍ତି (ପରଶୁରାମ, ବଳରାମ ଇତ୍ୟାଦି) । ମାତ୍ର ଜନକ ଋଷିଙ୍କ କନ୍ୟା ସୀତାଙ୍କୁ ହରଣ କଲେ, ଦଶରଥଙ୍କ

ବାହୁଡ଼ି ତହୁଁ ପାତାଳେ ଗଲା        ନୀକଷାତ୍ମଜପୁଂଜକୁ ସାଜି
ବେଢ଼ିଲେ ଲଙ୍କା କୁବେର ତେଜି ‘ଗଲା ସେ ପୁର ଯେ

ବିମାନେ ନେଲା ସର୍ବ ସମ୍ପତ୍ତି        ବି-ମାନେ ଯଥା ଗଗନେ ଗତି
ସେ ମନୋରଥ ରଥ ପ୍ରାପତି ଇଚ୍ଛି ସମର ଯେ ।

ବିରଚି ଉତ୍କଟ ପ୍ରଭା ପ୍ରକଟ କରି ଯେ
ବିଧୁନ୍ତୁଦ ବିଧୁକୁ ଗ୍ରାସିଲା ପରି ଯେ

ବିଶ୍ୱକେତୁରେ ହୋଇ ଅଦମ୍ଭା        ଶୋଭା ଆରମ୍ଭା ରମ୍ଭା ସୁରମ୍ଭା
ଉରୁକୁ ହରି, ହୋଇଲା ବିଭା ମୟକୁମାରୀ ଯେ ॥ ୧୩ ॥

---

ପୁଣି ରାମଙ୍କ ଦ୍ୱାରା ତୁ ନିହତ ହେବୁ । କୁମ୍ଭକର୍ଣ୍ଣ ବ୍ରହ୍ମାଙ୍କୁ ବର ମାଗିଲାବେଳେ ସରସ୍ୱତୀ ଆସି ତାହାର କଣ୍ଠରେ ବିଜେ କଲେ । ଫଳରେ ସେ ତରତର ହୋଇ ‘ମୁଁ ଶୋଇ ରହିବି’ ବୋଲି ବର ମାଗିଲା । ବ୍ରହ୍ମା ତାହାକୁ କହିଲେ, “ଏକ ବର୍ଷ ପୂର୍ଣ୍ଣ ହେବା ପୂର୍ବରୁ ଯଦି ଜାଗ୍ରତ ହେବୁ, ତେବେ ନିଶ୍ଚିତ ଭାବରେ ତୋର ମୃତ୍ୟୁ ହେବ ।” ବିଭୀଷଣଙ୍କୁ ବର ଦେଲେ—“ତୁ ବିଷ୍ଣୁଭକ୍ତ ହୋଇ ଅମର ହୁଅ ଏବଂ ଜଗତରେ ବିହାର କର ।” ଏହି ବର ଦେଇ ବ୍ରହ୍ମା ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହେଲେ ।

୧୩ । ନୀକଷାତ୍ମଜପୁଂଜ—ଅସୁରସମୂହ । ବିମାନେ—ରଥରେ । ବି-ମାନେ—ପକ୍ଷିମାନେ । ଗଗନେ—ଆକାଶରେ । ବିଧୁନ୍ତୁଦ—ରାହୁ । ବିଧୁ—ଚନ୍ଦ୍ର । ବିଶ୍ୱକେତୁ—କନ୍ଦର୍ପ । ଅଦମ୍ଭା—ଅଧୈର୍ଯ୍ୟ । ଉରୁ—ଜଙ୍ଘ । ମୟକୁମାରୀ—ମୟଦାନବର କନ୍ୟା ମନ୍ଦୋଦରୀ ।

ସେହି ତିନି ଭାଇ ବ୍ରହ୍ମାଙ୍କଠାରୁ ବର ପାଇ ପାତାଳପୁରକୁ ଗଲେ ଏବଂ ସେଠାରେ ଅସୁରସୈନ୍ୟମାନଙ୍କୁ ଏକାଠିକରି ଲଙ୍କା ଆକ୍ରମଣ କଲେ । ଫଳରେ କୁବେର ଲଙ୍କାପୁରୀ ତ୍ୟାଗ କରି ଚାଲିଗଲେ । ଗଲାବେଳେ ପକ୍ଷୀମାନେ ଆକାଶରେ ଗତି କଲା ପରି ସେ ପୁଷ୍ପକଯାନରେ ଲଙ୍କାପୁରୀର ସକଳ ସମ୍ପତ୍ତି ନେଇ ଚାଲିଗଲେ । ରାବଣ ଉକ୍ତ ପୁଷ୍ପକ ବିମାନକୁ ପାଇବା ନିମିତ୍ତ କୁବେର ସହିତ ଯୁଦ୍ଧକଲା ଏବଂ ତାହାଠାରୁ ବିମାନକୁ ବଳ ପୂର୍ବକ ନେଇଗଲା । ରାହୁ ଚନ୍ଦ୍ରକୁ ଗ୍ରାସକଲା ପରି ସେ ମଧ୍ୟ ସଂସାରରେ ନିଜର ପ୍ରବଳ ପରାକ୍ରମ ପ୍ରକାଶ କଲା । କନ୍ଦର୍ପପୀଡ଼ାରେ ଅଧୈର୍ଯ୍ୟ ହୋଇ ସେ ସ୍ୱର୍ଗର ଅପୂର୍ବ ସୁନ୍ଦରୀ ରମ୍ଭା ଅପ୍ସରାକୁ ହରଣକଲା ଏବଂ ତତ୍ପରେ ମୟଦୈତ୍ୟର କନ୍ୟା ମନ୍ଦୋଦରୀକୁ ବିବାହ କଲା ।

ବୃଷ ସଦୃଶ ସୁରଭିଆଳୀ　　ଗୋଷ୍ଠକୋଷ୍ଠିରେ କଲି ସେ କେଳି
　ପ୍ରଜାପତିଙ୍କ ସେମାନେ ହେଲେ ଅନେକ ସୁତ ଯେ
ବର୍ଣ୍ଣିବା କିସ ଜ୍ୟେଷ୍ଠକୁମାର　　ଜାତ ରଡିକି ଶୁଣି କୁମାର
　ଚୁଡ଼ି ସେ ମେଘନାଦ ଉପର ଚଢ଼ି ଅଚେତ ଯେ ।
　ବଳେ ମେଘନାଦରୁ ତାହାର ସ୍ୱନ ଯେ ।
　ବହେ ସେ ମେଘନାଦ ନାମ ପ୍ରଧାନ ଯେ ।
ବନବେଷ୍ଟିତ ସ୍ଥାନରେ ରହି　　ସିଂହ ଶାର୍ଦ୍ଦୂଳ କଳେବରେ ହୋଇ
　ବନଚରମୃଗ ପିଶିତ ଧ୍ୟାୟି ଅନ୍ୟ ନନ୍ଦନ ଯେ ॥ ୧୪ ॥

ବାମକଟରେ ହୋଇଣ ବାମ　　ବାମଦେବର ଗିରି କୁସୁମ
　ଚିରି ଉପାଟି ଧରଣେ କ୍ଷମ ହେବା କାଳରେ ଯେ
ବାହାର ଦର ବଳେ ଏ ସ୍ୱର　　ଈଶ୍ୱରଠାରୁ ସବଶ୍ରେଷ୍ଠର
　ଦେଖିଲେ ଚଉଦ୍ଦି ଗୁଣ ଶିର ସେ ବହିବାର ଯେ ।
　ବିଶେଷ ତ ଦେଖିଲେ ଈକ୍ଷଣ କର ଯେ
　ବିଳାସକୁ ବୈଚିତ୍ର୍ୟର ସ୍ୱର୍ଣ୍ଣନଗର ଯେ

---

୧୪ । ବୃଷସଦୃଶ—ବୃଷଭ ପରି । ସୁରଭି—ଗାଈ, ସୁନ୍ଦରୀ ସ୍ତ୍ରୀ । ଆଳି—ସମୂହ । ଗୋଷ୍ଠ—ଗୋଠ (ଗାଈଗୋଠ), ସମୂହ କୋଷ୍ଠି—ଘର । ପ୍ରଜାପତି—ଦକ୍ଷ ପ୍ରଜାପତି । କୁମାର—ପୁତ୍ର, କାର୍ତ୍ତିକେୟ । ମେଘନାଦ—ମୟୂର, ମେଘର ଧ୍ୱନି ବା ରବ । ବନ ବେଷ୍ଟିତ ସ୍ଥାନ—ଜଳ ବେଷ୍ଟିତ ସ୍ଥାନ, ଲଙ୍କାପୁର (ବନ = ଜଳ) । ପିଶିତ—ମାଂସ ।

ବୃଷଭ ଗାଈଗୋଠରେ ପଶି ରତିକ୍ରୀଡ଼ା କଲା ପରି ରାବଣ ଅନ୍ତଃପୁର ମଧ୍ୟରେ ସୁନ୍ଦରୀ ନାରୀମାନଙ୍କ ସହିତ କେଳିକଲା । ଦକ୍ଷପ୍ରଜାପତିଙ୍କ ଠାରୁ ଯେଉଁପରି ଅସଂଖ୍ୟ ପ୍ରାଣୀ ଜାତ ହୋଇଥିଲେ, ସେହିପରି ରାବଣରେ ବହୁ ସଂଖ୍ୟକ ପୁଅ ଜାତ ହେଲେ । ସେହି ପୁତ୍ରମାନଙ୍କ ବିଷୟ କ'ଣ ବା ବର୍ଣ୍ଣନା କରିବା ! ବଡ଼ପୁଅ ଜନ୍ମ ହେବା ମାତ୍ରେ ଯେଉଁ ଭୟଙ୍କର ଶବ୍ଦକଲା, ତାହା ଶୁଣି ମେଘଧ୍ୱନି ମନେକରି କାର୍ତ୍ତିକେୟଙ୍କ ବାହନ ମୟୂର ଏତେ ଉନ୍ମତ୍ତ ହୋଇ ନୃତ୍ୟ କଲାଯେ, କାର୍ତ୍ତିକେୟ ମୟୂର ଉପରୁ ତଳକୁ ଖସିପଡ଼ି ଅଚେତ ହୋଇଗଲେ । ତାହାର ଗର୍ଜନ ମେଘଧ୍ୱନି ଠାରୁ ଅଧିକ ହୋଇ ଥିବାରୁ ସେ ମେଘନାଦ ନାମରେ ମୁଖ୍ୟତଃ ପରିଚିତ ହେଲା । ସିଂହ ଓ ବ୍ୟାଘ୍ର ପ୍ରଭୃତି ବନ ମଧ୍ୟରେ ରହି ମୃଗମାଂସ ଭକ୍ଷଣ କଲା ପରି ରାବଣର ଅନ୍ୟ ପୁତ୍ରମାନେ ଜଳବେଷ୍ଟିତ ଲଙ୍କାପୁରରେ ରହି ବନ୍ୟ ପଶୁ ମୃଗମାନଙ୍କ ମାଂସ ଖାଇବାକୁ ବ୍ୟଗ୍ର ହୋଇ ଉଠିଲେ ।

ବଳେକ ରୌପ୍ୟ ନଗରେ ସ୍ଥିତ ଉପୁଜ ଯାଇ ଏ ଊଣା ଖିତ
ଭୋଗ ତ ବେନିଜନେ ବିଭୂତ ଆନ ପ୍ରକାର ଯେ ।। ୧୫ ।।

ବାରିବଶିଏ ତରଳତର ଅଧୀର ଥିଲ ଅଙ୍କ ମାତର
ଯାହା ପ୍ରତାପେ ହୋଇ କାତର ନସ ତରତର ଯେ
ବ୍ୟାକୁଳ ଜଡ଼ି ପାଞ୍ଚ ପାଞ୍ଚର ଆନେ୍ନ ସ୍ୱଭାବେ ଏହା ଆହାର
ବେନି ଯେନଲେ ଦ୍ରୁତଭିତର ଏହି ବିଗ୍ରହ ଯେ ।
ବାହନ ପୁଣ ଯାଇ ମୀନଙ୍କୁ ଖାଇ ଯେ
ବଡ଼ ବଂଶଜ ଭୂଜ ବନ୍ଧବା ଗୃହିଁ ଯେ ।

---

୧୫ । ବାମକରରେ—ବାମ ହସ୍ତରେ । ବାମ—ପ୍ରତିକୂଳ । ବାମଦେବ—ମହାଦେବ । ବାମ ଦେବର ଗିରି—ମହାଦେବଙ୍କ ବାସସ୍ଥଳୀ କୈଳାସ ପର୍ବତ । ଦର ଦର୍ଶେ—ଭୟହେତୁ । ପଞ୍ଚଦ୍ୱିଗୁଣ—ପାଞ୍ଚର ଦୁଇଗୁଣ, ଦଶ । ଈକ୍ଷଣ—ଆଖି । ସ୍ୱର୍ଣ୍ଣନଗର—ସ୍ୱର୍ଣ୍ଣମୟୀ ଲଙ୍କାପୁର । ବଳେକ—ଦେଖି । ରୌପ୍ୟ ନଗର—ମହାଦେବଙ୍କ ବାସସ୍ଥଳୀ କୈଳାସ ପର୍ବତ । ଭୋଗ—ଉପଭୋଗ, ସର୍ପ । ବିଭୂତ—ଐଶ୍ୱର୍ଯ୍ୟ, ଭସ୍ମ ।

ରାବଣର ବୁଦ୍ଧି ପ୍ରତିକୂଳ ହେବାରୁ ସେ ନିଜର ବାମହସ୍ତରେ ଫଳକୁ ଛିଣ୍ଡାଇଲା ପରି ଅତି ସରଳ ଭାବରେ କୈଳାସ ପର୍ବତକୁ ଉପାଡ଼ି ଧରିବାକୁ ଉଦ୍ୟତ ହେଲା । ସେତେବେଳେ ଶିବ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଲେ ଏବଂ ରାବଣ ସହିତ ନିଜକୁ ତୁଳନା ପୂର୍ବକ କହିଲେ—"ମୁଁ ଈଶ୍ୱର, ମାତ୍ର ସେ ହେଉଛି ରାବଣେଶ୍ୱର (ରାବଣ + ଈଶ୍ୱର), ମୋର ପାଞ୍ଚଗୋଟି ମୁଣ୍ଡ, ମାତ୍ର ରାବଣର ତାହାର ଦୁଇଗୁଣ ଅର୍ଥାତ୍ ଦଶଗୋଟି ମୁଣ୍ଡ ।" ସେ ପୁନଶ୍ଚ ଦେଖିଲେ—"ମୋର ପନ୍ଦର ଗୋଟି ଆଖି, ମାତ୍ର ରାବଣର କୋଡ଼ିଏ ଗୋଟି ଆଖି; ମୋର ଦଶଗୋଟି ହାତ, ମାତ୍ର ରାବଣର କୋଡ଼ିଏ ହାତ; ମୁଁ ରୌପ୍ୟ ନଗର କୈଳାସ ପର୍ବତରେ ରହୁଛି, ମାତ୍ର ସେ ସ୍ୱର୍ଣ୍ଣନଗରୀ ଲଙ୍କାପୁରରେ ରହୁଛି ।" ଏହି ସମସ୍ତ ବିଷୟରେ ରାବଣଠାରୁ ଊଣା ହୋଇଥିବାରୁ ତାହାଙ୍କ ମନରେ ଭୟ ଜାତ ହେଲା । ଶେଷରେ ଦୁଇଟି କଥାରେ ଉଭୟେ ସମାନ ଥିବା ସେ ଲକ୍ଷ୍ୟ କଲେ । ତାହା ହେଉଛି, 'ଭୋଗ' ଓ 'ବିଭୂତ' । ମାତ୍ର ଏହି ଦୁଇଟି ଶବ୍ଦ ଭିନ୍ନ ଭିନ୍ନ ଅର୍ଥରେ ଉଭୟଙ୍କୁ ବୁଝାଇଥାଏ । ରାବଣ ଭୋଗ ବା ବିଳାସ କରେ ଏବଂ ତାହାର ବିଭୂତ ବା ଐଶ୍ୱର୍ଯ୍ୟ ରହିଛି । ଶିବଙ୍କର ଭୋଗ ବା ସର୍ପ ରହିଛି ଏବଂ ସେ ବିଭୂତ ବା ଭସ୍ମ ଧାରଣ କରନ୍ତି ।

ବନ୍ଧୁ ଭାବରେ ସେ ଶାନ୍ତକାନ୍ତ    ନାମେ ସମର୍ପି ବାର୍ଦ୍ଧ୍ୟ ଯୁବତୀ
ସ୍ୱନାମ କଲେ କୋଷେ ତା ସ୍ଥିତି ରତ୍ନଙ୍କୁ ଦେଇ ଯେ ॥ ୧୬ ॥

ବଦ୍ଧ କୃପାଣ ସାଧନ କରେ    ଛେଦନ ଶଙ୍କା ଜମ୍ବୁପ୍ଲକ୍ଷରେ
ଆରମ୍ଭୁ ହୋମକର୍ମ କୁଶରେ ବନ୍ଧନ ଖ୍ୟାତ ଯେ
ବାଟୁଳି ଧରୁ କ୍ରୌଞ୍ଚ ଚମକେ    ଭୋଜନ କାଳେ ଉପୁଦ ଶାକେ
ଶୟନେ ତୂଳୀକରଣେ ଶଙ୍କେ ଶାଲ୍ମଳୀ ନଛ ଯେ ।
ବନ୍ଧୁ ଦେବପୂଜନ ପୁଷ୍କରେ ଭୟ ଯେ
ବଳେ ଉପାଡ଼ି ନେବ ହୋଏ ଉଦୟ ଯେ
ବିଭୋଗ କର ପ୍ରତାପେକର    କରଇ ହେଲେ ପ୍ରଜାଆକର
ପୃଥ୍ୱୀମଣ୍ଡଳ ରାଜାନକର ମହା ଦୁର୍ଜୟ ଯେ ॥ ୧୭ ॥

---

୧୬ । ବାରିଧିଏ—ସମୁଦ୍ରମାନେ । କାତର—ଭୟଭୀତ । କୋଷ—ଭଣ୍ଡାର ।

ପୁରାଣ ବର୍ଣ୍ଣିତ ସାତଗୋଟି ସମୁଦ୍ର (ଲବଣ, ଇକ୍ଷୁ, ସୁରା, ସର୍ପି ବା ଘୃତ, ଦଧି, ଦୁଗ୍ଧ, ଜଳ) ତରଳ ପଦାର୍ଥରେ ପୂର୍ଣ୍ଣ ହୋଇଥିବାରୁ ସ୍ୱଭାବତଃ ଚଞ୍ଚଳ ଥିଲ । ମାତ୍ର ରାବଣର ପ୍ରତାପରେ ସମୁଦ୍ର ଭୟଭୀତ ହୋଇ ପଡ଼ିବାରୁ ତାହା ଚଞ୍ଚଳତର ହୋଇ ପଡ଼ିଲା । ସାତ ସମୁଦ୍ର ମଧ୍ୟରୁ ଇକ୍ଷୁ, ଦୁଗ୍ଧ, ଦଧି, ସର୍ପି (ଘୃତ) ଓ ସୁରା ଏହି ପାଞ୍ଚଗୋଟି ସମୁଦ୍ର ଚିନ୍ତାକଲେ ଯେ, ରାବଣ ଖାଦ୍ୟ ପଦାର୍ଥ ଭାବି ସେମାନଙ୍କୁ ହୁଏତ ଖାଇଦେବ । ସେ କୋଡ଼ିଏ ଗୋଟି ହସ୍ତ ଧାରଣ କରିଥିବା ଦେଖି ଲବଣ ସାଗର ଓ ଜଳ ସାଗର ହୃଦୟ ମଧ୍ୟରେ ଚିନ୍ତାକଲେ ଯେ, ମାଛ ଖାଇବା ଆଶାରେ ରାବଣ ସେମାନଙ୍କୁ ବାହି (ଜଳ ନିଷ୍କାସନ କରି) ଶୁଖାଇ ଦେବ । ଏହିପରି ଭାବରେ ଚିନ୍ତାକରି ସାତଗୋଟି ସାଗର ଶାନ୍ତ ଓ କାନ୍ତ ନାମକ ଦୁଇ ଉତ୍ତମା ସୁନ୍ଦରୀ କନ୍ୟାକୁ ରାବଣକୁ ଅର୍ପଣ ପୂର୍ବକ ତାହା ସହିତ ବନ୍ଧୁଭାବ ରଖିଲେ । ପୁନଶ୍ଚ ତାହାକୁ ବହୁତ ରତ୍ନ ଦାନ କରି ତା'ର ଭଣ୍ଡାରକୁ ନିଜର ନାମାନୁରୂପ ରତ୍ନାକର ନାମରେ ନାମିତ କଲେ ।

୧୭ । କୃପାଣ—ଖଣ୍ଡା । ଜମ୍ବୁ—ଜମ୍ବୁଦ୍ୱୀପ, ଜାମୁକୋଳି ଗଛ । ପ୍ଲକ୍ଷ—ପ୍ଲକ୍ଷଦ୍ୱୀପ, ତେନ୍ତୁଳି ଗଛ । କୁଶ—କୁଶଦ୍ୱୀପ, କୁଶ ତୃଣ । କ୍ରୌଞ୍ଚ—କ୍ରୌଞ୍ଚଦ୍ୱୀପ, କ୍ରୌଞ୍ଚପକ୍ଷୀ । ଶାକ—ଶାକଦ୍ୱୀପ, ଶାଗ । ତୂଳୀ—ତୂଳାଶେଯ । ଶାଲ୍ମଳୀ—ଶାଲ୍ମଳୀ ଦ୍ୱୀପ, ଶିମୁଳି ଗଛ । ପୁଷ୍କର—ପୁଷ୍କର ଦ୍ୱୀପ, ପଦ୍ମପୁଷ୍କର । ବିଭୋଗକର—ଭୋଗଶୂନ୍ୟ କରାଇବା । ପ୍ରତାପେକର—ବାହୁ ବଳରେ । ପ୍ରଜାଆକର—ପ୍ରଜାସମୂହ ।

ବନ୍ଦୀ ବଳିର ଫେଡ଼ିବେ ପାଇଁ      ଭରସା କୃତ ରସାତଳର
କୋଟିଏ ସିଂହ ବଳ ବାଳିର ଧରିଣେ ଇଚ୍ଛି ଯେ
ବିକଳ ଭାବ ନୋହିଲା ଲବ      ପାଇ ନିବନ୍ତି ନେ ପରାଭବ
କେମନ୍ତ ମଲ୍ଲ କୋବିଦେ ଚିତ୍ର ତୁଲକ ଅଛୁ ଯେ ।
ବାହୁସହସ୍ରଭୃତେ ହୋଇଲା ବାଧା ଯେ
ବନ୍ଧିବାରୁ ପାଳଟି ନର୍ମଦା ନଦୀ ଯେ
ବନ୍ଧନେ ପଡ ଖଣ୍ଡ୍ ଯେ ନଛାଡ଼ି      ଅନଳ ଯୋଗେ ନଗଲା ପୋଡ଼ି
ଜଳେ ନ ବୁଡ଼ି ସଶସ୍ତ୍ର ଗୁଡ଼ି ବରେ ପ୍ରମୋଦ ଯେ ॥ ୧୮ ॥

---

ରାବଣ ଅସ୍ତ୍ରଚାଳନା କରିବା ନିମିତ୍ତ ହସ୍ତରେ ଖଣ୍ଡା ଧାରଣ କରିବାରୁ ଜମ୍ବୁ ଓ ପ୍ଲକ୍ଷଦ୍ୱୀପ ଭସ୍ମକଲେଯେ, ସେ ସେମାନଙ୍କୁ ଜାମୁ କୋଳିଗଛ ଓ ତେନ୍ତୁଳି ଗଛ ମନେକରି କାଳେ ଛେଦନ କରିଦେବ । ସେ ହୋମ କର୍ମ ଆରମ୍ଭ କରିବା ମାତ୍ରେ କୁଶଦ୍ୱୀପ ଭସ୍ମକଲା—ହୁଏତ ରାବଣ ତାହାକୁ ଯଜ୍ଞକାର୍ଯ୍ୟରେ ବ୍ୟବହୃତ କୁଶକ୍ଷେତ୍ର ଭାବି କାଟି ପକାଇବ । ସେ ବାଟୁଳି ଧରିବାରୁ କ୍ରୌଞ୍ଚଦ୍ୱୀପ ଭସ୍ମକଲା, ହୁଏତ ରାବଣ କ୍ରୌଞ୍ଚପକ୍ଷୀ ଭାବି ତାକୁ ମାରିଦେବ । ସେ ଭୋଜନ କରିବା ସମୟରେ ଶାକଦ୍ୱୀପ ଭସ୍ମକଲା, ଯେତେ ଅବା ରାବଣ ଶାଗ ଭାବି ତାହାକୁ ଭକ୍ଷଣ କରିବ । ରାବଣ ଶୋଇଲା ବେଳେ "ଶିମୁଳି ଗଛ ଭ୍ରମରେ ଶଯ୍ୟା କରିବା ନିମିତ୍ତ ମଡ଼େ ହାଣିଦେବ" ଭାବି ପ୍ରଭଞ୍ଜନ ଶାଲ୍ମଳୀ ଦ୍ୱୀପ ଭସ୍ମ କରିବାକୁ ଲଗିଲା । ସେ ପ୍ରଭାତେ ଦେବପୂଜା କରିବା ସମୟରେ ପଦ୍ମଫୁଲ ଭ୍ରମରେ କାଳେ ଉପାଡ଼ି ନେବ ଭାବି ପୁଷ୍କର ଦ୍ୱୀପ ଭସ୍ମକଲା । ପୃଥିବୀର ସମସ୍ତ ରାଜାଙ୍କୁ ରାବଣ ବାହୁବଳରେ ନିଜର ଦାସାନୁଦାସ କରିଦେଇ ସେମାନଙ୍କୁ ଭୋଗଶୂନ୍ୟ କରାଇ ଦେଲା ଏବଂ ଅତିଶୟ ଦୁର୍ଜୟ (ଦୁର୍ଦ୍ଦାନ୍ତ) ହୋଇ ଉଠିଲା ।

୧୮ । ବଳି—ବଳିରାଜା । ବାଳି—ସୁଗ୍ରୀବର ବଡ଼ ଭାଇ । ଲବ—ଟିକିଏ । ପରାଭବ—ଅପମାନ । କୋବିଦେ—ପଣ୍ଡିତମାନେ । ବାହୁ ସହସ୍ରଭୃତ—ସହସ୍ରାର୍ଜୁନ । ପାଳଟି—ବିପରୀତ ଦିଗରେ ।

ରାବଣ ପାତାଳପୁରକୁ ଯାଇ ସେଠାରେ ବାମନାବତାରଙ୍କ ଦ୍ୱାରା ବନ୍ଦୀ ହୋଇ ରହିଥିବା ବଳିରାଜାକୁ ମୁକ୍ତ କରିବା ନିମିତ୍ତ ଚେଷ୍ଟା କଲା । ତତ୍‌ପରେ କୋଟିଏ ସିଂହର ବଳ ଧାରଣ କରିଥିବା ବାଳୀକୁ ଧରିବାକୁ ଇଚ୍ଛା କଲା । ମାତ୍ର ତାଠାରୁ ବହୁତ ଅପମାନ

ବେଦମତୀରେ ମତ୍ତ ବଳାଇ        ଦେଲା ସେ କନ୍ୟା ତନୁ ଜଳାଇ
ମୋ ହେତୁ ମୃତ୍ୟୁ ଏ ଶାପ ପାଇ ତହୁଁ ଚପଳେ ହେ
ବୋଲି ମର୍କଟ ନନ୍ଦି ନନ୍ଦୀରେ        ଆନନ୍ଦ ହରି ତଳ ପ୍ରହାରେ
ବୋଲେ ସେ ହେଉ ପ୍ରାଭବ ତୋରେ ବାନରେ ନରେ ଯେ ।
ବଧି ଅନରଣ୍ୟଙ୍କୁ ଅଯୋଧ୍ୟାପୁରେ ଯେ
ବରାହବରେ ଅତି ମାୟାଯୁଦ୍ଧରେ ଯେ ।
ବଂଶେ ମୋ ନାଶ ଯିବୁ ଅବଶ୍ୟ        ନର ଅବଜ୍ଞା କଲୁ ରାକ୍ଷସ
କହିଲା ତହୁଁ ସେହି ମହୀଶ ହତକାଳରେ ଯେ ॥ ୧୯ ॥

---

ଯାଇଲା । ଏହା ସତ୍ତ୍ୱେ ସେ ତଳେ ହେଲେ କଷ୍ଟ ଅନୁଭବ କଲା ନାହିଁ । ହେ ପଣ୍ଡିତ-ମାନେ ! ଏଥିରୁ ବିଚାର କର ଯେ, ରାବଣ ଉପର ଜଣେ ପରାକ୍ରମଶାଳୀ ମଲ୍ଲବୀର । ସହସ୍ରାର୍ଜୁନଦ୍ୱାରା ନର୍ମଦାନଦୀର ପ୍ରବାହ ବିପରୀତ ଦିଗକୁ ଗତିକରିବାରୁ ରାବଣ ତାହା ସହିତ ବିବାଦ ଆରମ୍ଭ କଲା । ସହସ୍ରାର୍ଜୁନ ତାହାକୁ ବାନ୍ଧିଲା, ଖଣ୍ଡାରେହାଣିଲା, ଅଗ୍ନିରେ ପୋଡ଼ିଲା ଏବଂ ଜଳରେ ବୁଡ଼ାଇଲା । ମାତ୍ର କୌଣସିଥିରେ ମଧ୍ୟ ରାବଣର ମୃତ୍ୟୁ ହେଲାନାହିଁ । ତେଣୁ "ବ୍ରହ୍ମାଙ୍କଠାରୁ ପ୍ରକୃତରେ ମୁଁ ଅମରବର ପାଇଛି ଓ ତହିଁରେ ଆଉ ସନ୍ଦେହ ନାହିଁ" ଭାବି ରାବଣ ମନେମନେ ଆନନ୍ଦିତ ହେଲା ।

୧୯ । ନନ୍ଦୀ—ମହାଦେବଙ୍କ ଦ୍ୱାରପାଳ । ତଳ ପ୍ରହାରେ—ଚାପୁଡ଼ା ମାରି । ପ୍ରାଭବ—ପରାଭବ = ଅପମାନ । ଅନରଣ୍ୟ—ଅଯୋଧ୍ୟାର ଜଣେ ପୁରାତନ ରାଜା । ବରାହବରେ ବଡ଼ଯୁଦ୍ଧରେ (ବର + ଆହବରେ) ।

ରାବଣ 'ବେଦମତୀ' ନାମ୍ନୀ କନ୍ୟାପ୍ରତି ମଦମତ୍ତ ବଳାଇବାରୁ ସେହି କନ୍ୟା ଅଗ୍ନିରେ ଆତ୍ମାହୁତି ଦେଲା ଏବଂ "ମୋ ଯୋଗୁ ତୋର ମୃତ୍ୟୁ ହେବ" ବୋଲି ତାହାକୁ ଅଭିଶାପ ଦେଲା । ଏହି ଅଭିଶାପ ପାଇ ରାବଣ ଖୁବ୍ ଶୀଘ୍ର କୈଳାସକୁ ଗଲା । ଶିବଙ୍କ ଦ୍ୱାରପାଳ ନନ୍ଦୀକୁ 'ମର୍କଟ' ବୋଲି ନିନ୍ଦାକରି ଏକ ଚାପୁଡ଼ା ମାରିଲା ଓ ତାହାର ମନରେ ବହୁତ ଦୁଃଖ ଦେଲା । ସେତେବେଳେ ନନ୍ଦୀ ରାବଣକୁ କହିଲା, "ତୁ ମତେ ବାନର ବୋଲି ଗାଳିଦେଲୁ, ତେଣୁ ବାନର ଓ ନରମାନଙ୍କଦ୍ୱାରା ତୋର ଅପମାନ ହେଉ ।" ତତ୍ପରେ ରାବଣ ଅଯୋଧ୍ୟାପୁରକୁ ଯାଇ ସେଠାକାର ଅନରଣ୍ୟ ରାଜା ସହିତ ଭୟଙ୍କର ମାୟାଯୁଦ୍ଧ ରଚନା ପୂର୍ବକ ତାହାଙ୍କୁ ବଧକଲା । ସେହି ରାଜା ମୃତ୍ୟୁ ସମୟରେ ରାବଣକୁ କହିଲେ, "ରେ ରାକ୍ଷସ ! ତୁ ମତେ ମନୁଷ୍ୟ ବୋଲି ଅବଜ୍ଞା କଲୁ, ତେଣୁ ମୋର ବଂଶରେ ଭବିଷ୍ୟତରେ ଏକ ସନ୍ତାନ ଦ୍ୱାରା ମୃତ୍ୟୁ ବରଣ କରିବୁ ।

ବିବୁଧାଳୟସ୍ଥ ଆଶିର ଗ୍ରାମ ପରି ସୁରଭି ଲୁଣ୍ଠନେ କ୍ଷମ
ସୁମନବ୍ରଜେ ସେ ଦଣ୍ଡକ୍ରମ କ୍ରମଶେ ଦେଇ ଯେ
ବାନ୍ଧିଲା ଅଧିକାରୀ କି ସୁତ ଯାହା ଆଜ୍ଞାରେ ସେ 'ଇନ୍ଦ୍ରଜିତ'
ଖ୍ୟାତି ପାଇଲା ଜଗତତାତ ବିଧିରେ ତହିଁ ଯେ ।
ବଳିସଦ୍ମ ପକ୍ୱଣ ପ୍ରାୟକ କଲା ଯେ
ବାଜି ଝମ୍ପକ ତାଙ୍କୁ ଚମକ ଦେଲା ଯେ
ବଞ୍ଚିଲେ ଲୁଚି ସେ ମଦଭର ନାଗେଶବର ଗୋପ୍ୟସ୍ଥାନର
ଏମଣି ଅଦ୍ଭୁତ ଦେଖାଇବାର ସମ୍ଭବ ହେଲା ଯେ ॥ ୨୦ ॥

ବଇଜୟନ୍ତୀ ଯାହା ଜଗତ୍ତ ବଇଜୟନ୍ତ ଚଞ୍ଚଳେ ଖ୍ୟାନ୍ତ
ମୋତେ ଏ ବାନ୍ଧି ନେବାକୁ ଗଣ୍ଡକରେ ନଭରେ ଯେ
ବିକର୍ତ୍ତନର ରଥ ହାବୋଡ଼ି ଭଗନେ ମଧ୍ୟ ଗଗନ ଛାଡ଼ି
ବେନ ଅସୂନ ଚକନେ ଜଡ଼ ଚତ୍ତ ନର୍ଭର ଯେ
ବୃଥା ଏ କଥା ନୋହେ ବୁଝି ବିଚାର ଯେ
ବୋଲାଇଛି ସେ ମେଘଦଣ୍ଡ ପାଟେରୀ ଯେ ।

---

୨୦ । ବିବୁଧାଳୟ—ଦେବତାମାନଙ୍କ ଗୃହ=ସ୍ୱର୍ଗ । ଆଶିର ଗ୍ରାମ—ଗରୁଡ଼ ପକ୍ଷୀ । ସୁରଭି କାମଧେନୁ । ସୁମନବ୍ରଜ—ଦେବତାସମୂହ ଓ ଗରୁଡ଼ସମୂହ । ଦଣ୍ଡ—ଅତ୍ୟାଚାର । ଅଧିକାରୀ—ପ୍ରଭୁ, ଇନ୍ଦ୍ର । ସୁତ—ପୁଅ । ଜଗତତାତ—ବ୍ରହ୍ମା । ବଳିସଦ୍ମ—ପାତାଳପୁର । ପକ୍ୱଣ—ଶବର ପଲ୍ଲୀ । ଝମ୍ପକ—ବାଦ୍ୟବିଶେଷ । ମଦଭର—ଅହଙ୍କାରୀ । ନାଗେଶବର—ନାଗଶ୍ରେଷ୍ଠ ।

ଦେବତାମାନଙ୍କ ବାସଭୂମି ସ୍ୱର୍ଗପୁରକୁ ରାବଣ ଗରୁଡ଼ଗ୍ରାମ ପରି ମନେକର କାମଧେନୁକୁ ବଳପୂର୍ବକ ହରଣକଲା ଏବଂ ଅଧିକରୁ ଅଧିକତର ସେମାନଙ୍କୁ ଦଣ୍ଡଦେଲା । ତାହାର ପୁତ୍ର ମେଘନାଦ ପିତାର ଆଦେଶରେ ଅମରାଧିପ ଇନ୍ଦ୍ରଙ୍କୁ ବନ୍ଦୀକଲା ଏବଂ ବିଧିର ବିଧାନ ଅନୁଯାୟୀ 'ଇନ୍ଦ୍ରଜିତ' ପଦବୀ ପ୍ରାପ୍ତହେଲା । ରାବଣ ପାତାଳପୁରକୁ ଏକ ଶବରପଲ୍ଲୀ ତୁଲ୍ୟ ବିଧ୍ୱସ୍ତ କରାଇ ଦେଲା । ତାହାର ଦିଗ୍ବିଜୟବାଦ୍ୟରେ ଗର୍ବୀ ଶ୍ରେଷ୍ଠ ନାଗଗଣ ଗୋପନୀୟ ସ୍ଥାନରେ ଲୁଚି ଜୀବନ ରକ୍ଷା କଲେ । ମାତ୍ର ସେମାନଙ୍କ ପକ୍ଷରେ ଏହା ମଣି ଅଦ୍ଭୁତର କାର୍ଯ୍ୟକଲା ।

ବଇଜୟନ୍ତୀପୂର ଦୁର୍ଗମ ଦୁର୍ଗ ଯହିଁ ପରିଖା ସାଗର ଆଗ
ଏପରି ହୋଇ ପାତାଳ ସ୍ୱର୍ଗ ସେ ଧିକ୍କାର କରେ ଯେ ॥ ୨୧ ॥

ବଳ ଏକରେ ସେ ତ ରୁଚିର ବହୁତ ବଳୀଛନ୍ତି ଏଥିର
ସେ ଗୁରୁ ଶେଷରଙ୍ଗେ ଏ ଚିର, ଅଶେଷ ରଙ୍ଗେ ଯେ

ବଢ଼ଇ ସୁନାସୀରେକ ତହିଁ ଏ କେତେ ସୁନାସୀରରେ ଶୋହି
ଏପରି ହୋଇ ଶବରଥହିଁ କେବଳ ବର୍ଗେ ଯେ ।

ବଡ଼ ବଡ଼ ଦାନବ ପୂର୍ବରେ ଥିଲେ ଯେ
ବଢ଼ାଇକ ଏ ରୂପେ କରି ନଥିଲେ ଯେ,

---

୨୧ । ବଇଜୟନ୍ତୀ—(ବୈଜୟନ୍ତୀ) ପତାକା । କଗଣ୍ଡ—ଅଟ୍ଟାଳିକା । ବଇଜୟନ୍ତୀ—(ବୈଜୟନ୍ତ) ଇନ୍ଦ୍ରଙ୍କ ପ୍ରାସାଦ । ବିକର୍ତ୍ତନ—ସୂର୍ଯ୍ୟ । ଅୟନ—ମାର୍ଗ । ପୂର—ସମୂହ । ପରିଖା—ଗଡ଼ଖାଇ ।

ରାବଣର ପ୍ରାସାଦ ଉପରେ ଏତେ ଉଚ୍ଚରେ ପତାକା ଉଡ଼ୁଥିଲା ଯେ, ତାହାକୁ ଦେଖି ଇନ୍ଦ୍ରଙ୍କ ପ୍ରସାଦ ମନେକଲା—"କଣ ମତେ ବାନ୍ଧିନେବାକୁ ଏହି ପତାକା ଆକାଶରେ ଗତି କରୁଛି କି ?" ସୂର୍ଯ୍ୟ ଆକାଶରେ ଗତିକଲା ବେଳେ ରାବଣର ଗୃହର ପତାକା ଅତି ଉଚ୍ଚରେ ଉଡ଼ୁଥିବାରୁ "ମୋର ରଥରେ ବାଜି କାଳେ ଭାଙ୍ଗିଯିବ" ବୋଲି ଭୟଭୀତ ହେଲେ । ତେଣୁ ସେ ସବୁବେଳେ ମଧ୍ୟଆକାଶରେ ନଯାଇ ବୋଧହୁଏ ଉତ୍ତରାୟଣ ଓ ଦକ୍ଷିଣାୟନ ଗତିକୁ ଆଶ୍ରୟ କଲେ । (ହେ ପଣ୍ଡିତମାନେ ! ) ଚନ୍ଦ୍ରାକର ଜାଣ ଯେ, ଏକଥା ମିଥ୍ୟା ନୁହେ । କାରଣ, ରାବଣର ନଗର ଚତୁର୍ଦ୍ଦିଗରେ ଥିବା ପ୍ରାଚୀରର ନାମ ମେଘଦଣ୍ଡ ପାଚେରି । ଏହା ମେଘକୁ ମଧ୍ୟ ଆକାଶରେ ଗତିକଲା ବେଳେ ଦଣ୍ଡ (ବାଧା) ଦିଏ । (ସୁତରାଂ, ପ୍ରାସାଦର ସର୍ବୋଚ୍ଚ ସ୍ଥାନରେ ଉଡ଼ୁଥିବା ପତାକା ସୂର୍ଯ୍ୟଙ୍କୁ ବାଧା ନଦେବ ବା କାହିଁକି ?) । ଲଙ୍କାଦୁର୍ଗର ପରିଖା (ଗଡ଼ଖାଇ) ସାଗର ହୋଇଥିବା ଯୋଗୁ ତାହା ଶତ୍ରୁମାନଙ୍କ ପାଇଁ ଅତ୍ୟନ୍ତ ଦୁର୍ଗମ ଥିଲା । ତେଣୁ ତାହା ଶ୍ରେଷ୍ଠତାରେ ପାତାଳ ଓ ସ୍ୱର୍ଗକୁ ଧିକ୍କାର କରୁଥିଲା ।

ରଚିତ ବୀରବର ଉପେନ୍ଦ୍ର ଭଞ୍ଜ ସ୍ୱଚ୍ଛନ୍ଦେ ବନିତ ଗ୍ରନ୍ଥ
ଚିତ୍ତ ନିଷ୍ଠିକି ନୀଳାଦ୍ରିଚନ୍ଦ୍ର ଧ୍ୟାନ ସଫଳକି ଯେ ।। ୨୨ ।।

———

୨୨ । ବଳି—ବଳିରାଜା । ଏକରେ—ଜଣକରେ । ରୁଚିର—ସୁନ୍ଦର । ବଳୀ—ବଳବାନ୍ ବ୍ୟକ୍ତି । ଶେଷରଙ୍ଗେ - ଶେଷଦେବଙ୍କ ବିଳାସରେ । ଅଶେଷରଙ୍ଗେ—ବହୁତ ବିଳାସରେ । ସୁନାସୀରେକ—ଗୋଟିଏ ମାତ୍ର ସୁନାସୀର (ଇନ୍ଦ୍ର) । ସୁନାସୀର—ଶ୍ରେଷ୍ଠଯୋଦ୍ଧା । ଚିତ୍ରରଥ—ଚିତ୍ରରଥ ନାମକ ସ୍ୱର୍ଗର ଗନ୍ଧର୍ବ, ଚିତ୍ରବିଚିତ୍ର ହୋଇଥିବା ରଥ । ଦାନବ—ରାକ୍ଷସ । ବିରଚି—ରଚନା କରି । ନୀଳାଦ୍ରିଚନ୍ଦ୍ର—ଜଗନ୍ନାଥ ।

(ରାବଣର ଲଙ୍କାଗଡ଼ ପାତାଳ ଓ ସ୍ୱର୍ଗଠାରୁ କାହିଁକି ଶ୍ରେଷ୍ଠତର କବି ଏଠାରେ ତାହା ପ୍ରକାଶ କରୁଛନ୍ତି)

ପାତାଳରେ ଜଣେ ମାତ୍ର 'ବଳି' (ବଳିରାଜା) ରହିଛନ୍ତି । ମାତ୍ର ଲଙ୍କାଗଡ଼ରେ ବହୁତ 'ବଳୀ' (ବଳବାନ୍ ଯୋଦ୍ଧା) ରହିଛନ୍ତି । ପାତାଳ 'ଶେଷ' ଦେବଙ୍କର ତେଜରେ ଶୋଭାପାଏ; କିନ୍ତୁ ଲଙ୍କାପୁର 'ଅଶେଷ' ରଙ୍ଗରସର ବିଳାସରେ ଶୋଭାପାଏ । ସ୍ୱର୍ଗପୁରଠାରୁ ଲଙ୍କାପୁରୀ ଶ୍ରେଷ୍ଠତର ହେବାର କାରଣ ହେଉଛି—ସେଠାରେ ଜଣେ ମାତ୍ର 'ଚିତ୍ରରଥ' (ଚିତ୍ରରଥ ନାମକ ଗନ୍ଧର୍ବ) ରହିଛନ୍ତି । ମାତ୍ର ଲଙ୍କାପୁରୀରେ ବହୁତ 'ଚିତ୍ରରଥ' (ଚିତ୍ରବିଚିତ୍ର ହୋଇଥିବା ରଥ) ରହିଛି । ପୂର୍ବରୁ ବହୁତ ରାକ୍ଷସ ପୃଥିବୀରେ ଜନ୍ମ ହୋଇଥିଲେ ମଧ୍ୟ ରାବଣ ପରି ଗର୍ବ କେହି ହେଲେ କରିନଥିଲେ । ବୀରବର ଉପେନ୍ଦ୍ରଭଞ୍ଜ ସ୍ଥିର ଚିତ୍ତରେ ଜଗନ୍ନାଥଙ୍କୁ ଧ୍ୟାନ ପୂର୍ବକ ସେଥିରେ ସଫଳତା ସ୍ୱରୂପ ଏହି ବନିତ ଗ୍ରନ୍ଥକୁ ସ୍ୱଚ୍ଛନ୍ଦ ଭାବରେ (ଅବଳୀଳାକ୍ରମେ) ରଚନା କଲେ ।

———

# ଦ୍ୱିତୀୟ ଛାନ୍ଦ

ରାଗ—ମଙ୍ଗଳଗୁଜ୍ଜରୀ

ବିବୁଧ ! ଦୂଷଣବିବର୍ଜିତ ଗୀତେ ରସ
ବିଷ୍ଣୁ ଚରିତ ଭଣିତ କରିବ ହରଷ ଯେ । ୧ ।
ବାମଦେବ ଦେବରାଜ ଗୁରୁ ସଙ୍ଗତରେ
ବିମନେ ସୁମନେ ଗଲେ କ୍ଷୀରସିନ୍ଧୁ ତୀରେ ଯେ । ୨ ।
ବ୍ରହ୍ମାଣ୍ଡ କ୍ଷୋଭିତେ ଭୀତେ ବ୍ରହ୍ମାପ୍ରମୁଖରେ
ବିଶ୍ୱମ୍ଭର ଭରସାରେ ସ୍ତୁତି କଲେ ଖରେ ସେ ।୩ ।
ବହିତ ଲୀଳା ରୋହିତ ରୋହିତ ମୂରତି
ବେଗେ ଦରଦୈତ୍ୟ ଦରଦାନେ ହେଲ ରତି ହେ । ୪ ।

---

୧ । ବିବୁଧ—ପଣ୍ଡିତ । ଦୂଷଣବିବର୍ଜିତ—ଦୋଷଶୂନ୍ୟ ।

ହେ ପଣ୍ଡିତମାନେ ! ମୋର ଏହି ଦୋଷଶୂନ୍ୟ ଛାନ୍ଦ ପ୍ରତି ଅନୁରକ୍ତ ହୁଅ । ଏହା ବିଷ୍ଣୁ ଚରିତ ହୋଇଥିବାରୁ ଆପଣମାନଙ୍କୁ ଶୀଘ୍ର ଆନନ୍ଦ ପ୍ରଦାନ କରିବ ।

୨ । ବାମଦେବ—ଶିବ । ଦେବରାଜ—ଇନ୍ଦ୍ର । ଗୁରୁ—ବୃହସ୍ପତି । ବିମନେ—ଦୁଃଖିତ ମନରେ । ସୁମନେ—ଦେବତାମାନେ ।

ଦେବତାମାନେ ଶିବ, ଇନ୍ଦ୍ର ଓ ବୃହସ୍ପତିଙ୍କ ସହିତ ଦୁଃଖିତ ମନରେ ଯାଇ କ୍ଷୀର-ସମୁଦ୍ର ତଟରେ ଉପସ୍ଥିତ ହେଲେ ।

୩ । କ୍ଷୋଭିତେ—ପୀଡ଼ିତ ହେବାରୁ । ବିଶ୍ୱମ୍ଭର—ବିଷ୍ଣୁ । ପ୍ରମୁଖ—ସମ୍ମୁଖ ।

ରାବଣର ଉପଦ୍ରବରେ ବ୍ରହ୍ମାଣ୍ଡ ଅସ୍ଥିର ହୋଇ ପଡ଼ିବାରୁ ଦେବଗଣ ଭୟଭୀତ ହୋଇଯାଇଥିଲେ । ସମସ୍ତେ ବ୍ରହ୍ମାଙ୍କୁ ଆଗୁଆ କରି ରଖି ବିଷ୍ଣୁଙ୍କଠାରୁ ଶୀଘ୍ର ସାହାଯ୍ୟ ପ୍ରାପ୍ତି ଆଶାରେ ସ୍ତୁତିକଲେ ।

୪ । ବହିତ—ଧାରଣ କରିଥିବା । ରୋହିତ—ଲାଲବର୍ଣ୍ଣ । ରୋହିତ—ମତ୍ସ୍ୟ । ଦରଦୈତ୍ୟ—ଶଙ୍ଖାସୁର । ଦରଦାନେ—ଭୟଖଣ୍ଡନ କରିବାରେ ।

ଦେବଗଣ ସ୍ତୁତି କରୁଛନ୍ତି—"ହେ ବିଷ୍ଣୁ ! ଆପଣ ଅତୀତରେ ଲାଲବର୍ଣ୍ଣର ମତ୍ସ୍ୟା-ବତାର ଧାରଣ ପୂର୍ବକ ଶଙ୍ଖାସୁରର ଭୟରୁ ଦେବତାମାନଙ୍କୁ ତତ୍‌କ୍ଷଣାତ୍ ରକ୍ଷା କରିଥିଲେ ।

ବହି ଅମନ୍ଦ ମନ୍ଦର କୂର୍ମ ନମୋ ନମ
ବାରିଧି ଅମୃତ ମନ୍ଥୁ ଅମୃତ ଜନମ ଯେ । ୫ ।

ବିପକ୍ଷେ ଦେବାରି ବାରି ବରଷିଲ ସୁଧା
ବିଶ୍ୱ ମୋହନ୍ତ ମୋହିନୀ ରୂପରେ ବିଶୁଦ୍ଧା ଯେ । ୬ ।

ବରାହବର ବରାହବର ସମସ୍ତିତ
ବଲ୍ଲଭ ମହୀର ହିରଣ୍ୟାକ୍ଷକୁ ଖଣ୍ଡିତ ଯେ । ୭ ।

ବପୁବନ୍ତ ହରି ହରି ପ୍ରହ୍ଲାଦ ପୁଣ୍ୟକୁ
ବିଦାରିଲ ଦନ୍ତୀ ପରି କରି ହିରଣ୍ୟକୁ ଯେ । ୮ ।

---

୫ । ଅମନ୍ଦ ମନ୍ଦର—ଅତି ବିଶାଳ ମନ୍ଦର ପର୍ବତକୁ । କୂର୍ମ—ବିଷ୍ଣୁଙ୍କର କଚ୍ଛପ ଅବତାର ।

ହେ ଭଗବାନ୍ ! ଦେବଗଣ କ୍ଷୀରସାଗର ମନ୍ଥନ କଲାବେଳେ ଆପଣ କୂର୍ମ ଅବତାରରେ ବିଶାଳକାୟ ମନ୍ଦର ପର୍ବତକୁ ନିଜର ପିଠି ଉପରେ ଧାରଣ କରିଥିଲେ । ସେତେବେଳେ କ୍ଷୀରସମୁଦ୍ରରୁ ଅମୃତ ଜାତ ହୋଇଥିଲା । ଆମ୍ଭେମାନେ ଆପଣଙ୍କର ସେହି କୂର୍ମ ରୂପକୁ ଭକ୍ତିପୂର୍ଣ୍ଣ ଚିତ୍ତରେ ନମସ୍କାର ଜଣାଉଛୁ ।

୬ । ବିପକ୍ଷେ—ବିରୋଧରେ । ଦେବାରି—ଅସୁର । ବାରି—ବାରଣ କରି । ସୁଧା—ଅମୃତ । ବିଶୁଦ୍ଧା—ପବିତ୍ରମୟୀ ।

ଆପଣ ପବିତ୍ରମୟୀ ବିଶ୍ୱଚିତ୍ତହରଣକାରିଣୀ ମୋହିନୀ କନ୍ୟା ରୂପ ଧାରଣ ପୂର୍ବକ ଅସୁରମାନଙ୍କୁ ଦୂରରେ ରଖି ଆମ୍ଭମାନଙ୍କୁ ଅମୃତ ପରିବେଷଣ କରିଥିଲେ ।

୭ । ବରାହବର—ଶ୍ରେଷ୍ଠ ବରାହ, (ବିଷ୍ଣୁଙ୍କ ବରାହ ଅବତାର) । ବରାହବର—ଭୟଙ୍କର ଯୁଦ୍ଧରେ (ବର + ଆହବ) । ବଲ୍ଲଭ ମହୀର—ପୃଥିବୀ ପତି (ରାଜା) ।

ଆପଣ ବରାହ ଅବତାରରେ ପୃଥିବୀରେ ରାଜତ୍ୱ କରୁଥିବା ହିରଣ୍ୟାକ୍ଷକୁ ଘୋର ଯୁଦ୍ଧରେ ବଧ କରିଥିଲେ ।

୮ । ବପୁବନ୍ତ ହରି—ନୃସିଂହ ଅବତାର । ଦନ୍ତୀ—ହାତୀ ।

ହେ ହରି ! ପ୍ରହ୍ଲାଦର ପୁଣ୍ୟ ହେତୁ ଆପଣ ନରସିଂହ ଅବତାର ଧାରଣ ପୂର୍ବକ ସିଂହ ହାତୀକୁ ବିଦାରଣ କଲା ପରି ହିରଣ୍ୟକଶିପୁକୁ ବିଦାରଣ କରିଦେଲେ ।

ବାମନ ମନମୋହନ ହୋଇ ଭୂଦାନରେ
ବଳିଷ୍ଠ ବଳିକ ଗୃପି ଅଧୋଭୁବନରେ ଯେ । ୯ ।
ବିଭୁ ଭୃଗୁବଂଶପର ପରଶୁଧାରୀ
ବାହୁଜ ବାହୁସହସ୍ର ଦାରଣ କାରଣ ହେ । ୧୦ ।
ବଂଶକର କରଣୀକି ନାହିଁ ସର ରକ୍ଷ
ବନତ ଉନ୍ନତ ସ୍ଥାନେ ଆମ୍ଭେ ପ୍ରଭୁ ରକ୍ଷ ହେ । ୧୧ ।
ବୁଧ ବିବୁଧଙ୍କ ସ୍ତୁତି ଘେନି କମ୍ବୁଧର
ବଶୀଭୂତ ହେଲେ ବସି ଗରୁଡ଼ କନ୍ଧର ଯେ । ୧୨ ।
ବୋଇଲେ ପ୍ରବର ବର ଦିଅ କାହିଁ ପାଇଁ
ବେଗରେ ତ୍ରିପୁର ଭାର ଦୈତ୍ୟେ ଜାଣନାହିଁ ହେ । ୧୩ ।

---

୯ । ବାମନ—ବାମନ ଅବତାର । ମନମୋହନ—ମନୋହର । ଭୂଦାନ—ଭୂମିଦାନ । ଅଧୋଭୁବନ—ପାତାଳପୁର ।

ଆପଣ ମନୋହର ବାମନ ରୂପ ଧାରଣ କରି ବଳିଷ୍ଠ ବଳିରାଜାଠାରୁ ଭୂମି ଦାନ ଗ୍ରହଣ କଲାବେଳେ ତାହାକୁ ପାତାଳକୁ ଗୃପି ଦେଇଥିଲେ ।

୧୦ । ଭୃଗୁବଂଶପର—ଭୃଗୁବଂଶର ଶ୍ରେଷ୍ଠ । ବାହୁଜ—କ୍ଷତ୍ରିୟ । ବାହୁସହସ୍ର—ସହସ୍ରାର୍ଜୁନ । ଦାରଣ—ବଧ ।

ହେ ପ୍ରଭୁ ! ଆପଣ ଭୃଗୁବଂଶର ଶ୍ରେଷ୍ଠ ସନ୍ତାନ ପରଶୁରାମ ରୂପରେ ଅବତୀର୍ଣ୍ଣ ହୋଇ ହସ୍ତରେ ପରଶୁ ଧାରଣ ପୂର୍ବକ କ୍ଷତ୍ରିୟ ସହସ୍ରାର୍ଜୁନକୁ ବଧ କରିଥିଲେ ।

୧୧ । ବଂଶକର—ରାବଣ । କରଣୀ—ପ୍ରତାପ । ରକ୍ଷ—ରାକ୍ଷସ । ଉନ୍ନତସ୍ଥାନେ—ଦୁଃଖିତ ଅବସ୍ଥାରେ । ରକ୍ଷ—ରକ୍ଷାକର ।

ରାବଣ ପରି ପ୍ରତାପଶାଳୀ ଅସୁର ଆଉ ପୃଥିବୀରେ ନାହାନ୍ତି । ବର୍ତ୍ତମାନ ଆମ୍ଭେମାନେ ଦୁଃଖିତ ଅବସ୍ଥାରେ ରହି ଆପଣଙ୍କୁ ବିନୀତ ଭାବରେ ସ୍ତୁତି କରୁଛୁ, ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

୧୨ । ବୁଧ—ବ୍ରହ୍ମା । ବିବୁଧ—ଦେବତା । କମ୍ବୁଧର—ଶଙ୍ଖ ଧାରୀ ବିଷ୍ଣୁ ।

ବ୍ରହ୍ମା ଦେବଗଣଙ୍କ ସ୍ତୁତି ଶୁଣି ବିଷ୍ଣୁ ସନ୍ତୁଷ୍ଟ ହେଲେ ଏବଂ ଗରୁଡପୃଷ୍ଠରେ ବସି ସେମାନଙ୍କ ସମକ୍ଷରେ ଉପସ୍ଥିତ ହେଲେ ।

୧୩ । ପ୍ରବରବର—ଶ୍ରେଷ୍ଠବର । ତ୍ରିପୁରଭାର—ତିନିପୁରର ଦୁଃଖର କାରଣ ।

ବିଷ୍ଣୁ ବ୍ରହ୍ମାଙ୍କୁ କହିଲେ—ରାକ୍ଷସମାନଙ୍କୁ ଆପଣ କାହିଁକି ଏପରି ଅତି ଗୁରୁତ୍ୱପୂର୍ଣ୍ଣ ବର ଦେଉଛନ୍ତି ? ରାକ୍ଷସମାନେ ଯେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, ଏହି ତିନିପୁରର ଦୁଃଖର କାରଣ, ଏକଥା ଆପଣ ଜାଣନ୍ତି ନାହିଁକି ?

ବୋଇଲେ ଯେ ପୂର୍ବ ପୂର୍ବଦେବେ ବଳେ ସାରେ
ବିନାଶନରେ କୀନାଶ ପ୍ରକାରେ ସଂସାର ଯେ । ୧୪ ।
ବିହି ବୋଇଲେ ଶୁଣି ତା ଙ୍କ ଭକ୍ତି ବଚନ
ବର କରୁ ଉଚିତେ ଏ ଚିତ୍ତେ ବିରଚନ ଯେ । ୧୫ ।
ବିଲୋକନ ହେବ ନବ ନବ ଅବତାର
ବିଧୁର ବିଧୁର ଲୀଳା ହୋଇବ ବିସ୍ତାର ଯେ । ୧୬ ।
ବୃଷଭାସନେ ବୃଷ ଘୋଷଣେ ଅତି ତର
ବିଭୋ ତାର ଯେଉଁ ନାମ ତାରକ ମନ୍ତ୍ର ଯେ । ୧୭ ।

---

୧୪ । ପୂର୍ବ—ଆଗରୁ । ପୂର୍ବଦେବେ—ରାକ୍ଷସମାନେ । କୀନାଶ—ଯମ ।

ବିଷ୍ଣୁ ପୁନର୍ବାର କହିଲେ—ଆପଣ ପୂର୍ବରୁ କହିଛନ୍ତି ଯେ, ରାକ୍ଷସମାନେ ଅତ୍ୟନ୍ତ ବଳଶାଳୀ ଏବଂ ସୃଷ୍ଟିକୁ ଧ୍ୱଂସ କରିବା ଦିଗରେ ଯମ ସଦୃଶ ଅଟନ୍ତି । ( ତଥାପି କାହିଁକି ସେମାନଙ୍କୁ ଏପରି ବର ପ୍ରଦାନ କରୁଛନ୍ତି ? )

୧୫ । ବିହି—ବିଧାତା, ବ୍ରହ୍ମା । ଭକ୍ତି ବଚନ କହିଲେ—ଭକ୍ତିରେ ଉତ୍ତର ଦେଲେ । ବର କରୁ—ବର ପ୍ରଦାନ କରୁ । ଉଚିତେ ଏ ଚିତ୍ତେ ବିରଚନ—ଯଥାର୍ଥ ଭାବରେ ମନରେ ଚିନ୍ତାକରି ।

ବିଧାତା (ବ୍ରହ୍ମା) ବିଷ୍ଣୁଙ୍କ କଥା ଶୁଣି ତାହାଙ୍କୁ ଉତ୍ତର ଦେଲେ—ମୁଁ ମନରେ ଠିକ୍ ଭାବେ ବିଚାର ପୂର୍ବକ ରାକ୍ଷସମାନଙ୍କୁ ବର ପ୍ରଦାନ କରୁଛି ।

୧୬ । ବିଲୋକନ—ଦର୍ଶନ । ନବନବ—ନୂଆ ନୂଆ । ବିଧୁର—ବିଷ୍ଣୁଙ୍କର । ବିଧୁର ଲୀଳା—ବିଶ୍ଳେଷିତ ଲୀଳା ।

ବ୍ରହ୍ମା କହିଲେ—ମୁଁ ରାକ୍ଷସମାନଙ୍କୁ ବର ଦେବାର କାରଣ ହେଉଛି, ଆପଣଙ୍କର ନୂଆ ନୂଆ ଅବତାର ଆମ୍ଭେମାନେ ଦର୍ଶନ କରିବୁ ଏବଂ ସେଥିରେ ଆପଣ ଚମତ୍କାର ମଧୁର ଲୀଳା ପ୍ରକାଶ କରିବେ ।

୧୭,୧୮ । ବୃଷଭାସନ—ମହାଦେବ । ବୃଷ ଘୋଷଣ—ଉଚ୍ଚ ସ୍ୱରରେ କହିଲେ । ଅତି ତର—ଖୁବ୍ ଶୀଘ୍ର । ରତୀଶ କୋଟିଜିତ—କୋଟିଏ କନ୍ଦର୍ପଠାରୁ ମଧ୍ୟ ଅଧିକ ସୁନ୍ଦର ( ରତୀଶ = କନ୍ଦର୍ପ ) ।

ଏହାପରେ ମହାଦେବ ଖୁବ୍ ଶୀଘ୍ର ଉଚ୍ଚ ସ୍ୱରରେ କହିଲେ—ହେ ବିଭୋ ! ଆପଣଙ୍କର ଯେଉଁ ନାମରେ ବିଖ୍ୟାତ ତାରକମନ୍ତ୍ର ରହିଛି, କୋଟି କନ୍ଦର୍ପଜିତ ସେହି ରାମ ଅବତାର ଆପଣ ଧାରଣ କରନ୍ତୁ । ହେ ପୁରୁଷୋତ୍ତମ ! ସେହି ମୂର୍ତ୍ତି ଦର୍ଶନ ନିମିତ୍ତ ମୁଁ ଉତ୍କଣ୍ଠିତ । ମୋର ମନୋବାଞ୍ଛା ପୂର୍ଣ୍ଣ ହେଉ ।

ବହି ସେହି ମୂରତି ରଖିଣ କୋଟି-ଜତ
ବାଞ୍ଛା ପୂରୁ ହେ ପୁରୁଷୋତ୍ତମ ମୁଁ ଭାବିତ ଯେ । ୧୮ ।

ବିରୂପାକ୍ଷ ବୋଲିବାରେ ବାରେ କ ଶୋଚନ
ବୀକ୍ଷଣ ଲୋଭେ ଈକ୍ଷଣ ତିନ ମୁଁ ରଚନ ହେ । ୧୯ ।

ବକ୍ତ୍ର ପାଞ୍ଚ ପାଞ୍ଚ ଏହି ବହି ସ୍ତୁତି କୃତେ
ବହନ ବହ ସେ ରୂପ ମୋହରି ସୁକୃତେ ହେ । ୨୦ ।

ବାସ୍ତୋଷ୍ପତି ପଡ଼ିତ ଅଛନ୍ତି କେତେ ଭାଷି
ବହ ସେ ରୂପ ସ୍ୱରୂପେ ନ ଯାନ୍ତୁ ସେ ଭାସି ହେ । ୨୧ ।

---

୧୯ । ବିରୂପାକ୍ଷ—ଶିବ (ଯାହାଙ୍କର ଅକ୍ଷ ବା ନେତ୍ର ବିରୂପ—ଶିବଙ୍କର ତିନିଗୋଟି ଚକ୍ଷୁ ଥିବାରୁ ତାହାଙ୍କୁ ବିରୂପାକ୍ଷ କୁହାଯାଏ ) । ଶୋଚନ—ଦୁଃଖ । ବୀକ୍ଷଣ—ଦର୍ଶନ । ଈକ୍ଷଣ—ଚକ୍ଷୁ ।

ମହାଦେବ ପୁନର୍ବାର କହିଲେ—ହେ ପ୍ରଭୁ ! ମୋର ତିନିଗୋଟି ଚକ୍ଷୁ ଥିବାରୁ ମତେ ସମସ୍ତେ ବିରୂପାକ୍ଷ ବୋଲି କହୁଛନ୍ତି । ମାତ୍ର ମୁଁ ଏଥିରେ ତିଳେ ହେଲେ ଦୁଃଖିତ ନୁହେଁ । କାରଣ, ଆପଣ ରାମ ଅବତାର ଗ୍ରହଣ କଲେ ସେହି ରମଣୀୟ ରୂପକୁ ମୁଁ ତିନି ଗୋଟି ଚକ୍ଷୁରେ ଦେଖିବି । ( ଅର୍ଥାତ୍, ଅଧିକ ନେତ୍ର ଥିବାରୁ ମୁଁ ଅଧିକ ଭାବରେ ଆପଣଙ୍କ ସୌନ୍ଦର୍ଯ୍ୟ ଉପଭୋଗ କରିବି । )

୨୦ । ବକ୍ତ୍ର ପାଞ୍ଚ—ପାଞ୍ଚଗୋଟି ମୁଖ (ବକ୍ତ୍ର =ମୁଖ) । ପାଞ୍ଚ—ବିସ୍ତାର । ବହନ—ଶୀଘ୍ର ।

ହେ ପ୍ରଭୁ ! ଗୋଟିଏ ମୁହଁଥିଲେ ମୁଁ ପୂର୍ଣ୍ଣ ଭାବରେ ଆପଣଙ୍କର ଗୁଣ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ସମର୍ଥ ହୋଇପାରିବି ନାହିଁ ବୋଲି ଭାବି ପାଞ୍ଚ ଗୋଟି ମୁଖ ଧାରଣ କରିଛି । ଆପଣ ମୋର ସୁକୃତି ବଳରେ ଏବଂ ଏହି ପାଞ୍ଚ ମୁହଁ ଧରିବାର ସାର୍ଥକତା ନିମିତ୍ତ ଶୀଘ୍ର ସେହି ରାମ ରୂପ ଧାରଣ କରନ୍ତୁ ।

୨୧ । ବାସ୍ତୋଷ୍ପତି—ଇନ୍ଦ୍ର । ପଡ଼ିତ ଅଛନ୍ତି—ଦୁଃଖିତ ଅବସ୍ଥାରେ ପଡ଼ିଛନ୍ତି । ଭାଷି—କହିଲେ । ନଯାନ୍ତୁ ଭାସି—ନିରାଶ୍ରୟ ହୋଇ ନ ରହନ୍ତୁ ।

ଇନ୍ଦ୍ର କହିଲେ—ହେ ପ୍ରଭୁ ! ବିଶ୍ୱରେ ଅନେକ ଲୋକ ବର୍ତ୍ତମାନ ପୀଡ଼ିତ ହୋଇ ରହିଛନ୍ତି । ଆପଣ ସେହି ରାମ ରୂପ ଧାରଣ କରନ୍ତୁ, ଯାହା ଫଳରେ ଲୋକମାନେ ଆଉ ନିରାଶ୍ରୟ ହୋଇ ରହିବେ ନାହିଁ ।

ବିଶ୍ୱକସେନ ସେନେହ କରି ଏ ଉତ୍ତରେ
ବିଧୁ-କାଶ-ଜିତ ହାସ ପ୍ରକାଶି ସତ୍ୱରେ ଯେ । ୨୨ ।

ବହିବି ନାହିଁ ମୁଁ ଅରି ଅରି ମାରଣରେ
ବିରାଜମାନ ବିରାଜ ନ ଚଢ଼ି ରଣରେ ଯେ । ୨୩ ।

ବନୌକା ପ୍ରବଳବଳ ସଙ୍ଗେ ହେବେ ହେଲେ
ବୋଲିଣ ଅନ୍ତର ସେ ଅନ୍ତରଯାମୀ ହେଲେ ଯେ । ୨୪ ।

ବୈଧାତ୍ର କଥିତ ସ୍ଥିତ ଏମାନ ପ୍ରସଙ୍ଗେ
ବିଧିରେ ସଧୀରେ ଗଙ୍ଗାକୂଳେ ଋଷି ସଙ୍ଗେ ଯେ । ୨୫ ।

ବିବେକୀ ସୁମନ୍ତ୍ର ସୁମନ୍ତ୍ରର ଥିଲା ଯାଇ
ବିଚାରିଲା ପଚାରିଲା ଭାବ ଉପୁଜାଇ ଯେ । ୨୬ ।

---

୨୨ । ବିଶ୍ୱକସେନ—ବିଷ୍ଣୁ । ବିଧୁ—ଚନ୍ଦ୍ର । କାଶ—କାଶତଣ୍ଡୀ ଫୁଲ ।

ବିଷ୍ଣୁ ହସ ହସ ମୁହଁରେ ଦେବଗଣଙ୍କୁ ସ୍ନେହପୂର୍ଣ୍ଣ ବଚନ କହିଲେ । ତାହାଙ୍କର ସେହି ହାସ ଆହ୍ଲାଦ ଗୁଣରେ ଚନ୍ଦ୍ରଙ୍କୁ ଏବଂ ଶୁଭ୍ରତାରେ କାଶଫୁଲକୁ ବଳି ପଡ଼ିଲା ।

୨୩ । ଅରି—ଚକ୍ର । ଅରିମାରଣରେ—ଶତ୍ରୁ ମାରିବାରେ । ବି-ରାଜ—ଗରୁଡ଼ ।

ବିଷ୍ଣୁ କହିଲେ—ଏହି ଅବତାରରେ ଶତ୍ରୁ ବଧ କରିବା ନିମିତ୍ତ ମୁଁ ଚକ୍ର ଧାରଣ କରିବି ନାହିଁ ଏବଂ ଗରୁଡ଼ ଉପରେ ନ ବସି ଯୁଦ୍ଧକ୍ଷେତ୍ରରେ ବିରାଜିତ ହେବି ।

୨୪ । ବନୌକା—ବାନର । ପ୍ରବଳ ବଳ—ବିରାଟ ସେନାବାହିନୀ ।

ବାନରମାନଙ୍କର ବିରାଟ ସେନାବାହିନୀ ମୋର ସହାୟକ ହେବେ । ଏହା କହି ଅନ୍ତର୍ଯାମୀ ନାରାୟଣ ଅନ୍ତର୍ହିତ ହେଲେ ।

୨୫ । ବୈଧାତ୍ର—ସନତ୍ କୁମାର । ବିଧିରେ ଯଥା ବିଧିରେ ।

ଗଙ୍ଗାନଦୀ ତଟରେ ସନତ୍ କୁମାର ଅନ୍ୟାନ୍ୟ ଋଷିମାନଙ୍କ ସହିତ କଥା ପ୍ରସଙ୍ଗରେ ଭଗବାନଙ୍କର ଏହି ଭାବି ଅବତାର ବିଷୟ କହିଲେ ।

୨୬ । ସୁମନ୍ତ୍ର—ଦଶରଥଙ୍କ ମନ୍ତ୍ରୀ । ସୁମନ୍ତ୍ରର—ଉତ୍ତମ ବିଚାର ଶୀଳ ।

ସନତ୍ କୁମାର ଓ ଅନ୍ୟାନ୍ୟ ଋଷିମାନେ ଏହି ଆଲୋଚନା କଲାବେଳେ ଦଶରଥଙ୍କର ବିବେକୀ ଏବଂ ଉତ୍ତମ ମନ୍ତ୍ରଣାଦାତା ମନ୍ତ୍ରୀ ସୁମନ୍ତ୍ର ସେଠାକୁ ଯାଇଥିଲା । ସେ ବିଷ୍ଣୁ ଅବତାର ଗ୍ରହଣ କରିବା ବିଷୟ ଶୁଣି ସେହି ବିଷୟରେ ଚିନ୍ତାକଲେ ଏବଂ ଅନ୍ୟମାନଙ୍କର ଚିନ୍ତାର ଉଦ୍ରେକ କରାଇ, ପଚାରିଲେ ।

ବୈଜୟନ୍ତୀ ମାଳାଧର ଧରଣୀକରତା
ବର୍ଷ୍ମ ଧରି କେଉଁ ଧରଣୀଶ କୋଳେ ରତା ଯେ । ୨୭ ।

ବିଭ୍ରାଜିତ ଭବନରେ ବନରେ ହୋଇବେ
ବାତ୍ସଲ୍ୟରସ ବତ୍ସଳ ହୋଇଣ ଦଇବ ଯେ । ୨୮ ।

ପ୍ରକାଶିତ ଶୀତକର ଧବଳପକ୍ଷରେ
ବିହାୟସେ ଯଥା ବିହାର ସେ ଏ ଲକ୍ଷ୍ୟରେ ଯେ । ୨୯ ।

ବନ୍ଧୁବର୍ଗ-ଜୀବଂଜୀବ ନୟନ ତୋଷିବେ
ବ୍ୟକ୍ତେ ଭକ୍ତସରବ କୈରବ ଉଲ୍ଲସିବେ ଯେ । ୩୦ ।

---

୨୭ । ବୈଜୟନ୍ତୀ ମାଳାଧର—ବିଷ୍ଣୁ (ବିଷ୍ଣୁ ଧାରଣ କରିଥିବା ମାଳାର ନାମ 'ବୈଜୟନ୍ତୀ ମାଳା') । ଧରଣୀକରତା—ପୃଥିବୀର ଶାସନକର୍ତ୍ତା । ବର୍ଷ୍ମ ଧରି—ଦେହ ଧାରଣ କରି । ଧରଣୀଶ—ରାଜା । ରତା—ଅନୁରକ୍ତ ହୋଇଛନ୍ତି ।

ସୁମନ୍ତ ପଚାରିଲେ—"ବୈଜୟନ୍ତୀ ମାଳାଧାରୀ ଓ ପୃଥିବୀର ପାଳନକର୍ତ୍ତା ଭଗବାନ ବିଷ୍ଣୁ କେଉଁ ରାଜାଙ୍କ ଗୃହରେ ଶରୀର ଧାରଣ ପୂର୍ବକ ଜନ୍ମ ହେବେ ?"

୨୮ । ବିଭ୍ରାଜିତ—ପ୍ରକାଶିତ । ଭବନ—ଗୃହ । ବାତ୍ସଲ୍ୟରସବତ୍ସଳ—ବାତ୍ସଲ୍ୟ ରସରେ ଅନୁରାଗୀ ।

ସୁମନ୍ତ ପୁନର୍ବାର ପଚାରିଲେ—"ସେ କୌଣସି ରାଜନଅର ମଧ୍ୟରେ ଜନ୍ମ ହେବେ ନା ବନରେ ଅବତୀର୍ଣ୍ଣ ହେବେ ? ବିଧାତାଙ୍କ ନିର୍ଦ୍ଦେଶରେ ତାହାଙ୍କ ଠାରେ ବାତ୍ସଲ୍ୟରସ ପ୍ରକାଶ ପାଇବ କି ନାହିଁ ?"

୨୯ । ଶୀତକର—ଚନ୍ଦ୍ର । ଧବଳପକ୍ଷରେ—ଶୁକ୍ଳ ପକ୍ଷରେ । ବିହାୟସେ—ଆକାଶରେ ।

ଶୁକ୍ଳପକ୍ଷରେ ଆକାଶରେ ଚନ୍ଦ୍ର ଯେଉଁପରି ଶୋଭା ପ୍ରକାଶ କରନ୍ତି, ସେହିପରି ବିଷ୍ଣୁ ଅବତାର ଗ୍ରହଣ କରି ଶୋଭା ପାଇବେ । ତେବେ ସେ କେଉଁଠାରେ ଅବତୀର୍ଣ୍ଣ ହେବେ ?

୩୦ । ଜୀବଂଜୀବ—ଚକୋରପକ୍ଷୀ । ବ୍ୟକ୍ତେ—ଆବିର୍ଭୂତ ହେବାପରେ । କୈରବ—କଇଁଫୁଲ ।

ଚନ୍ଦ୍ର ଚକୋରପକ୍ଷୀଙ୍କୁ ଆନନ୍ଦ ପ୍ରଦାନ କଲପରି ବିଷ୍ଣୁ ଅବତୀର୍ଣ୍ଣ ହେଲେ ନିଜର ବନ୍ଧୁବାନ୍ଧବ ରୂପକ ଚକୋରପକ୍ଷୀମାନଙ୍କୁ ଆନନ୍ଦ ପ୍ରଦାନ କରିବେ । ତେବେ ଭକ୍ତ ରୂପକ କୁମୁଦବନକୁ ଆମୋଦିତ କରିବେ କି ନାହିଁ ?

ବୈଶ୍ୱ-ପଦ୍ମଙ୍କର କର ହେବ ଅମୋଦିତ
ବିଧୂ ନାମ୍ନହିଁ ଏଣୁ କ ମହୀରେ ଉଦିତ ଯେ । ୩୧ ।

ବୋଲେ ପ୍ରସନ୍ନ ସନତକୁମାର ପେଶଳେ
ବର୍ତ୍ତିବେ ଯେ ଉତ୍ତରକୋଶଳେ ସେ କୁଶଳେ ଯେ । ୩୨ ।

ବୋଲଇବେ ଦାଶରଥି ରଥିଶ୍ରେଷ୍ଠ ହରି
ବର୍ଣ୍ଣିବେ କବିଚ୍ଛେ କବି ନେବେ ଚିତ୍ତ ହରି ଯେ । ୩୩ ।

---

୩୧ । ବୈଶ୍ୱପଦ୍ମ—ଶତ୍ରୁ ରୂପକ ପଦ୍ମଫୁଲ । କର—ହାତ ଓ ପଦ୍ମ ଫୁଲ । ଆମୋଦିତ—ଆନନ୍ଦଦାୟକ । ବିଧୂ—ଚନ୍ଦ୍ର ଓ ବିଷ୍ଣୁ ।

ଚନ୍ଦ୍ରଙ୍କ କିରଣ ସ୍ପର୍ଶରେ ପଦ୍ମଫୁଲ ସଙ୍କୁଚିତ ହୋଇଗଲା ପରି ବିଧୂ ବା ବିଷ୍ଣୁଙ୍କ କରରେ (ବାହୁବଳରେ) ଶତ୍ରୁମାନେ ଧ୍ୱଂସପ୍ରାପ୍ତ ହେବେ ତ ? ତାଙ୍କର ଏହି କାର୍ଯ୍ୟକଳାପ ଦୃଷ୍ଟିରୁ ସେ 'ବିଧୂ' ରୂପରେ ପରିଚିତ ହେବେ ତ ?

୩୨ । ପେଶଳେ—କୋମଳ ଭାବରେ । ବର୍ତ୍ତିବେ—ରହିବେ, ଲୀଳା କରିବେ । ଉତ୍ତର-କୋଶଳେ—ଅଯୋଧ୍ୟାରେ ।

ସୁମନ୍ତଙ୍କର ଏହି ସମସ୍ତ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ପ୍ରଫୁଲ୍ଲମନା ସନତ୍ କୁମାର କୋମଳ ଭାବରେ କହିଲେ—"ବିଷ୍ଣୁ ଅଯୋଧ୍ୟାରେ ଅବତୀର୍ଣ୍ଣ ହୋଇ ଉତ୍ତମ ଭାବରେ ତାହାଙ୍କର ଲୀଳା ପ୍ରକାଶ କରିବେ ।"

୩୩ । ଦାଶରଥି—ଦଶରଥଙ୍କ ପୁତ୍ର । ରଥିଶ୍ରେଷ୍ଠ—ଅଦ୍ୱିତୀୟ ବୀର । ନେବେ ଚିତ୍ତ ହରି—ମନ ହରିଣ ବା ମନୋରଞ୍ଜନ କରିବେ ।

ସନତ୍ କୁମାର କହିଲେ—"ଭଗବାନ ବିଷ୍ଣୁ ଅଦ୍ୱିତୀୟ ବୀର ହେବେ ଏବଂ 'ଦାଶରଥି' ନାମ ଧାରଣ କରିବେ । କବିମାନେ ତାହାଙ୍କ ଲୀଳା ବର୍ଣ୍ଣନା ପୂର୍ବକ ଲୋକ-ଚିତ୍ତ ରଞ୍ଜନ କରିବେ ।

ବାହୁଡ଼ି ସଚିବ ଶଚୀପତିଭୂତି ଲଭେ
ବନ୍ଦନ ଅଜନନ୍ଦନ କୌଶଲ୍ୟାବଲ୍ଲଭେ ଯେ । ୩୪ ।

ବୃତ୍ତାନ୍ତ ତାତ ପର୍ଯ୍ୟରେ ସବୁ ଜଣାଇଲା
ବୃଦ୍ଧକାଳେ ସୁଭଗ୍ୟତା ପ୍ରବୃଦ୍ଧ ହୋଇଲା ଯେ । ୩୫ ।

ବିକଳ କଳନା ନୋହି କରୁଥିଲା ରଙ୍ଗ
ବନଦ-ବନଦ କବା ଶୁଣିଲା ସାରଙ୍ଗ ଯେ । ୩୬ ।

ବାମଦେବ ଜାବାଳ ଯା ବାଳୀ ଅରୁନ୍ଧତୀ
ବେଗେ ମିଳିତ ଲଳିତ ଜଟାବର ଧୃତି ଯେ । ୩୭ ।

---

୩୪,୩୫ । ସଚିବ—ମନ୍ତ୍ରୀ (ସୁମନ୍ତ୍ର) । ଶଚୀପତିଭୂତି—ଇନ୍ଦ୍ରଙ୍କ ଐଶ୍ୱର୍ଯ୍ୟ । ଅଜ—ଯାହାର ଜନ୍ମ ନାହିଁ (ବିଷ୍ଣୁ) । ନନ୍ଦନ—ପୁତ୍ର । କୌଶଲ୍ୟାବଲ୍ଲଭେ—ଦଶରଥଙ୍କୁ । ତାତପର୍ଯ୍ୟରେ—ସାବଧାନ ଭାବରେ । ସୁଭଗ୍ୟତା—ସୌଭାଗ୍ୟ । ପ୍ରବୃଦ୍ଧ—ଅତ୍ୟନ୍ତ ଉନ୍ନତ ।

ମନ୍ତ୍ରୀ ସୁମନ୍ତ୍ର ସନତ୍ କୁମାରଙ୍କ କଥା ଶୁଣି ଆନନ୍ଦ ମନରେ ଅଯୋଧ୍ୟା ଫେରି ଆସିଲେ । ସେମାନେ ମନେ ଇନ୍ଦ୍ର ସମ୍ପତ୍ତି ଲାଭ କଲା ପରି ଅନୁଭବ କରୁଥାଏ । ଦଶରଥଙ୍କୁ ବନ୍ଦନା ପୂର୍ବକ ବିଷ୍ଣୁ ତାହାଙ୍କର ପୁତ୍ର ରୂପେ ଜନ୍ମ ହେବେ ବୋଲି କହିଲେ । ସନତ୍ କୁମାରଙ୍କଠାରୁ ଶୁଣିଥିବା ସମସ୍ତ ବୃତ୍ତାନ୍ତ ଖୁବ୍ ସାବଧାନରେ ବର୍ଣ୍ଣନା କଲେ ଏବଂ କହିଲେ, "ବୃଦ୍ଧକାଳରେ ଆପଣଙ୍କର ସୌଭାଗ୍ୟ ବୃଦ୍ଧି ପାଇଲା ।"

୩୬ । କଳନା ନୋହି—ଯାହା କଳନା କରି ହେବ ନାହିଁ, ଅକଥନୀୟ । ରଙ୍ଗ—ବିହାର । ବନଦ-ବନଦ—ମେଘଧ୍ୱନି (ବନଦ=ବନ ବା ଜଳକୁ ଦିଏ ଯେ) । ସାରଙ୍ଗ—ଚାତକ ପକ୍ଷୀ ।

( ସୁମନ୍ତ୍ରଙ୍କ ଠାରୁ ଦଶରଥ ଏହି ଶୁଭ ସମ୍ବାଦ ଶୁଣିବା ପରେ ) ମନେ ହେଲା—ସତେ ଯେପରି ବୃଷ୍ଟି ଜଳ ପାନ କରିବା ନିମିତ୍ତ ବିକଳ ହୋଇ ବୁଲୁଥିବା ଚାତକ ପକ୍ଷୀ ମେଘଧ୍ୱନି ଶ୍ରବଣ କଲା ।

୩୭ । ଯା ବାଳୀ ଅରୁନ୍ଧତୀ—ଅରୁନ୍ଧତୀ ଯାହାଙ୍କର ସ୍ତ୍ରୀ (ବାଳୀ) ଅର୍ଥାତ୍=ବଶିଷ୍ଠ । ଜଟାବରଧୃତି—ଉତ୍ତମ ଜଟା ଧାରଣ କରିଥିବା ।

ମସ୍ତକରେ ଉତ୍ତମ ଜଟା ଧାରଣ କରିଥିବା ବାମଦେବ, ଜାବାଳି ଓ ବଶିଷ୍ଠ ଋଷି ସେଠାରେ ଆସି ଉପସ୍ଥିତ ହେଲେ ।

ବିମଳ ନଳିନ ମ୍ଳାନ ଲପନେ ମନାଇଁ
ବସୁମଣ୍ଡଳ ଅତି ସହରଷ ଅନାଇଁ ଯେ । ୩୮ ।

ବୋଲୁ ଅଛନ୍ତି ଛତିଶ କୁଳୀନ ଯମର
ବଧ ଶୁଣିଲ ଜାଣିଲୁ ପରଶୁରାମର ଯେ । ୩୯ ।

ବାରିଧି ମନ୍ଦ ମନ୍ଦର ନୃପ-ଗଣେଶ୍ୱର
ବିରଚନ ବଚନ ଆନନ୍ଦମୟ ସ୍ୱର ଯେ । ୪୦ ।

ବୃହଦ୍‌ଭାନୁ ଭାନୁରୁ ମୁଁ ଶୀତଳ ପାଇବି
ବିନ୍ଧ୍ୟ ପରବତ ହସ୍ତ ଉପରେ ଥୋଇବି ଯେ । ୪୧ ।

---

୩୮,୩୯ । ବିମଳ—ପ୍ରଷ୍ଫୁଟିତ । ନଳିନ—ପଦ୍ମ । ମ୍ଳାନ—ମ୍ଲାନ ହୋଇଯିବା । ଲପନ—ମୁଖ । ବସୁମଣ୍ଡଳ—ରାଜା । ସହରଷ—ଆନନ୍ଦର ସହିତ । ଛତିଶ କୁଳୀନ—ଛତିଶ ପାଟକର ରକ୍ଷାକର୍ତ୍ତା, କ୍ଷତ୍ରିୟ ।

ପ୍ରଷ୍ଫୁଟିତ ପଦ୍ମଫୁଲକୁ ମଧ୍ୟ ନିଷ୍ପ୍ରଭ କରିଦେଲ ପରି ବିମଳ ହାସ ରାଜା ଦଶରଥଙ୍କ ମୁଖମଣ୍ଡଳରେ ପ୍ରକାଶ ପାଇଥିବା ଦେଖି ସେମାନେ ମଧ୍ୟ ସାନନ୍ଦ ଚିତ୍ତରେ ରାଜାଙ୍କୁ କହିଲେ—"ଆପଣଙ୍କ ମୁଖମଣ୍ଡଳର ବିମଳ ହାସ ଦେଖି ଆମ୍ଭେମାନେ ଜାଣୁଛୁ, କ୍ଷତ୍ରିୟଙ୍କର ଯମ ସଦୃଶ ପରଶୁରାମଙ୍କ ମୃତ୍ୟୁ ସମ୍ବାଦ ଆପଣ ପାଇଛନ୍ତି ।"

୪୦ । ବାରିଧି—ସମୁଦ୍ର । ମନ୍ଦ—ଶନିଗ୍ରହ । ମନ୍ଦର—ମନ୍ଦର ପର୍ବତ । ନୃପଗଣେଶ୍ୱର—ରାଜାମାନଙ୍କର ପ୍ରଭୁ (ନୃପଗଣ + ଈଶ୍ୱର) । ବିରଚନ ବଚନ—କହିଲେ ।

ଶନିଗ୍ରହ ରୂପକ ସମୁଦ୍ରକୁ ମନ୍ଥନ କରିବାରେ ମନ୍ଦର ପର୍ବତ ତୁଲ୍ୟ ଥିଲେ ଯେଉଁ ନୃପଗଣାଧିପତି ଦଶରଥ, ସେ ଆନନ୍ଦମୟ ସ୍ୱରରେ ଋଷିମାନଙ୍କୁ କହିଲେ—

୪୧ । ବୃହଦ୍‌ଭାନୁ—ଅଗ୍ନି । ଭାନୁ—ସୂର୍ଯ୍ୟ ।

(ରାଜା ଦଶରଥ କହିଲେ)—(ବିଷ୍ଣୁଙ୍କୁ ନିଜର ପୁତ୍ର ରୂପେ ଲାଭ କରିବା ସମ୍ବାଦ ପାଇ) ମୁଁ ଅନୁଭବ କରୁଛି—ସତେ ଯେପରି ଅଗ୍ନି ଏବଂ ସୂର୍ଯ୍ୟଙ୍କ ଠାରୁ ଶୀତଳତା ପାଇବି ଏବଂ ବିନ୍ଧ୍ୟପର୍ବତକୁ ନିଜ ହସ୍ତରେ ଧାରଣ କରିବି । (ଏହା ମତେ ସମ୍ପୂର୍ଣ୍ଣ ଅସମ୍ଭବ ପରି ବୋଧ ହେଉଛି ) ।

ଦ୍ୱିଜୁଷକୁ ମନେକରେ କରେ ଧରିବାକୁ
ବାୟୁକୁ ପାଶେ ପକାଇ ପାଶେ ରଖିବାକୁ ଯେ ।' ୪୨ ।

ବଶିଷ୍ଟ ଶିଷ୍ଟ ଉକ୍ତିକୁ ତହୁଁ ପ୍ରକାଶିଲେ
ବିଷୟ କି ସଂଶୟ କି ସୁମନ୍ତ୍ର ଭାଷିଲେ ଯେ । ୪୩ ।

ବୁଝି ମୁନି ହସି ହସି ସମ୍ମତିକୁ ଇଚ୍ଛି
ବାଲ୍ମୀକି ଭବିଷ୍ୟ ପୁରାଣକୁ ପୁରା ଇଚ୍ଛି ଯେ । ୪୪ ।

ବୈକୁଣ୍ଠ ବୈକୁଣ୍ଠପୁର ଶୂନ୍ୟ ପୂର୍ଣ୍ଣମୂର୍ତ୍ତି
ବଟେଣି ତ ଶ୍ରୁତି ଅଛି ଶ୍ରୁତିଯେ ସ୍ମୃତି ଯେ । ୪୫ ।

ବାଞ୍ଛି ସେ ଅନୁସରଣ ଶରଣ ବାଞ୍ଛିତ
ବୈବସ୍ୱତ କୁଳେ ସୁତଃ ଆମ୍ଭେ ପୁରୋହିତ ଯେ । ୪୬ ।

---

୪୨ । ଦ୍ୱିଜୁଷ—ଚନ୍ଦ୍ର । କରେ—ହାତରେ ।
ମତେ ଆହୁରି ମଧ୍ୟ ଲାଗୁଛି ଯେ, ମୁଁ (ବାମନ ହୋଇ) ଆକାଶର ଚନ୍ଦ୍ରକୁ ହସ୍ତରେ ଧରିବାକୁ ଚେଷ୍ଟା କରୁଛି ଏବଂ ପବନକୁ ଫାଶରେ ଧରି ମୋ ପାଖରେ ରଖିବାକୁ ଇଚ୍ଛା କରୁଛି ।

୪୩ । ଶିଷ୍ଟଉକ୍ତି ସାଧୁବାକ୍ୟ ।
(ଦଶରଥଙ୍କ ଠାରୁ ଏହା ଶୁଣି) ବଶିଷ୍ଠ ସାଧୁଭାଷାରେ ପଚାରିଲେ—"କଥାଟା କଣ ?" । ସୁମନ୍ତ୍ର ତାହାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ କହିଲେ, "ଏଥିରେ ଆଉ ସନ୍ଦେହ ନାହିଁ ।"

୪୪ । ସୁମନ୍ତ୍ରଙ୍କ ଠାରୁ ସମସ୍ତ ବିଷୟ ବୁଝି ବଶିଷ୍ଠ ମୁନି ହସି ହସି ସେଥିରେ ସମ୍ମତ ହେଲେ ଏବଂ କହିଲେ—'ବାଲ୍ମୀକି ମୁନି ଭବିଷ୍ୟ ପୁରାଣରେ ପୂର୍ବରୁ ଏହା ଲେଖିଛନ୍ତି ।

୪୫ । ବୈକୁଣ୍ଠ—ବିଷ୍ଣୁ । ଶ୍ରୁତି ଅଛି—ଶୁଣା ଯାଇଛି । ଶ୍ରୁତି—ବେଦ । ସ୍ମୃତି—ଧର୍ମ ଶାସ୍ତ୍ର ।
ବଶିଷ୍ଠ ଆହୁରି କହିଲେ—"ବିଷ୍ଣୁ ବୈକୁଣ୍ଠ ପୁର ଶୂନ୍ୟ କରି ପୂର୍ଣ୍ଣ ଅବତାର ଗ୍ରହଣ କରିବେ ବୋଲି ବେଦ ଓ ସ୍ମୃତି ଶାସ୍ତ୍ରରେ ଲେଖାଯାଇଛି ।

୪୬ । ବାଞ୍ଛି—କାମନା କରି । ବୈବସ୍ୱତ କୁଳେ—ବୈବସ୍ୱତ ମନୁଙ୍କ ବଂଶରେ ।
ବଶିଷ୍ଠ କହିଲେ—"ସେହି ମାନବ ଅବତାରୀ ଭଗବାନ ବିଷ୍ଣୁଙ୍କର ଶରଣ ଅନୁସରଣ କାମନା କରି ମୁଁ ସ୍ୱେଚ୍ଛାରେ ବୈବସ୍ୱତ ମନୁଙ୍କ ବଂଶର ପୁରୋହିତ ହୋଇଛି ।"

ବେଳୁବେଳ ନୃପତି ଚିତ୍ତକୁ ଦ୍ରବାଇଲା
ବିଧୁଶିଳ ପରି ବିଧୁ ସେ ବାଣୀ ହୋଇଲା ଯେ । ୪୭ ।

ବିତ୍ତ ବିତରଣ ସେହିବିନୁ ସେ କାମରେ
ବ୍ରତ ସର୍ଜିତ ପୂଜିତ ଅପୂଜ୍ୟ ଅମରେ ଯେ । ୪୮ ।

ବୈଷ୍ଣବେ ଭୂସୁରେ ସୁରେ କରାଇ ମୋଦକୁ
ବ୍ରହ୍ମଚର୍ଯ୍ୟେ କର୍ମକୃତ କର୍ମ ଶୁଭଦକୁ ଯେ । ୪୯ ।

ବିବେଚନାମାନ ମାନସରେ କରେ ନିତ୍ୟ,
ବ୍ୟବସ୍ଥିତେ ରଜନୀରେ ସୁସ୍ୱପ୍ନ ଜନିତ ଯେ । ୫୦ ।

---

୪୭ । ଦ୍ରବାଇଲା—ତରଳାଇଲା । ବିଧୁଶିଳ—ଚନ୍ଦ୍ରକାନ୍ତମଣି । ବିଧୁଶିଳ ପରି ବିଧୁ—ଚନ୍ଦ୍ରକାନ୍ତମଣି ଉପରେ ଚନ୍ଦ୍ର କିରଣ ପଡ଼ିଲେ, ତାହା ତରଳି ଯାଏ ବୋଲି ଲୋକ-ପ୍ରସିଦ୍ଧି ରହିଛି ।

ଚନ୍ଦ୍ର କିରଣ ଯେଉଁପରି ଚନ୍ଦ୍ରକାନ୍ତମଣିକୁ ତରଳାଇ ଦିଏ, ସେହିପରି ଭାବରେ ବଶିଷ୍ଠଙ୍କର ଚନ୍ଦ୍ର ତୁଲ୍ୟ ଶୀତଳ ବାକ୍ୟ ରାଜା ଦଶରଥଙ୍କର ଚିତ୍ତ ରୂପକ ଚନ୍ଦ୍ରକାନ୍ତ-ମଣିକୁ ତରଳାଇ ଦେଲା ।

୪୮ । ବିତ୍ତ—ଧନ । ବିତରଣ—ବାଣ୍ଟିବା । କାମରେ—କାମନାରେ । ବ୍ରତ ସର୍ଜିତ—ବ୍ରତ ଆଚରଣ କରିବା । ଅପୂଜ୍ୟ ଅମରେ—ପୂଜା ପାଉ ନଥିବା ଦେବତାମାନଙ୍କୁ ।

ସେହି ଦିନଠାରୁ ରାଜା ଦଶରଥ ଏହି କାମନା ପୋଷଣ ପୂର୍ବକ ଧନ ବିତରଣ କଲେ, ବିଭିନ୍ନ ବ୍ରତ ଅନୁଷ୍ଠାନ କଲେ ଏବଂ ବିଭିନ୍ନ ମନ୍ଦିରରେ ପୂଜା ପାଉ ନ ଥିବା ଦେବତାମାନଙ୍କର ପୂଜା ନିମନ୍ତେ ବ୍ୟବସ୍ଥା କଲେ ।

୪୯ । ଭୂସୁର—ବ୍ରାହ୍ମଣ । ସୁର—ଦେବତା । ମୋଦ—ଆନନ୍ଦ, ସନ୍ତୋଷ । ବ୍ରହ୍ମଚର୍ଯ୍ୟେ—ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ପୂର୍ବକ ।ଶୁଭଦ—ମଙ୍ଗଳଦାୟକ ।

ରାଜା ଦଶରଥ ବୈଷ୍ଣବ, ବ୍ରାହ୍ମଣ ଓ ଦେବତାମାନଙ୍କୁ ସନ୍ତୁଷ୍ଟ କରାଇଲେ । ପୁନଶ୍ଚ, ଶୁଭଫଳ ପାଇବା ଇଚ୍ଛାରେ ନିଜେ କରୁଥିବା ସମସ୍ତ କର୍ମ ବ୍ରହ୍ମଚର୍ଯ୍ୟ ପାଳନ ପୂର୍ବକ ଅନୁଷ୍ଠାନ କଲେ ।

୫୦ । ବିବେଚନା—ବିଚାର ।ମାନସରେ—ମନରେ । ବ୍ୟବସ୍ଥିତେ—ଉପଯୁକ୍ତ ଭାବରେ ।

ରାଜା ଦଶରଥ ସବୁବେଳେ ଏହି କଥା ମନରେ ଚିନ୍ତା କରିବାରୁ ରାତିରେ ଉପଯୁକ୍ତ ଭାବରେ ସେହିପରି ମଙ୍ଗଳମୟ ସ୍ୱପ୍ନ ଦେଖିଲେ ।

ବିତପନ ତପନବଂଶୀ ସେ ନୃପୋତ୍ତମ
ବିନାଶଇ ଦିନକୁ ଦିନ ସେ ଚିନ୍ତାତମ ଯେ । ୫୧ ।
ବୋଲେ ଉପେନ୍ଦ୍ରଭଞ୍ଜ ଭଞ୍ଜନେ ଦୁରିତ
ବାବନ ପଦରେ ଆଦରେ ଚରିତ ରଚିତ ଯେ । ୫୨ ।

---

୫୧ । ବିତପନ—ସୂର୍ଯ୍ୟ ସଦୃଶ । ତପନବଂଶୀ—ସୂର୍ଯ୍ୟବଂଶୀୟ । ଚିନ୍ତାତମ—ଚିନ୍ତା ରୂପକ ଅନ୍ଧକାର । ନୃପୋତ୍ତମ—ନୃପଶ୍ରେଷ୍ଠ (ଦଶରଥ)

ସୂର୍ଯ୍ୟ ତୁଲ୍ୟ ଦୀପ୍ତିମନ୍ତ ସେହି ସୂର୍ଯ୍ୟବଂଶୀୟ ନୃପଶ୍ରେଷ୍ଠ ଦଶରଥ ଦିନକୁଦିନ ନିଜର ଦୁଶ୍ଚିନ୍ତା ରୂପକ ଅନ୍ଧକାରକୁ ବିନାଶ କଲେ ।

୫୨ । ଭଞ୍ଜନେ—ଖଣ୍ଡନ କରିବାରେ । ଦୁରିତ—ପାପ ।

କବି ଉପେନ୍ଦ୍ରଭଞ୍ଜ କହୁଛନ୍ତି ଯେ, ସେ (ନିଜର ଏବଂ ଏହି ଗ୍ରନ୍ଥର ପାଠକ ମାନଙ୍କର) ପାପ ଖଣ୍ଡନ ନିମିତ୍ତ ଆଦର ସହିତ ବାବନ ସଂଖ୍ୟକ ପଦରେ ଏହି ରାମଚରିତ ରଚନା କରିଛନ୍ତି ।

## ତୃତୀୟ ଛାନ୍ଦ

ରାଗ—ରାମକେରୀ

ବିଦୁଷ ହେ ଶୁଣ ରଞ୍ଜନ ରସ ମନକୁ ଦେଇ
ବିଦୂଷଣ ରାଜସମାଜେ ଧର୍ମ ସ୍ୱରୂପ ସେହି । ୧ ।

ବିଦିତ ମିଥିଳା ନୃପତି ନାମ ଜନକ ତାର
ବିଦିଗ ଦିଗରେ ହୋଇଛି ଯଶ ଖ୍ୟାତ ଯାହାର । ୨ ।

ବିଦଗଧ ଯଜ୍ଞକର୍ମରେ ସର୍ବଦାରେ ସେ ଅତି
ବିଦଗଧ ଚିତ୍ତ ପ୍ରାପତ ନୋହିବାରେ ଦୁହିତା । ୩ ।

ବୃଷାଳ ମୁଖଶାଳା କୃତେ ଦିନେ ଚଷୁ ଅବନୀ
ବୃଷାଶାପୁ ମୁକ୍ତ ପାଇଣ ମେନା ନାମେ କାମିନୀ । ୪ ।

---

୧ । ବିଦୁଷ—ପଣ୍ଡିତ । ରଞ୍ଜନ—ମନୋହର । ରସ—ରସପୂର୍ଣ୍ଣ ଚରିତ । ବିଦୂଷଣ—ଦୋଷଶୂନ୍ୟ । ରାଜସମାଜେ—ରାଜମାନଙ୍କ ମଧ୍ୟରେ ।

ହେ ପଣ୍ଡିତମାନେ ! ମନଦେଇ ଏହି ମନୋହର ରସପୂର୍ଣ୍ଣ ଚରିତ ଶ୍ରବଣ କର । (ରାଜା ଜନକ) ଦୋଷଶୂନ୍ୟ ରାଜାମାନଙ୍କ ମଧ୍ୟରେ ସେ ଧର୍ମର ପ୍ରତିମୂର୍ତ୍ତି ରୂପେ ଖ୍ୟାତି ଲାଭ କରିଥିଲେ ।

୨ । ବିଦିତ—ସୁପରିଚିତ ।

ସେହି ବିଖ୍ୟାତ ମିଥିଳାର ରାଜାଙ୍କ ନାମ ଥିଲା ଜନକ । ତାହାଙ୍କ ଯଶ ଦିଗବିଦିଗରେ ପ୍ରସାର ଲାଭ କରିଥିଲା ।

୩ । ବିଦଗଧ—(ବିଦଗ୍ଧ) ପଣ୍ଡିତ, ନିପୁଣ । ବିଦଗଧ ଚିତ୍ତ—ଦୁଃଖିତ ମନ ।

ଉକ୍ତ ରାଜା ଜନକ ସବୁବେଳେ ଯଜ୍ଞକର୍ମ କରିବାରେ ନିପୁଣ ଥିଲେ । ତାହାଙ୍କର କୌଣସି କନ୍ୟା ନଥିବାରୁ ସର୍ବଦା ମନରେ ଦୁଃଖ ଅନୁଭବ କରୁଥିଲେ ।

ବସି ବିମାନରେ ଗଗନେ କରୁଅଛି ଗମନ
ବଶୀଭୂତ ଶୋଭାପ୍ରଭାରେ ହରେ ଜନନୟନ । ୫ ।

ବୁଧଜନଙ୍କ କ କଳଙ୍କହୀନେ ପୂର୍ଣ୍ଣ ସଂପଦେ
ବୁଧ ଜନଙ୍କରେ ପରତେ ନଭେ ଦିବସେ ଉଦେ । ୬ ।

ବୃଷଭାସ୍ୟା ସେ ମଣ୍ଡିବାରେ ଚିତ୍ତ ଅତି ଉଦ୍‌ବେଗ
ବୃଷଭାସା ଏହି ତରଙ୍ଗେ ଚାଳିବାରେ ଅପାଙ୍ଗ । ୭ ।

ବିହରିତ ପୁନଃପୁନଃ କ ସୁଧା ପିଇ ଚକୋର
ବିହରିତରେ ସେ ବିହରୁ ନିଷ୍ଟେ ଏ ମନୋହର । ୮ ।

୪,୫ । ବିଶାଳ—ବିଶାଳ । ମଖଶାଳା—ଯଜ୍ଞଶାଳା । ବୃଷା—ଇନ୍ଦ୍ର । କାମିନୀ—ସ୍ତ୍ରୀ । ବିମାନ—ରଥ । ଗଗନେ—ଆକାଶରେ ।

ରାଜା ଜନକ ଦିନେ ଏକ ବିଶାଳ ଯଜ୍ଞଶାଳା ନିର୍ମାଣ ନିମିତ୍ତ ଜମି ଚଷ କରିବାବେଳେ ମେନକା ନାମକ ସ୍ୱର୍ଗର ଅପ୍‌ସରା ଇନ୍ଦ୍ରଙ୍କ ଶାପରୁ ମୁକ୍ତ ପାଇ ରଥରେ ବସି ଆକାଶରେ ଯାଉଥିବା ଦେଖିଲେ । ତାହାର ଶୋଭା ଓ କାନ୍ତି ଜନନୟନକୁ ବଶୀଭୂତ କରି ହରଣ କରୁଥିଲା ।

୬ । ବୁଧଜନକ—ଚନ୍ଦ୍ର । ପୂର୍ଣ୍ଣ ସଂପଦେ—କିରଣ ସଂପଦରେ ପୂର୍ଣ୍ଣ ହୋଇ । ବୁଧଜନ—ପଣ୍ଡିତ ଲୋକ । ପରତେ—ଜଣାଯାଏ । ନଭେ—ଆକାଶରେ ।

ତାହାକୁ ଦେଖି ପଣ୍ଡିତମାନଙ୍କୁ ଜଣାଯାଉ ଥିଲା, ସତେ ଯେପରି କଳଙ୍କହୀନ ପୂର୍ଣ୍ଣଚନ୍ଦ୍ର ଷୋଡ଼ଶକଳାରେ ପୂର୍ଣ୍ଣ ହୋଇ ଦିବାଭାଗରେ ଆକାଶରେ ଉଦିତ ହୋଇଛନ୍ତି ।

୭,୮ । ବୃଷଭାସ୍ୟା—ଇନ୍ଦ୍ରପୁରୀ । ବୃଷଭାସା—ଅତ୍ୟନ୍ତ କାନ୍ତିମୟୀ । ଅପାଙ୍ଗ—ଦୃଷ୍ଟି । ବିହରିତ—ବିହାର କରୁଥିବା । ସୁଧା—ଅମୃତ । ବିହରିତରେ—ବିଭିନ୍ନଦିଗରେ ।

ସ୍ୱର୍ଗପୁରୀକୁ ଯିବା ନିମିତ୍ତ ତାହାର ମନ ଅତି ଉଦବେଗପୂର୍ଣ୍ଣ ହୋଇ ଉଠିଥିଲା । ସେ ଅତ୍ୟନ୍ତ କାନ୍ତିମୟୀ ଥିଲା ଏବଂ ଅତି ଚଞ୍ଚଳ ଭାବରେ ନିଜର କଟାକ୍ଷ ଚାଳନା କରୁଥିଲା । ମନେ ହେଉଥିଲା, ସତେ ଯେପରି ଚକ୍ଷୁରୂପକ ଚକୋର ପକ୍ଷୀ ମୁଖଚନ୍ଦ୍ରରୁ ଅମୃତ ପାନ କରି ବାରମ୍ବାର ବିଭିନ୍ନ ଦିଗରେ ବିହାର କରୁଅଛି ।

ବଳାରାତି ପୁର ମଣ୍ଡନା ଶୋଭା ଜନକ ଗୃହେଁ
ବଳାଇଲେ ଚିତ୍ତ ମୋ ସୁତା ହୁଅନ୍ତା ଏହି । ୯ ।

ବାଳାରୁଣାଧରା ଜଣାଇଲା ଜାଣି ତାହାଙ୍କ ଚିତ୍ତ
ବାଳାଏ ଏକ୍ଷଣି ଅଦ୍ଭୁତେ ହୋଏ ସିନା ପ୍ରାପତ । ୧୦ ।

ବଳାହକୁ ଜନ୍ମ ହୋଇଲା ପରା ଈଶ୍ୱର ଖୁରୁ
ବଳାହକେ ବିଦ୍ୟୁ ପ୍ରକାଶ ପ୍ରାପ୍ତେ ଗନ୍ଧବତୀରୁ । ୧୧ ।

ବାଣୀରେ ଏପରି ଲଙ୍ଗଳ ଅଗ୍ରେ ଜାତ ମଞ୍ଜୁଷେ
ବାଣିଜେ ରତ୍ନସମ୍ପୁଟକ ଲଭ୍ୟ ପରି ମଞ୍ଜୁ ସେ । ୧୨ ।

ବିଶ୍ୱମୋହିନୀଏ ତା ମଧ୍ୟେ ଦେଖି ମହା ହରଷ
ବିଶ୍ୱକର୍ମାକୃତ କୃତ୍ରିମ ପୁତ୍ରୀ କି କଳବଶ । ୧୩ ।

---

୯ । ବଳାରାତିପୁରମଣ୍ଡନା—ଇନ୍ଦ୍ରପୁର ବା ସ୍ୱର୍ଗପୁରର ମଣ୍ଡନକାରିଣୀ (ବଳାରାତି—ଇନ୍ଦ୍ର) ।
ସ୍ୱର୍ଗପୁରମଣ୍ଡନକାରିଣୀ ସେହି ମେନକାର ସୌନ୍ଦର୍ଯ୍ୟକୁ ଦେଖି ରାଜା ଜନକ "ଇଏ ମୋର ଝିଅ ହୁଅନ୍ତା କି" ଭାବି ସେଥିପ୍ରତି ମନ ବଳାଇଲେ ।

୧୦ । ବାଳାରୁଣାଧରା—ଉଦୟକାଳୀନ ସୂର୍ଯ୍ୟପରି ଯାହାର ଅଧର ଲାଲବର୍ଣ୍ଣ ଦେଖାଯାଉଥିଲା ।
ବାଳସୂର୍ଯ୍ୟ ତୁଲ୍ୟ ଲାଲବର୍ଣ୍ଣର ଓଷ୍ଠଧାରିଣୀ ସେହି ମେନକା ଜନକଙ୍କ ମନୋଭାବ ଜାଣିପାରି ତାହାଙ୍କୁ କହିଲା—"ଏହିକ୍ଷଣି ଅତି ବିଚିତ୍ର ଭାବରେ ଆପଣ ଗୋଟିଏ କନ୍ୟା ପ୍ରାପ୍ତ ହେବେ ।"

୧୧ । ବଳାହକୁ—ପର୍ବତରୁ । ଈଶ୍ୱର ଖୁରୁ—ପାର୍ବତୀ । ବଳାହକେ—ମେଘ ଦେହରେ । ବିଦ୍ୟୁ—ବିଜୁଳି । ଗନ୍ଧବତୀ—ପୃଥିବୀ ।
ମେନକା କହିଲା—"ପର୍ବତରୁ ଯେଉଁପରି ପାର୍ବତୀ ଜାତ ହୋଇଥିଲେ, ମେଘରୁ ଯେଉଁପରି ବିଜୁଳି ଜନ୍ମଲାଭ କରେ, ସେହିପରି ପୃଥିବୀରୁ କନ୍ୟାଟିଏ ଜାତହେବ ।"

୧୨ । ବାଣୀ—ବଚନ । ଲଙ୍ଗଳ—ଲଙ୍ଗଳ । ମଞ୍ଜୁଷ—ପେଡ଼ି । ବାଣିଜେ—ବଣିକକୁ । ରତ୍ନସମ୍ପୁଟକ—ରତ୍ନପଟୁଆ । ମଞ୍ଜୁ—ମନୋହର ।
ମେନକା ମୁଖରୁ ଏହିକଥା ଶୁଣିବା ପରେ ଲଙ୍ଗଳ ଅଗରୁ ଜନକ ଏକ ସୁନ୍ଦର ପେଡ଼ି ପ୍ରାପ୍ତ ହେଲେ । ବଣିକ ଏକ ରତ୍ନପଟୁଆ ପାଇଲେ ଯେଉଁପରି ଅତ୍ୟନ୍ତ ଆନନ୍ଦିତ ହୁଏ, ଜନକ ସେହିପରି ପେଡ଼ିଟିକୁ ପାଇ ଖୁବ୍ ଆନନ୍ଦିତ ହେଲେ ।

୧୩ । ବିଶ୍ୱମୋହିନୀ—ବିଶ୍ୱକୁ ମୋହିତ କରୁଥିବା ସୁନ୍ଦରୀ କନ୍ୟା । ବିଶ୍ୱକର୍ମାକୃତ—ବିଶ୍ୱକର୍ମା-ଦ୍ୱାରା ନିର୍ମିତ । କୃତ୍ରିମ ପୁତ୍ରୀ—କୁଣ୍ଢେଇ । କଳବଶ—ଯନ୍ତ୍ରଦ୍ୱାରା ନିର୍ମିତ ।

ବସୁନ୍ଧରାଭବା ଜନକ କୋଳ କରି ସୁଭାବ
ବସୁ ଧରାଇଲା କୃପଣେ କି କୃପାଳୁ ବଳବ । ୧୪ ।
ବିଶ୍ୱସୃକ୍ ଏକ କରନ୍ତି ଧାଳ ଶୋଭାଚୟକୁ
ବିଶ୍ୱକେତୁ କେତୁ ବାନ୍ଧିଲା ଜାଣି ଜଗଜ୍ଜୟକୁ । ୧୫ ।
ତହୁଁ ଋଷି ତାଙ୍କ ସଙ୍ଗତେ ମେଳ ହୋଇ ଥିଲେ
ବହୁ ସୀତା ନାମ ଏ'ହୀତା' ଯୋଗେ ଜାତ ବୋଇଲେ । ୧୬ ।
ବିଧିସନମତ ପୃଥିବୀଭବା 'ପାର୍ଥିବୀ' ଏହି
ବିଧିରେ ମିଥିଳା ଉତ୍ସବକାରୀ 'ମୈଥିଳୀ' କହି । ୧୭ ।

---

ସେହି ପେଡ଼ିରେ ଏକ ବିଶ୍ୱମୋହିନୀ କନ୍ୟା ଥିବା ଦେଖି ଜନକ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଭାବିଲେ, ଯତେ ଯେପରି ବିଶ୍ୱକର୍ମା କୌଣସି ଯନ୍ତ୍ର ସାହାଯ୍ୟରେ ଏକ କୁଣ୍ଢେଇ ନିର୍ମାଣ କରନ୍ତି ।

୧୪ । ବସୁନ୍ଧରାଭବା—ପୃଥିବୀରୁ ଜାତ ହୋଇଥିବା କନ୍ୟା । ବସୁ—ଧନ । କୃପାଳୁ—ଦୟାଶୀଳ । କୃପଣ ହସ୍ତରେ ବିଧାତା ଧନ ଦେଲେ ସେ ଯେପରି ଆନନ୍ଦିତ ହୁଏ, ଜନକ ମଧ୍ୟ ପୃଥିବୀରୁ ଜାତ ହୋଇଥିବା ସେହି କନ୍ୟାଟିକୁ କୋଳକରି ଅତ୍ୟନ୍ତ ଆନନ୍ଦିତ ହେଲେ ।

୧୫ । ବିଶ୍ୱସୃକ—ବିଶ୍ୱର ସୃଷ୍ଟିକର୍ତ୍ତା, ବିଧାତା । ଶୋଭାଚୟ—ଶୋଭା ସମୂହ । ବିଶ୍ୱକେତୁ—କନ୍ଦର୍ପ । କେତୁ—ପତାକା । ଜଗଜ୍ଜୟ— ବିଶ୍ୱବିଜୟ ।

ସେହି କନ୍ୟାକୁ ଦେଖିଲେ ମନେ ହେଉଥିଲା—ଯତେ ଯେପରି ବିଧାତା ସୃଷ୍ଟିର ସମସ୍ତ ସୌନ୍ଦର୍ଯ୍ୟକୁ ଏକାଠି କରି ତାହାକୁ ନିର୍ମାଣ କରିଛନ୍ତି । ସେହି କନ୍ୟାକୁ ଦେଖି କନ୍ଦର୍ପ ବିଶ୍ୱକୁ ଜୟ କରିବା ନିମିତ୍ତ (ନିଜ ରଥରେ) ପତାକା ବାନ୍ଧିଦେଲା ।

୧୬ । ସୀତା—ଲଙ୍ଗଳମୁନ । ବହୁ—ଧାରଣ କରୁ ।

ଜନକଙ୍କ ସହିତ ସେଠାରେ ଆହୁରି ଅନେକ ଋଷି ଏକତ୍ରିତ ହୋଇ ରହିଥିଲେ । ସେମାନେ କହିଲେ—ଏହିକନ୍ୟା ଲଙ୍ଗଳଅଗ୍ର (ସୀତା)ରୁ ଜାତ ହୋଇଛି । ତେଣୁ ଏହାର ନାମ ସୀତା ରଖାଯାଉ ।

୧୭ । ବିଧି ସନମତ—ବିଧାନ ଅନୁଯାୟୀ । ପୃଥ୍ୱୀଭବା—ପୃଥିବୀରୁ ଜାତ । ଉତ୍ସବକାରୀ—ଆନନ୍ଦକାରିଣୀ ।

କେତେଜଣ ଋଷି କହିଲେ—ଏହି କନ୍ୟା ପୃଥିବୀରୁ ଜାତ ହୋଇଥିବାରୁ ତଦନୁସାରେ ଏହାର ନାମ 'ପାର୍ଥିବୀ' ହେଉ । ଅନ୍ୟ କେହି କେହି କହିଲେ—ମିଥିଳା ରାଜ୍ୟର ଅଧିବାସୀମାନଙ୍କ ଆନନ୍ଦବର୍ଦ୍ଧନକାରିଣୀ ହୋଇଥିବାରୁ ଏହି କନ୍ୟା 'ମୈଥିଳୀ' ନାମ ଧାରଣ କରୁ ।

ବିଦେହ ଜାୟା କୋଟି ଏକ ହେଲେ ସମ କି ଆଉ
ବିଦେହ ଦେଶରେ ଉଦ୍ଭବ 'ବଇଦେହୀ' ବୋଲାଉ । ୧୮ ।

ବିବୁଧ ଜନକ ପାଳନେ ବୋଲାଇବ 'ଜାନକୀ'
ବିଦୂଷଣ ଶୋଭା ଜେମାର ଆଉ ସମ ଆନ କି । ୧୯ ।

ବାସରେ ଉତ୍ଫୁଲ କି ଲକ୍ଷ୍ୟ ପାରିଜାତକ ତୁଚ୍ଛ
ବାସରେ ଚହଟେ 'ଯୋଜନଗନ୍ଧା' ନାମହିଁ ସ୍ୱଚ୍ଛ ।୨୦ ।

ବଡ଼ଭି ଉପରେ ଦୋଳରେ ରଖି ଧାତ୍ରୀପାଳିତ
ବଡ଼-ଭି ଉପମାମାନଙ୍କ ଅପମାନରୁ ଜାତ । ୨୧ ।

---

୧୮ । ବିଦେହ ଜାୟା—କନ୍ଦର୍ପର ପତ୍ନୀ= ରତି (ବିଦେହ—କନ୍ଦର୍ପ) । ଉଦ୍ଭବ—ଜନ୍ମଲାଭ କରି ।

ଆଉ କେତେଜଣ ଋଷି କହିଲେ—କୋଟିଏ ରତିଙ୍କ ସୌନ୍ଦର୍ଯ୍ୟ ଏକାଠି ହେଲେ ମଧ୍ୟ ଏହି କନ୍ୟାର ସୌନ୍ଦର୍ଯ୍ୟ ସହିତ ସମାନ ହୋଇପାରିବ ନାହିଁ । ଏହି କନ୍ୟା ବିଦେହ ଦେଶରେ ଜନ୍ମ ହୋଇଥିବାରୁ ଏହାର ନାମ 'ବୈଦେହୀ' ହେଉ ।

୧୯ । ବିବୁଧ—ପଣ୍ଡିତ । ବିଦୂଷଣ—ଦୋଷଶୂନ୍ୟ ।

ପଣ୍ଡିତ ଜନକ ଋଷିଙ୍କ ଦ୍ୱାରା ପାଳିତ ହୋଇ ଏହି କନ୍ୟା 'ଜାନକୀ' ନାମ ଧାରଣ କରିବ । ଏହାର ନିଷ୍କଳଙ୍କ ଶୋଭା ସହିତ ଆଉ କେହି ସମାନ ହେବନାହିଁ ।

୨୦ । ବାସରେ—ସୁଗନ୍ଧରେ । ଉତ୍ଫୁଲ—ପ୍ରଫୁଲ୍ଲ । ଲକ୍ଷ୍ୟ—ତୁଳନୀୟ ।

ଏହି କନ୍ୟାର ଅଙ୍ଗସୌରଭ ସହିତ ପ୍ରଫୁଲ୍ଲର ସୁଗନ୍ଧକୁ କାହିଁକି ଅବା ତୁଳନା କରିବା ! ପାରିଜାତ ପୁଷ୍ପ ଏହାଙ୍କ ଅଙ୍ଗ ସୌରଭ ନିକଟରେ ଅତି ତୁଚ୍ଛ ବୋଧହୁଏ । କାରଣ, ପାରିଜାତର ସୌରଭ ବେଶୀଦୂର ବ୍ୟାପିପାରେ ନାହିଁ । ମାତ୍ର ଏହି କନ୍ୟାର ସୌରଭ ଯୋଜନ ଦୂର ବ୍ୟାପୀ ପ୍ରସାରିତ ହୁଏ । ଏହି କାରଣରୁ ଏହାଙ୍କୁ 'ଯୋଜନଗନ୍ଧା' ନାମ ଦେବା ଯଥାର୍ଥ ହେବ ।

୨୧ । ବଡଭି—ଚନ୍ଦ୍ରଶାଳାପୁର । ଧାତ୍ରୀ—ଧାଈ । ବଡ଼-ଭି—ବଡ଼ଭୟ ।

ଉକ୍ତ କନ୍ୟାଟିକୁ ଧାଈମାନେ ଚନ୍ଦ୍ରଶାଳାପୁରରେ ଦୋଳରେ ଶୁଆଇ ଯେତେବେଳେ ଝୁଲାଉଥିଲେ, ସେତେବେଳେ ସୃଷ୍ଟିର ସମସ୍ତ ଉପମା ଭୟଭୀତ ହୋଇପଡ଼ିଲେ । କାରଣ, ସେମାନେ ଏହି କନ୍ୟାର କୌଣସି ଅଙ୍ଗର ଶୋଭା ସହିତ ସମାନ ହେଲେନାହିଁ ।

ବିନିଦ୍ର କି ହେମ ଶୟନେ ଦୁର୍ଗା ରୂପା ପଲଙ୍କେ
ବିନର୍ଗତ ଆନ ଉପମା ଦେଖିବାକେ ପଲକେ । ୨୨ ।
ବାଳକାଳିକା ଜନ୍ତୁକେ ଅନ୍ତଃପୁରସ୍ଥା ମୋହି
ତାର କି ଶୈବାଳ କମଳକୋଷ ଉପରେ ଶୋହି । ୨୩ ।
ବାତବର ଚିତ୍ର ପ୍ରତିମା ପରି ଧରି ତା ଉଷ୍ମ
ବାଡ଼ବର ମଧ୍ୟେ ପକାଅ ଆନ ସମାନ ଶୋଭା । ୨୪ ।
ବିଲମ୍ବ ନୂତନ ମଞ୍ଜରୀ ତଳିତ କି ପବନେ
ବିଡ଼ମ୍ବଣ ଅନ୍ୟ ଦୃଷ୍ଟି ଯେ ଟଳଟଳ ଗମନେ । ୨୫ ।

୨୨ । ବିନିଦ୍ର—ଶୋଇଛନ୍ତି । ହେମଶୟନେ—ସୁନା ଶେଜରେ । ବିନର୍ଗତ—ବାହାରିଯିବା, ଦୂର ହୋଇଯିବା । ପଲକେ—ଆଖି ପିଛୁଳାକେ ।

ସେ ଦୋଳିରେ ଶୋଇଥିବା ବେଳେ ମନେ ହେଉଥିଲା, ସତେ ଯେପରି ଦୁର୍ଗା ରୂପା ପଲଙ୍କ ଉପରେ ସୁନା ଶେଯରେ ଶୟନ କରିଛନ୍ତି । ତାହାକୁ ଚାହିଁବା ମାତ୍ରେ ଏହି ଗୋଟିଏ ଉପମା ବ୍ୟତୀତ ଅନ୍ୟ ସମସ୍ତ ଉପମା ଦୂରକୁ ଅପସରି ଯାଉଥିଲେ ।

୨୩ । ବାଲକାଳିକା—ବାଲ୍ୟାବସ୍ଥାର ଖେଳକୌତୁକ । ଅନ୍ତଃପୁରସ୍ଥା—ଅନ୍ତଃପୁରରେ ବାସ କରୁଥିବା ନାରୀ । ଶୈବାଳ—ଶିଉଳୀ । କମଳକୋଷ—ପଦ୍ମକଢ଼ି ।

ସେହି କନ୍ୟା ନିଜର ବାଲ୍ୟକ୍ରୀଡ଼ାକୌତୁକ ଦ୍ୱାରା ଅନ୍ତଃପୁରର ସମସ୍ତ ନାରୀଙ୍କୁ ମୁଗ୍ଧ କରିଦେଲା । ପଦ୍ମକଢ଼ି ଉପରେ ଶିଉଳି ମାଡ଼ିଥିଲେ ଯେଉଁପରି ସୁନ୍ଦର ଦେଖାଯାଏ, ତାହାର ମୁଖ (ପଦ୍ମ) ଉପରେ ମୁଣ୍ଡର ବାଳଗୁଡ଼ିକ ସେହିପରି ଶୋଭାଧାରଣ କରିଥିଲା ।

୨୪ । ବାତବର—ଉତ୍ତମ (ସୁନ୍ଦର) କାନ୍ଥ । ବାଡ଼ବର ମଧ୍ୟେ—ସମୁଦ୍ର ମଧ୍ୟରେ ।

ସେହି କନ୍ୟା ନଅର ଭିତରେ ଥିବା ସୁନ୍ଦର କାନ୍ଥକୁ ଧରି ଠିଆହେଲା ବେଳେ କାନ୍ଥଉପରେ ଅଙ୍କିତ ଏକ ଚିତ୍ରିତ ମୂର୍ତ୍ତି ପରି ଦେଖାଯାଉଥିଲା । ତାହାର ସେହି ସୌନ୍ଦର୍ଯ୍ୟ ଦେଖିଲେ ଅନ୍ୟ ସମସ୍ତ ଉପମାକୁ ସମୁଦ୍ରକୁ ଫିଙ୍ଗିଦେବା ଉଚିତ ମନେ ହେଉଥିଲା ।

୨୫ । ବିଲମ୍ବ—ବିଲମ୍ବ—ଲମ୍ବିଯାଇଥିବା । ନୂତନ ମଞ୍ଜରୀ—ଲତାର ନୂତନ (କୋମଳ) ଅଗଭାଗ । ତଳିତ—ଦୋହଲୁଥିବା । ବିଡ଼ମ୍ବଣ—ବୃଥା ।

ସୀତା ଯେତେବେଳେ ଟଳ ଟଳ (ପାଦ ଏପାଖ ସେପାଖ ପକାଇ) ହୋଇ ଚାଲୁଥିଲେ, ସେତେବେଳେ ତାହାଙ୍କୁ ଦେଖି ମନେ ହେଉଥିଲା, ସତେ ଯେପରି କୌଣସି ଲତାରୁ ଲମ୍ବିଯାଇଥିବା ଏକ ନୂତନ ମଞ୍ଜରୀ ପବନରେ ଦୋହଲୁଛି । ତାଙ୍କର ସେହି ଚାଲି ଦେଖୁଥିବା ବେଳେ ଅନ୍ୟଆଡ଼େ ଦୃଷ୍ଟି ଫେରାଇବା ନିରର୍ଥକ ବୋଧ ହେଉଥିଲା ।

ବଚନକୁ ବାଚକେ ନକହୁ ପୁଣି ଶୁଣି ଉତ୍ସାହି
ବଚକୁ ପିଇଲ ମଣ୍ଡିଲା ଶୁକ ମୂକରେ ରହି । ୨୬ ।
ବାଳୀ ସେ ଖେଳିଲା ଶିଶୁଙ୍କ ସଙ୍ଗେ କ୍ରମକ୍ରମରେ
ବାଳିଶେ ଲକ୍ଷିବେ ସେକାଳେ ରମ୍ଭା ରମାସମରେ । ୨୭ ।
ବେଣୀ ଗୁନ୍ଥି ଶିରେ ଶୁକଳ ରଙ୍ଗ ଫୁଲ ସଘନ
ବେଣୀ ତ୍ରିପୂର୍ବ କି ନଭରୁ ହେଉଛନ୍ତି ପତନ । ୨୮ ।
ବିଲମ୍ବିତ କର୍ଣ୍ଣେ କୁଣ୍ଡଳ କି ସେ ଶାଙ୍କୁଳିବନ୍ଦା
ବିଳମ୍ବିତ ତମ୍ଭ ଚିନ୍ତାରେ ଦେବ ଗୃହ୍ଣ ନୋହିଲା । ୨୯ ।

---

୨୬ । ବଚକୁ—କଥାକୁ । ବାଚକେ—ବଚନରେ, ଭଲକରି କହିବାରେ ।

ସୀତା ନୂଆନୂଆ କରି କଥା କହିବାକୁ ଆରମ୍ଭ କଲବେଳେ ତାଙ୍କର ସେହି ଦରୋଟି ବଚନକୁ ବାରମ୍ବାର ଶୁଣିବା ପାଇଁ ମନରେ ଆଗ୍ରହ ଜାତହେଉଥିଲା । ଶୁଆ ମଧୁର କଥା କହିବାରେ ସୀତାଙ୍କ ସହିତ ସମାନ ହେବ ଭାବି ବାଦ ଖାଇଲା । ତଥାପି ସେ ତାହାଙ୍କ ପରି ମଧୁର ସ୍ୱରରେ କଥା କହି ନପାରିବାରୁ ମୂକହୋଇ ରହିଲା ।

୨୭ । ବାଳୀ—କନ୍ୟା, ସୀତା । ବାଳିଶେ—ମୂର୍ଖମାନେ । ରମ୍ଭା—ରମ୍ଭା ଅପ୍‌ସରୀ । ରମା—ଲକ୍ଷ୍ମୀ ।

ସେହି କନ୍ୟା ସୀତା କ୍ରମଶଃ ଅନ୍ୟ ସମବୟସ୍କା ଶିଶୁମାନଙ୍କ ସହିତ ଖେଳିବାକୁ ଆରମ୍ଭକଲା । ସେତେବେଳେ ତାହାଙ୍କୁ ଲକ୍ଷ୍ୟକରି କେବଳ ମୂର୍ଖମାନେ ହିଁ କହିବେଯେ, ରମ୍ଭା ଅପ୍‌ସରୀ କିମ୍ବା ଲକ୍ଷ୍ମୀ ଖେଳୁଛନ୍ତି । (ମାତ୍ର ବିଜ୍ଞମାନଙ୍କ ଦୃଷ୍ଟିରେ ଏହି ଉପମା ଯଥାର୍ଥ ପ୍ରତୀତ ହେବ ନାହିଁ ) ।

୨୮ । ଗୁନ୍ଥି—ସୁନ୍ଦର । ଶୁକଳ—ଶୁକ୍ଳ-ଧଳାରଙ୍ଗ । ରଙ୍ଗଫୁଲ—ଲାଲରଙ୍ଗର ଫୁଲ । ବେଣୀ ତ୍ରିପୂର୍ବ—'ବେଣୀ' ଶବ୍ଦର ପୂର୍ବରେ 'ତ୍ରି' ଯୋଗକରି—ତ୍ରିବେଣୀ । ନଭରୁ—ଆକାଶରୁ ।

ସୀତାଙ୍କ ମସ୍ତକରେ ସୁଶୋଭିତ ବେଣୀରେ ଧଳା ଓ ଲାଲରଙ୍ଗର ଫୁଲ ଘନ ଭାବରେ ଗ୍ରନ୍ଥିତ ହୋଇଥିଲା । ତାହା ଦେଖି ମନେ ହେଉଥିଲା, ସତେଯେପରି ଆକାଶରୁ ତ୍ରିବେଣୀ (ଗଙ୍ଗାନଦୀ, ଯମୁନାନଦୀ ଓ ସରସ୍ୱତୀନଦୀ ଏକତ୍ର) ମର୍ତ୍ତ୍ୟଭୂମିରେ ଅବତୀର୍ଣ୍ଣ ହେଉଛି । (ଗଙ୍ଗାଜଳ—ଶୁଭ୍ରବର୍ଣ୍ଣ, ଧଳାଫୁଲ = ଯମୁନାଜଳ—ନୀଳବର୍ଣ୍ଣ = କେଶ, ସରସ୍ୱତୀଜଳ—ଲାଲବର୍ଣ୍ଣ = ଲାଲଫୁଲ ।)

୨୯ । ବିଲମ୍ବିତ—ଓହଳିଥିବା । କର୍ଣ୍ଣେ—କାନରେ । ଶାଙ୍କୁଳି—ବାନ୍ଧିରଖିଥିବା ।

ସୀତାଙ୍କ କାନରେ କୁଣ୍ଡଳ ଓହଳି ରହି ଶୋଭା ପାଉଥିଲା । ମନେ ହେଉଥିଲା, ସତେ ଯେପରି ଦର୍ଶକର ଆଖିକୁ ବାନ୍ଧି ରଖିବା ନିମିତ୍ତ ତାହା ବନ୍ଧା ସଦୃଶ ହୋଇଥିଲା ।

ବୟୁକଲ୍ କାହିଁ ଏ ଶାନ୍ତିମାନ ସୁନ୍ଦରୀମଣି
ବୟୁସନ୍ଧିକ ଉଙ୍କାଶି ଆନ ଭୂକାଟରେ ଆଣି । ୩୦ ।
ବିଭାକାଳେ ନାରୀ ଯେମନ୍ତେ କନ୍ୟାଳଙ୍କାର ମୁଞ୍ଚି
ବିଭାବନା ହେଲା ତହିଁରେ ନବ-ବିଳାସ ରଞ୍ଚି । ୩୧ ।
ବସନ୍ତଦୂତ ଧ୍ୱନି କଲାବେଳେ କେତେ ଇଙ୍ଗିତ
ବସନ୍ତ ରାଗରେ ଆଳାପ ତହିଁ କରଇ ଗୀତ । ୩୨ ।
ବସନ୍ତ ବସନେ ଗଣ୍ଠି କି ଦେଇ କଲେ ପକାଇ
ବସନ୍ତବସନ ମୋହିବି ଏହି ଗୁମାନ ବହି । ୩୩ ।

---

କାରଣ ଯେତେ ଧୈର୍ଯ୍ୟଶାଳୀ ବ୍ୟକ୍ତି ହେଲେ ମଧ୍ୟ ତାହାକୁ ଦେଖିଲା ମାତ୍ରେ ତାର ଆଖି ସେଠାରୁ ଫେରୁନଥିଲା ।

୩୦ । ବୟଃକଲ--ବୟଃକଲ । ବୟଃସନ୍ଧି—ବୟଃସନ୍ଧିକାଳ, ବାଲ୍ୟକାଳ ଶେଷ ହୋଇ ଯୌବନର ଆରମ୍ଭ ସମୟ ।

ସୁନ୍ଦରୀଶିରୋମଣି ସୀତା ବୟଃସନ୍ଧିକାଳର ଉପସ୍ଥିତ ହେବାରୁ ବାଲ୍ୟକାଳର ଏହି ସବୁ ଗୀତ ଓ କ୍ରୀଡ଼ାକଳାପ ତ୍ୟାଗ ପୂର୍ବକ ନୂଆନୂଆ ହାବଭାବ ପ୍ରକାଶକଲେ ।

୩୧ । ବିଭାକାଳେ—ବିବାହ ସମୟରେ । କନ୍ୟାଳଙ୍କାର—ପିଲାଦିନର ଅଳଙ୍କାର । ମୁଞ୍ଚି—ତ୍ୟାଗକରିବା । ବିଭାବନା—ବିଶେଷ ଇଚ୍ଛା ବା ଆଗ୍ରହ । ନବବିଳାସ—ନୂଆନୂଆ ଢଙ୍ଗ । ରଞ୍ଚି—ରଚନାକରି ।

ବିବାହ ସମୟରେ ନାରୀମାନେ ଯେଉଁପରି ବାଲ୍ୟକାଳରେ ପରିହିତ ଅଳଙ୍କାର-ଗୁଡ଼ିକୁ ତ୍ୟାଗକରି ନୂତନ ଅଳଙ୍କାରମାନ ଧାରଣ କରିବାକୁ ଇଚ୍ଛା ପ୍ରକାଶ କରନ୍ତି, ସେହିପରି ସୀତା ବୟଃସନ୍ଧିକାଳ ଉପସ୍ଥିତ ହେବାରୁ ଶୈଶବର ସମସ୍ତ ଲୀଳାବିଳାସ ତ୍ୟାଗ ପୂର୍ବକ ନୂତନ ହାବଭାବ ପ୍ରତି ବିଶେଷ ଇଚ୍ଛା ପ୍ରକାଶ କଲେ ।

୩୨ । ବସନ୍ତଦୂତ—କୋଇଲି । ଇଙ୍ଗିତ—ଉପହାସ । ବସନ୍ତ ରାଗ—ସଙ୍ଗୀତ ଶାସ୍ତ୍ରର ରାଗ ବିଶେଷ । ଆଳାପ – ସଙ୍ଗୀତ ଶାସ୍ତ୍ରାନୁସାରେ ସ୍ୱରର ମନୋହର ପ୍ରକାଶ ।

ବସନ୍ତ ଋତୁରେ କୋକିଳ କୁହୁଧ୍ୱନି କଲାବେଳେ ସୀତା ତାହାକୁ ପରିହାସ ପୂର୍ବକ ବସନ୍ତ ରାଗରେ ସ୍ୱରର ଆଳାପକରି ସଙ୍ଗୀତ ଗାନ କରୁଥିଲେ ।

୩୩ । ବସନ୍ତ ବସନ—ହଳଦିଆ ବସ୍ତ୍ର । ବସନ୍ତବସନ—ରାମଚନ୍ଦ୍ର । ଗୁମାନ—ଅଭିମାନ ।

ସୀତା ହଳଦିଆ ରଙ୍ଗର ପାଟ ପିନ୍ଧି ତାହାର ପଣତରେ ଗଣ୍ଠି ପକାଇ ପିଠିରେ ପକାଇଲେ । ମନେ ହେଉଥିଲା, ସତେ ଯେପରି ରାମଚନ୍ଦ୍ରଙ୍କୁ ମୋହିବା ଅଭିମାନ ନେଇ ସେ ଏହିପରି ବସ୍ତ୍ର ପରିଧାନ କରିଥିଲେ ।

ବନ୍ଧନ କରେ ନାନା ଛନ୍ଦେ ମାଙ୍ଗ ସେ ପୁନଃ ପୁନଃ
ବନ୍ଧ ଚନ୍ଦ୍ରପଟ୍ଟ ଏକାନ୍ତେ ଗୁହ୍ଣିବାରେ ସୁମନ । ୩୪ ।

ବନ୍ଦି ଯାହାକୁ ବଢ଼ ବୋଲ ସଉନ୍ଦର୍ଯ୍ୟେ ଧଗ୍ନରେ
ବନ୍ଦୀପର ହୋଇ ରହିଲ ଅବରୋଧେ ଧରାରେ । ୩୫ ।

ବସ୍ତ୍ରର ନବର ହିନକୁ ହିନ ପ୍ରଭା ବଢ଼ାଇ
ବସ୍ତ୍ରରେ କୁଚ ଅଙ୍କୁରିତ ଏହି ଉତ୍‌ପ୍ରେକ୍ଷା ହୋଇ । ୩୬ ।

ବର୍ଣ୍ଣମାଳୀ ପରି ରୋମାଳୀ କି ସେ ଶରଘାପନ୍ତ
ବର୍ଣ୍ଣମାପୁ ଏହି କରନ୍ତି କି ସେ ଉର୍ଦ୍ଧ୍ୱକୁ ଗଢ । ୩୭ ।

---

୩୪ । ମାଙ୍ଗ—ନାରୀମାନେ ପିନ୍ଧିଥିବା ଲୁଗାର ଖୋସଣି । ବନ୍ଧ ଚନ୍ଦ୍ରପଟ୍ଟ—ବିବିଧ ରତିବନ୍ଧ ବିଷୟକ ଚନ୍ଦ୍ରପଟ୍ଟ । ଏକାନ୍ତେ—ଏକୁଟିଆରେ ।

ସୀତା ନାନା ଛନ୍ଦରେ ବାରମ୍ବାର ନୀବୀବନ୍ଧନ କରୁଥିଲେ ଏବଂ ଏକାନ୍ତରେ ଚଉଷଠି ରତିବନ୍ଧ ବିଷୟକ ଚନ୍ଦ୍ରପଟ୍ଟ ଦେଖିବାକୁ ବିଶେଷ ଆଗ୍ରହ ପ୍ରକାଶ କଲେ ।

୩୫ । ବନ୍ଦି—ବନ୍ଦନା ବା ପ୍ରଶଂସା କରିଯାଏ । ଧରା—ପୃଥିବୀ । ଅବରୋଧେ—ଅନ୍ତଃପୁରରେ । ଧରାରେ—ଧରାହୋଇ ।

ଯେଉଁ ସୀତାକୁ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ପୃଥିବୀରେ ଶ୍ରେଷ୍ଠତମା ବୋଲି ପ୍ରଶଂସା କରିଯାଏ, ସେ ଯୌବନକାଳର ଆରମ୍ଭରେ ରାଜଅନ୍ତଃପୁରରେ ଧରାହୋଇ ବନ୍ଦୀହେଲା ପରି ରହିଲେ ।

୩୬ । ବସ୍ତ୍ରର – ବର୍ଣ୍ଣ । ନବ—ନଅ । ପ୍ରଭା—କାନ୍ତି । ବସ୍ତ୍ରରେ—ବକ୍ଷଦେଶରେ ।

ସୀତାଙ୍କୁ ଯେତେବେଳେ ନଅବର୍ଷ ବୟସ ହେଲା, ସେତେବେଳେ ଦିନକୁଦିନ ତାହାଙ୍କର କାନ୍ତି ବିଶେଷ ବୃଦ୍ଧି ପାଇଲା । ତାହାଙ୍କ ବକ୍ଷଦେଶରେ ସ୍ତନ ଅଙ୍କୁରିତ ହେବାରୁ କବି ଉତ୍ପ୍ରେକ୍ଷା କରୁଛନ୍ତି—(ପରପଦରେ ଏହି ଉତ୍ପ୍ରେକ୍ଷା ରହିଛି) ।

୩୭ । ବର୍ଣ୍ଣମାଳୀ—ଅକ୍ଷରମାଳା । ରୋମାଳୀ—ଲୋମ ସମୂହ । ଶରଘାପନ୍ତି—ମହୁମାଛି ଧାଡ଼ି ।

ସୀତାଙ୍କର ନାଭିପ୍ରଦେଶରୁ ଯେଉଁ ରୋମାବଳୀ ଉପରକୁ ଉଠିଥିଲା, ତାହା ଧାଡ଼ି ଧାଡ଼ି ଅକ୍ଷରମାଳା ପରି ଦେଖାଯାଉଥିଲା । ତାହା ଦେଖି କବି ଆନ୍ଦୁର କହୁଛନ୍ତି ଯେ, ସତେ ଯେପରି ଧାଡ଼ିଏ ମହୁମାଛି ଉପରଆଡ଼କୁ ଗତି କରୁଛନ୍ତି ।

ବିକଳନା କରି ସଞ୍ଚିନ୍ତ ମଧୁ କଳ୍ପଦ୍ରୁମରେ
ବିକଳପ ଫଳ ଅଙ୍କୁରି ଉଠେ ବୃଦ୍ଧି କ୍ରମରେ । ୩୮ ।
ବିଜନ୍ମ ହୋଇଲା କ୍ରମୁକଠାରୁ ତାଳ ସରିକ
ବିଜୟ ହୃଦରେ ସ୍ୱୟମ୍ଭୁ ରୂପେ କଲେ ଶମ୍ଭୁକ । ୩୯ ।
ବଳଶ୍ରେଷ୍ଠ କାମ ତାହାଙ୍କ ବାମ କଲା ପ୍ରହାର
ବଳ ବାଟୁଳି କି ସ୍ତନାଗ୍ର ରୂପେ ସେ ମନୋହର । ୪୦ ।
ବାସରେ ଯତନେ ଘୋଡ଼ାଇ ଚୋଳ-କବଚ ଦେଇ
ବାସଅଙ୍ଗୀ ସ୍ମରଭୟରୁ ରତି ସେବନେ ସ୍ନେହୀ । ୪୧ ।

---

୩୮ । ବିକଳନା—ବିଶେଷ କଳନା । ମଧୁ—ମହୁ । କଳ୍ପଦ୍ରୁମ—କଳ୍ପବୃକ୍ଷ । ବିକଳପ (ବିକଳ୍ପ)—ଅନ୍ୟ ଭାବରେ କଳ୍ପନା କରିବା । ଅଙ୍କୁରି—ଜାତ ହେଉ ହେଉ ।

କବି କଳ୍ପନା କରୁଛନ୍ତି ସୀତାଙ୍କର ବକ୍ଷ ରୂପକ କଳ୍ପବୃକ୍ଷରେ ମହୁମାଛିମାନେ (ରୋମସମୂହ) ସ୍ତନ ରୂପକ ମଧୁଚକ୍ର ନିର୍ମାଣ ପୂର୍ବକ ତହିଁରେ ମଧୁ ସଞ୍ଚୟ କରି ରଖୁଛନ୍ତି । ଏହାପରେ ଅନ୍ୟ ଏକ କଳ୍ପନା ଜାତ ହେଉଛି—ସତେ ଯେପରି କଳ୍ପବୃକ୍ଷରେ ଫଳ ଫଳିବା ଆରମ୍ଭ ହୋଇ କ୍ରମଶଃ ବଢ଼ିବାରେ ଲାଗିଛି ।

୩୯ । ବିଜନ୍ମ ହୋଇଲା—ଜନ୍ମିଲା । କ୍ରମୁକ—ଗୁଆ ।

ସୀତାଙ୍କ ସ୍ତନଦ୍ୱୟ କ୍ରମଶଃ ଗୁଆଠାରୁ ତାଳଫଳର ଆକାର ପର୍ଯ୍ୟନ୍ତ ବୃଦ୍ଧିପ୍ରାପ୍ତ ହେଲା । ମନେହେଲା ସତେ ଅବା ସ୍ୱୟମ୍ଭୂ ଲିଙ୍ଗରୂପେ ସ୍ୱୟଂ ମହାଦେବ ହୃଦୟ ଉପରେ ବିଜେ ହେଲେ ।

୪୦ । ବଳଶ୍ରେଷ୍ଠ—ଅତ୍ୟନ୍ତ ବଳବାନ୍ । କାମ—କନ୍ଦର୍ପ । ବାମ—ଶତ୍ରୁତା କରି ।

କବି ଆହୁରି କଳ୍ପନା କରୁଛନ୍ତି—ଅତ୍ୟନ୍ତ ବଳଶାଳୀ କନ୍ଦର୍ପ ଶିବଙ୍କ ପ୍ରତି ପ୍ରତିକୂଳ ହୋଇ ତାହାଙ୍କ ପ୍ରତି ବାଟୁଳି ପ୍ରହାର କଲା । ଉକ୍ତ ବାଟୁଳି (ମାଟିରେ ତିଆରି ହୋଇ ଓଦା ରହିଥିବାରୁ) ସ୍ତନରେ ଲାଗିରହି ସ୍ତନାଗ୍ର ରୂପରେ ଶୋଭା ପାଇଲା ।

୪୧ । ବାସରେ—ବସ୍ତ୍ରରେ । ଚୋଳ-କବଚ—ଚୋଳ ରୂପକ ସାଞ୍ଜୁ । ବାସଅଙ୍ଗୀ—ଯାହାର ଶରୀର ସୁଗନ୍ଧିତ (ସୀତା) । ସ୍ମରଭୟ—କନ୍ଦର୍ପର ଭୟ । ରତି ସେବନେ—କନ୍ଦର୍ପର ସ୍ତ୍ରୀ ରତିକୁ ସେବା କରିବା ପାଇଁ (ଅନ୍ୟ ପକ୍ଷରେ—ଉପଯୁକ୍ତ ନାୟକ ସହିତ ରତିକ୍ରୀଡ଼ା କରିବା ପାଇଁ) ।

କନ୍ଦର୍ପ ଭୟରୁ ସ୍ତନରୂପକ ଶମ୍ଭୁଙ୍କୁ ରକ୍ଷା କରିବା ନିମିତ୍ତ ସୌରଭାଙ୍ଗୀ ସୀତା ତାହାକୁ (ସ୍ତନକୁ) ଚୋଳ ରୂପକ କବଚ (ସାଞ୍ଜୁ) ଦ୍ୱାରା ଆଚ୍ଛାଦନ କଲେ ଏବଂ ତା ଉପରେ ଯତ୍ନର ସହିତ ବସ୍ତ୍ର ଘୋଡ଼ାଇ ଦେଲେ । ପୁନଶ୍ଚ (କନ୍ଦର୍ପକୁ ସନ୍ତୁଷ୍ଟ କରାଇବା ପାଇଁ ତାର ସ୍ତ୍ରୀ) ରତିକୁ ସେବା କଲେ (ଅର୍ଥାତ୍, ଉପଯୁକ୍ତ ନାୟକ ସହିତ ରତିକ୍ରୀଡ଼ା ନିମିତ୍ତ ଇଚ୍ଛା ପ୍ରକାଶ କଲେ) ।

ବନଧବକୁ ସେ ଜିଣିଲା କଟୀ କୃଶତା ହୋଇ
ବନଧରକେଶୀ କଂକଣୀ ଜୟବାଦ୍ୟ ବଜାଇ । ୪୨ ।
ବଳା ହଂସକ ନାଦେ ଗତି ବଢ଼ାଇକି ଶୁଣାଇ
ବଳାତ୍କାରେ ମନ୍ଦ ସରଣେ ଗଜହଂସ ଜିଣାଇ । ୪୩ ।
ବାରଣ ବୃକ୍ଷ ଗର୍ବ ଖର୍ବ କଲା ଉରୁ ଧାପିତ
ବାରଣଦନ୍ତ କୁନ୍ଦ ସ୍ତମ୍ଭ କି କୁଙ୍କୁମ ଲେପିତ । ୪୪ ।
ବାହୁ ଶୋଭା ଗୃହି ମୃଣାଳ କଣ୍ଟକକୁ ବହିଲା
ବାହୁଟୀ ତାଡ଼ରେ ଜାଣିଲି ସେ ତେଜାକୁ ପାଇଲା । ୪୫ ।

୪୨ । ବନଧବ—ସିଂହ । କଟୀକୃଶତା—ଅଣ୍ଟାର କ୍ଷୀଣତା । ବନଧରକେଶୀ—ମେଘଭଳି କୃଷ୍ଣବର୍ଣ୍ଣର କେଶ ଯାହାର (ସୀତା) ।

କୃଷ୍ଣକେଶୀ ସୁନ୍ଦରୀ ସୀତା ଅଣ୍ଟାର କୃଶତାରେ ସିଂହକୁ ଜିଣିଗଲେ । ସେ ଚାଲିଲା ବେଳେ କଟୀର କଂକଣୀ ଶବ୍ଦ ଶୁଣି ମନେ ହେଉଥିଲା, ସତେ ଯେପରି ସିଂହକୁ ଜିଣିଥିବାରୁ ସେ ଜୟବାଦ୍ୟ ବଜାଉଛନ୍ତି ।

୪୩ । ବଳା—ପାଦରେ ପିନ୍ଧିଥିବା ବଳା । ହଂସକ—ପାହୁଡ଼ । ଗତି ବଢ଼ାଇ—ଚାଲିବା ଭଙ୍ଗୀର ବଡ଼ିମା । ମନ୍ଦ ସରଣେ—ଧୀରେ ଧୀରେ ଚାଲିବାରେ ।

ସୀତା ପାଦରେ ଯେଉଁ ବଳା ଓ ପାହୁଡ଼ ପିନ୍ଧିଥିଲେ, ଚାଲିଲା ବେଳେ ସେଥିରୁ ଯେଉଁ ଶବ୍ଦ ସୃଷ୍ଟି ହେଉଥିଲା, ତହିଁରୁ ପ୍ରତୀତ ହେଉଥିଲା, ସତେ ଯେପରି ସେ ନିଜ ଗତିର ବଡ଼ିମା ତାହା ମାଧ୍ୟମରେ ପ୍ରକାଶ କରୁଥିଲେ । ସେ ଧୀରେ ଧୀରେ ଚାଲିଲାବେଳେ ବଳେ ବଳେ ହାତୀର ମନ୍ଥର ଗତି ଓ ହଂସର ମନ୍ଦ ଗମନକୁ ଜିଣି ଯାଉଥିଲେ ।

୪୪ । ବାରଣବୃକ୍ଷ—କଦଳୀଗଛ । ଉରୁ—ଜଙ୍ଘ । ବାରଣଦନ୍ତକୁନ୍ଦସ୍ତମ୍ଭ—ହାତୀଦାନ୍ତରେ କୁନ୍ଦାଯାଇଥିବା ସ୍ତମ୍ଭ ।

ସୀତାଙ୍କର ଦୁଇଟି ଜଙ୍ଘ କଦଳୀ ଗଛର ଗର୍ବ ଖର୍ବକାରୀ ଧାପ୍ରିମନ୍ତ ହେଉଥିଲା (ନାରୀମାନଙ୍କ ଜଙ୍ଘକୁ ଓଲଟ କଦଳୀ ବୃକ୍ଷ ସହିତ ତୁଳନା କରାଯାଇଥାଏ) । ତାହାକୁ (ଉକ୍ତ ଜଙ୍ଘକୁ) ଦେଖି ମନେ ହେଉଥିଲା, ସତେ ଯେପରି କୁନ୍ଦାହୋଇଥିବା (ମସୃଣ ହୋଇଥିବା) ହାତୀଦାନ୍ତର ଖମ୍ବରେ କୁଙ୍କୁମ ଲେପନ କରାଯାଇଛି ।

୪୫ । ମୃଣାଳ—ପଦ୍ମନାଡ଼ । କଣ୍ଟକ—କଣ୍ଟା । ବାହୁଟୀ—ବାହୁର ଅଲଙ୍କାର ବିଶେଷ । ତାଡ଼ରେ—'ତାଡ଼' ନାମକ ଅଲଙ୍କାର ଦ୍ୱାରା ।

ସୀତାଙ୍କ ବାହୁର ଶୋଭା ଦେଖି ମୃଣାଳ (ଅପମାନ ହେତୁ) କଣ୍ଟକ ଧାରଣ କଲା । ସେ ବାହୁରେ ବାହୁଟୀ ଓ ତାଡ଼ ପିନ୍ଧିବାରୁ ଏହି ଉଭୟ ଅଲଙ୍କାର ବାହୁଦ୍ୱୟକୁ ପୂଜା କଲା ପରି ପ୍ରତୀତ ହେଲା ।

ବ୍ରହ୍ମାଣ୍ଡରେ ନାହିଁ ସେ ବସ୍ତୁ ତୁଲ କହିବା ତର୍କେ
ବ୍ରହ୍ମା ତେଣୁ ଦେଲେ ଅତୁଲ କରି ନାମ କଟକେ । ୪୬ ।
ବିଭୂଷଣ ଭୂଷା-ନିଚୟ ସବୁ ସୁନ୍ଦରୀଙ୍କରେ
ବିଭୁ ଶ୍ରୀ ଜାନକୀ ଅତୁଲ ତାଙ୍କୁ ଆମ୍ଭେ ଏଠାରେ । ୪୭ ।
ବନ୍ଦିଆ ମଣ୍ଡନେ ଶ୍ରବଣେ ତାଳପତ୍ର ଘଉଡ଼ି
ବନ୍ଦିଆ ନୋହିବ କେ ଯିବ, ଯେଉଁ ନୟନେ ପଡ଼ି । ୪୮ ।
ବାଳୀ ଝଲକାଦି ସୁଫୁଲ ମଲ୍ଲୀକଢ଼ି ବିଶେଷେ
ବାଳୀ ଝଲକାଇ ଯେମନ୍ତ କହି ନୋହିବ ଶେଷେ । ୪୯ ।

---

୪୬ । ଅତୁଳ—'ଅତୁଳ' ନାମକ ଅଳଙ୍କାର କିମ୍ବା ଯାହାର ତୁଳନା ନାହିଁ । କଟକେ—ହାତରେ ପିନ୍ଧିଥିବା ବଳାକୁ ।

ସୀତାଙ୍କର ହାତ ଏତେ ସୁନ୍ଦର ଯେ, ବିଶ୍ୱବ୍ରହ୍ମାଣ୍ଡରେ ତାହାର ଆଉ ତୁଳନା ନାହିଁ । ତେଣୁ ମନରେ ଏହି ଯଥାର୍ଥ ଅନୁମାନ ଜାତହୁଏ ଯେ, ସେ ହାତରେ ଯେଉଁ ଅଳଙ୍କାର (ଅତୁଳ) ପିନ୍ଧିଥିଲେ, ବିଧାତା ଯଥାର୍ଥରେ ତାହାର ନାମ 'ଅତୁଳ' ରଖିଲେ (ଅର୍ଥାତ୍, ଯାହାର ତୁଳ ବା ତୁଳନା ନାହିଁ) ।

୪୭ । ବିଭୂଷଣ—ଯାହାଦ୍ୱାରା ସୌନ୍ଦର୍ଯ୍ୟ ବଢ଼ିଥାଏ । ଭୂଷାନିଚୟ— ଅଳଙ୍କାରସମୂହ । ବିଭୁ—ପ୍ରଭୁ । ଅତୁଳ— ଅସମାନ, ଊଣା ।

ପୃଥିବୀର ସୁନ୍ଦରୀ ନାରୀମାନେ ବିଭିନ୍ନ ଅଳଙ୍କାର ପିନ୍ଧନ୍ତି । କାରଣ, ତାହାଦ୍ୱାରା ସେମାନଙ୍କର ସୌନ୍ଦର୍ଯ୍ୟ ବୃଦ୍ଧି ପାଏ । ମାତ୍ର ସୀତା ଯେଉଁ ଅଳଙ୍କାର ପିନ୍ଧିଥିଲେ, ସେହି ଅଳଙ୍କାରସମୂହ ଅନୁଭବ କଲେଯେ, ସେମାନେ ସୀତାଙ୍କର ସୌନ୍ଦର୍ଯ୍ୟ ବଢ଼ାଉନାହାନ୍ତି । ବରଂ ପରମା ସୁନ୍ଦରୀ ସୀତା ସେମାନଙ୍କର ପ୍ରଭୁ ସ୍ୱରୂପା ଏବଂ ସେମାନେ ସୀତାଙ୍କ ସୌନ୍ଦର୍ଯ୍ୟର ସମକକ୍ଷ ହୋଇପାରିବେ ନାହିଁ ।

୪୮ । ବନ୍ଦିଆ—ଅଳଙ୍କାର ବିଶେଷ । ଶ୍ରବଣେ— କାନରେ । ତାଳପତ୍ର—ଅଳଙ୍କାର ବିଶେଷ । ଘଉଡ଼ି—ବାହାର କରିଦେଇ । ବନ୍ଦିଆ—ବନ୍ଦୀ ।

ସୀତା ନିଜର କର୍ଣ୍ଣରେ ପିନ୍ଧିଥିବା 'ତାଳପତ୍ର' ନାମକ ଅଳଙ୍କାରକୁ ବାହାର କରି ତାହାର ସ୍ଥାନରେ 'ବନ୍ଦିଆ' ନାମକ ଅନ୍ୟ ଏକ ଅଳଙ୍କାର ଧାରଣ କଲେ । ସେହି ବନ୍ଦିଆ ଉପରେ ଯାହାର ଦୃଷ୍ଟି ଥରେ ପଡ଼ିଯିବ, ସେହି ସୌନ୍ଦର୍ଯ୍ୟରେ ତାହା (ଚକ୍ଷୁ) ନିଶ୍ଚିତ ଭାବରେ ବନ୍ଦୀ ହୋଇ ରହିବ (ଅର୍ଥାତ୍, ତାହାର ଦୃଷ୍ଟି ଅନ୍ୟ ଆଡ଼କୁ ଯିବନାହିଁ) ।

୪୯ । ବାଳୀ —ବାଳୀଗୁଣା । ଝଲକା—ଅଳଙ୍କାର ବିଶେଷ । ସୁଫୁଲ—କାନଫୁଲ । ମଲ୍ଲୀକଢ଼ି —କାନର ଅଳଙ୍କାର ବିଶେଷ । ବାଳୀ—ସୀତା । ଶେଷେ—ଶେଷଦେବଙ୍କ ଦ୍ୱାରା ।

ବନ୍ଧା ସୁମନରେ ଜୁଡ଼ା ସେ ଧୈର୍ଯ୍ୟ ଉଜୁଡ଼ା ସେହି
ବନ୍ଧା ସୁମନକୁ ପକାଇ ନେବ କେ ମୁକୁଳାଇ । ୫୦ ।
କଟାକ୍ଷେ ଚଞ୍ଚଳ ଈକ୍ଷଣ ବାଣ ସେ ଗତାଗତ
ଲକ୍ଷେ ସେ ଯୁକ୍ତ କି ଅଞ୍ଜନେ ଯେଣୁ ଅତି ଜ୍ୱଳିତ । ୫୧ ।
ବାଜିବାରୁ ଭୟେ କୁରଙ୍ଗ ମୀନ ବନେ ପଳାଇ
ବାଜୀବାର ଗତାଗତ ସେ ଗତି ଶିଖିବା ପାଇଁ । ୫୨ ।
ବର୍ତ୍ତୁଳ ମୁକୁତା ଚଳିତ ନାସାପୁଡ଼ା ସେ ଫୁଲେ
ବର୍ତ୍ତୁକେ ତା ଗୃହୀ ଆଜନ୍ମ ବ୍ରହ୍ମଚାରୀ ହୋଇଲେ । ୫୩ ।

---

ସୀତା କର୍ଣ୍ଣରେ ବଳୀଗୁଣା, ଝଲକା, କାନଫୁଲ ଓ ମଲ୍ଲୀକଢ଼ି ପ୍ରଭୃତି ଅଳଙ୍କାର ଧାରଣ କରିବାଦ୍ୱାରା ଯେଉଁପରି ସୁନ୍ଦର ଦେଖାଗଲେ, ତାହା ଶେଷଦେବଙ୍କ ଦ୍ୱାରା (ସହସ୍ର ମୁଖରେ) ମଧ୍ୟ ବର୍ଣ୍ଣିତ ହେବା କଷ୍ଟକର ।

୫୦ । ସୁମନ –ଫୁଲ । ବନ୍ଧା ସୁମନକୁ—ବନ୍ଧା ହୋଇଥିବା ଉତ୍ତମ ମନକୁ ।

ନାନାପ୍ରକାର ଫୁଲଦ୍ୱାରା ମଣ୍ଡିତ ତାହାଙ୍କ ମସ୍ତକର ଜୁଡ଼ା ଦର୍ଶକମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟାଇଥାଏ । ଦର୍ଶକମାନଙ୍କର ମନ ଏହି ଜୁଡ଼ାର ସୌନ୍ଦର୍ଯ୍ୟ ନିକଟରେ ବନ୍ଧା ପଡ଼ିଯାଏ ଏବଂ ଏହି ବନ୍ଧା ପଡ଼ିଥିବା ମନକୁ କେହି ହେଲେ ମୁକୁଳାଇ ନେବା କଷ୍ଟକର ।

୫୧ । ଈକ୍ଷଣ—ନେତ୍ରଗୁଳିକା । ଜ୍ୱଳିତ—ଦୀପ୍ତିମନ୍ତ ।

ତାହାଙ୍କର ଚକ୍ଷୁ ବାଣତୁଲ୍ୟ ଅତି ଚଞ୍ଚଳ ଇତସ୍ତତଃ ଦୃଷ୍ଟିପାତ କରୁଥିଲା । ତାହା ଅଞ୍ଜନ ରଞ୍ଜିତ ହୋଇ ଅତି ଦୀପ୍ତିମନ୍ତ ଦେଖାଯାଉଥିବାରୁ ଶରରେ ବିଷ ବୋଳା ହେଲାପରି ପ୍ରତୀତ ହେଉଥିଲା ।

୫୨ । କୁରଙ୍ଗ—ହରିଣ । ମୀନ—ମାଛ । ବନେ—ବଣକୁ, ଜଳକୁ । ବାଜୀବାର—ଘୋଡ଼ା-ସମୂହ ।

ତାଙ୍କର କଜ୍ଜ୍ୱଳ ରୂପକ ବିଷ ବୋଳା ଯାଇଥିବା ଦୃଷ୍ଟି ରୂପକ ଶର ନିଜ ଦେହରେ ବାଜିଯିବା ଭୟରେ ମୃଗମାନେ ବଣରେ ଓ ମାଛମାନେ ଜଳରେ ପଶି ଆତ୍ମଗୋପନ କଲେ । ପୁନଶ୍ଚ ତାହାଙ୍କ ନେତ୍ରଗତିରୁ ଚଞ୍ଚଳତା ଶିକ୍ଷା କରିବା ନିମିତ୍ତ ଘୋଡ଼ାମାନେ ଯାତାୟାତ ହେଉଥିଲେ ।

୫୩ । ବର୍ତ୍ତୁଳ—ଗୋଲକାର । ନାସାପୁଡ଼ା—ନାକପୁଡ଼ା । ବର୍ତ୍ତୁ—ନିବୃତ୍ତ ହେଉ ।

ନିଃଶ୍ୱାସ ନେବା ଓ ରହସ୍ୟପୂର୍ଣ୍ଣ କଥାବାର୍ତ୍ତା ବେଳେ ସୀତାଙ୍କର ନାସାପୁଡ଼ା ଫୁଲି ଉଠୁଥିଲା ଏବଂ ତହିଁରେ ଥିବା ଗୋଲକାର ମୁକ୍ତା ମଧ୍ୟ ଦୋହଲୁଥିଲା । କେଣେ

ବନ୍ଧୁ କରିବାର ଇଚ୍ଛିଲା ଯେଣୁ ଅଧର ତୁଲେ
ବନ୍ଧୁକ ନାମହିଁ ରହିଲା ତେଣୁ ରକ୍ତକ ଫୁଲେ । ୫୪ ।
ବଧୂଲି ଅଧର ବୋଲିବା ଯୁକ୍ତ ଅର୍ଥରେ ଆନ
ବଧୂକରେ ତହିଁ ଉପରେ ହାସ ପ୍ରକାଶମାନ । ୫୫ ।
ବିଭର୍ତ୍ତି ମୋତିପନ୍ତି ଦନ୍ତ ଓଷ୍ଠ ମାଣିକ୍ୟ ପାତେ
ବିଭବ ଶୋଭାର କେ କହୁ ଯେ ବଚନ ବଚନେ । ୫୬ ।
ବିଭୂଷଣ ନାନା ପ୍ରକାରେ ଯେତେ କରନ୍ତି ନିତ
ବିଭୂଷଣ ହେବ ତହିଁକି ଧରେ ସୁନ୍ଦରୀ ଜ୍ୟୋତ । ୫୭ ।

---

ଆଜନ୍ମ ବ୍ରହ୍ମଚାରୀ ହୋଇ ମଧ୍ୟ ସେହି ନାୟିକାର ସୌନ୍ଦର୍ଯ୍ୟ ଦେଖିବା ମାତ୍ରେ ସେଥିରୁ ନିବୃତ୍ତ ହେବା ଅସମ୍ଭବ ।

୫୪ । ବନ୍ଧୂକ—ବଧୂଲି ଫୁଲ ( ଯାହା ଲାଲବର୍ଣ୍ଣ) । ରକ୍ତକ ଫୁଲ – ବଧୂଲି ଫୁଲ ।
ଲାଲବର୍ଣ୍ଣ ବଧୂଲି ଫୁଲ ସୀତାଙ୍କ ଅଧର ସହିତ (ରକ୍ତିମାରେ ସମାନ ନ ହୋଇ) ବନ୍ଧୁତ୍ୱ ସ୍ଥାପନ କରିବାକୁ ଇଚ୍ଛା ପ୍ରକାଶ କଲା । ଏହି କାରଣରୁ ବଧୂଲି ଫୁଲର ଅନ୍ୟନାମ 'ବନ୍ଧୂକ' ଫୁଲ ହେଲା ।

୫୫ । ବଧୂ—ସୀତା । ଯୁକ୍ତ ଅର୍ଥରେ ଆନ— ଅନ୍ୟ ଅର୍ଥରେ ଯୁକ୍ତିଯୁକ୍ତ ।
ସୀତାଙ୍କ ଅଧରକୁ 'ବଧୂଲି ଅଧର' କୁହାଯାଏ । ଏଥିରୁ ବୁଝିବାକୁ ହେବନାହିଁ ଯେ, ବଧୂଲି ଫୁଲ ପରି ତାଙ୍କର ଅଧର ହୋଇଥିବାରୁ ଏପରି (ବଧୂଲି ଅଧର) କୁହାଯାଇଥାଏ । ଅନ୍ୟପ୍ରକାରେ ଏହାର ଯୁକ୍ତିଯୁକ୍ତତା ବିଚାର କରାଯାଏ । ପ୍ରକୃତ ପକ୍ଷରେ କହିବାକୁ ଗଲେ, ବଧୂଲି ଫୁଲ ସୀତାଙ୍କର ନିମ୍ନ ଓଷ୍ଠଠାରୁ ଅଧର ବା ନିମ୍ନସ୍ଥାନୀୟ । ସୁତରାଂ ତାହାଙ୍କର ଅଧର ବଧୂଲି ଫୁଲକୁ ଉପହାସ କରେ ।

୫୬ । ବିଭର୍ତ୍ତି—ବିଶେଷ ଭାବରେ ଭର୍ତ୍ତି ବା ପୂର୍ଣ୍ଣ ହୋଇ ଯାଇଛି । ବିଭବ—ଉତ୍କର୍ଷ ।
(ସୀତା ହାସ ପ୍ରକାଶ କରିବା ସମୟରେ ମନେହୁଏ) ତାହାଙ୍କର ଓଷ୍ଠ ରୂପକ ମାଣିକ୍ୟ ପାତରେ ଦନ୍ତ ରୂପକ ମୁକ୍ତାପନ୍ତି ପରିପୂର୍ଣ୍ଣ ହୋଇ ରହିଛି । ସେହି ଓଷ୍ଠର ସୌନ୍ଦର୍ଯ୍ୟ କିଏ ଅବା ବର୍ଣ୍ଣନା କରିପାରିବ ? ଏପରିକି ଅତି ସୁନ୍ଦର ଚିତ୍ର ଆକାରରେ ମଧ୍ୟ ତାହାର ସୌନ୍ଦର୍ଯ୍ୟ ଫୁଟାଇବା କଷ୍ଟକର ।

୫୭ । ବିଭୂଷଣ—ବିଭିନ୍ନ ଅଲଙ୍କାର ଦ୍ୱାରା ମଣ୍ଡିତ ହେବା
ସୀତା ପ୍ରତିଦିନ ଯେଉଁ ବିଭିନ୍ନ ଅଲଙ୍କାର ଧାରଣ କରନ୍ତି, ତଦ୍ୱାରା ତାହାଙ୍କ ଅଙ୍ଗକାନ୍ତିର ସମ୍ପର୍କରେ ଆସି ସେହି ଅଲଙ୍କାରସମୂହ ମଣ୍ଡିତ ହେଲା ପରି ଦେଖାଯାଆନ୍ତି ।

ବଦନରେ ଚନ୍ଦ୍ର ଦର୍ପଣ ପଦ୍ମ ନଉଞ୍ଚାଇବା
ବଦନରେ ଏହି ଉକ୍ତିକ ଆନ କି ଲକ୍ଷ୍ୟ ଦେବା । ୫୮ ।

ବରବର୍ଣ୍ଣିନୀ ରସଲତା ନବ ପୁଷ୍ପବତୀ ସେ
ବରଣ କରିବା ଜନକ କହେ ଯତୀଙ୍କ ପାଶେ । ୫୯ ।

ବାଚଲେ ବାଳ୍ମୀକି ଟେକିବ ଯେହୁ ଶିବଚାପକୁ
ବାରିଜଗନ୍ଧାକୁ ପ୍ରଦାନ ନିଶ୍ଚେ କରିବା ତାକୁ । ୬୦ ।

ବୋଧ ଜନକ ହୃଦଧରି ସ୍ୱୟମ୍ବର ରଚିତ
ବୋଧକର ମୁଖେ ବିଖ୍ୟାତ ନୃପଗଣେ ଆଗତ । ୬୧ ।

---

୫୮ । ବଦନରେ—ମୁଖରେ । ନଉଞ୍ଚାଇବା—ବଳାଇବା । ବଦ ନରେ—ହେ ଲୋକମାନେ ! କୁହ ।

ସୀତାଙ୍କ ମୁଖକୁ ଚନ୍ଦ୍ର, ଦର୍ପଣ ଓ ପଦ୍ମ ବନ୍ଦନା କରିବା ଯୋଗ୍ୟ ଅଟନ୍ତି । (କାରଣ, ତାହାଙ୍କର ମୁଖରେ ଚନ୍ଦ୍ରର ଆହ୍ଲାଦ ଗୁଣ, ଦର୍ପଣର ଉଜ୍ଜ୍ୱଳତା ଏବଂ ପଦ୍ମର ସୁବାସ ଏକତ୍ର ଅବସ୍ଥାନ କରନ୍ତି) । ଏହି କାରଣରୁ ହେ ପାଠକ ବର୍ଗ ! ଆପଣମାନେ କୁହନ୍ତୁ, ଉକ୍ତ ଚନ୍ଦ୍ର, ଦର୍ପଣ ଓ ପଦ୍ମ ହୀନ ବୋଲି ପ୍ରତିପାଦିତ ହେବା ପରେ ସୀତାଙ୍କ ମୁଖ ସହିତ ଆଉ କାହାକୁ ଅବା ତୁଳନା କରିବା ?

୫୯ । ବରବର୍ଣ୍ଣିନୀ—କୁଙ୍କୁମର ବର୍ଣ୍ଣ ପରି ବର୍ଣ୍ଣ ଯାହାର । ରସଲତା—ରସବତୀ । ନବପୁଷ୍ପବତୀ—ନୂତନ ଯୁବତୀ । ଯତୀ—ଋଷି ।

କୁଙ୍କୁମବର୍ଣ୍ଣୀ ଓ ଅତ୍ୟନ୍ତ ରସମୟୀ ସୀତା ଯୁବତୀ ହୋଇଗଲେଣି । ତେଣୁ ତାଙ୍କର । ବିବାହ ନିମିତ୍ତ 'ରାଜକୁମାରମାନଙ୍କୁ ବରଣ କରିବା' ବୋଲି ଜନକ ଋଷିମାନଙ୍କ ସମକ୍ଷରେ କହିଲେ ।

୬୦ । ବାଚଲେ—କହିଲେ । ଶିବଚାପ—ଶିବଧନୁ । ବାରିଜଗନ୍ଧା—ପଦ୍ମଗନ୍ଧା (ସୀତା) । (ଜନକଙ୍କ ଉକ୍ତି ଶୁଣି) ବାଳ୍ମୀକି କହିଲେ, "ଯେଉଁ ରାଜକୁମାର ଶିବଧନୁରେ ଟେକି ପାରିବ, ସୀତାଙ୍କୁ ତାହା ହସ୍ତରେ ହିଁ ନିଶ୍ଚିତ ଭାବରେ ଅର୍ପଣ କରିବା ।

୬୧ । ବୋଧ—ବୁଝିବା । ବୋଧକର—ଭାଟ ।

ବାଳ୍ମୀକିଙ୍କ କଥା ଜନକ ହୃଦୟଙ୍ଗମ କରି ସେଥିରେ ସମ୍ମତ ହେଲେ ଏବଂ ସ୍ୱୟମ୍ବର ବ୍ୟବସ୍ଥା କଲେ । ସେ ବିଖ୍ୟାତ ଭାଟମାନଙ୍କ ଦ୍ୱାରା ଖ୍ୟାତନାମା ରାଜାମାନଙ୍କୁ ନିମନ୍ତ୍ରଣ ପୂର୍ବକ ଆଣାଇଲେ ।

ବାସ କରନ୍ତୁ ସେହି ସୀତାଲୀଳା ସଦା ମୋ ହୃଦ
ବାଷଠି ପଦେ,ଉପଇନ୍ଦ୍ର ଭଞ୍ଜ କହେ ଏ ଛାନ୍ଦ । ୬୨ ।

---

୬୨ । ସୀତାଲୀଳା—ସୀତାଙ୍କର ଲୀଳା ।

କବି ଉପେନ୍ଦ୍ର ଭଞ୍ଜ ବାଷଠି ପଦରେ ଏହି ଛାନ୍ଦ ଶେଷ କରିବାକୁ ଯାଇ କହୁଛନ୍ତି—ସେହି ସୀତାଙ୍କର ଲୀଳା ସବୁବେଳେ ମୋର ହୃଦୟରେ ସ୍ଥାନ ଲଭିକରୁ ।

# ଚତୁର୍ଥ ଛାନ୍ଦ

ରାଗ—ମାଳବ ଗୌଡ଼ା

ବୁଦ୍ଧି ଉତ୍ତମ ଯାହାର କାବ୍ୟ ଅଭିଧାନେ
ବୃଜିନନାଶ ଚରିତ ଶୁଣ ସାବଧାନେ ହେ । ୧ ।
ବୃଷ୍ଟିହୀନ ଦ୍ୱାଦଶ ବରଷ ଚମ୍ପାବତୀ
ବଡ଼ ଚିନ୍ତା ଲଭି ଲୋମପାଦ ନରପତି ଯେ । ୨ ।
ବରଷା କରିବ ଋଷ୍ୟଶୃଙ୍ଗ ଆଗମନେ
ବ୍ରହ୍ମଜ୍ଞାନ ପର ଯେନ ଯୋଗୀନ୍ଦ୍ର ସମାନେ ଯେ । ୩ ।
ବୁଲାଇ ନିଜ ନଗରେ ପଞ୍ଚରତ୍ନ ଥାଳୀ
ବଜ୍ର ଧରି ଶତମନ୍ୟୁ ପରାଯ୍ସେ ଝଳି ଯେ । ୪ ।

---

୧ । ବୃଜିନ—ପାପ । ବୃଜିନନାଶ ଚରିତ—ପାପକ୍ଷୟକାରୀ (ଶ୍ରୀରାମଚନ୍ଦ୍ରଙ୍କ) ଚରିତ ।
କାବ୍ୟ ଓ ଅଭିଧାନରେ ଯେଉଁମାନଙ୍କର ଗଭୀର ପ୍ରବେଶ ରହିଛି, ସେହି ସହୃଦୟ ପାଠକଗଣ ମନଯୋଗ ସହକାରେ ଏହି ପାପକ୍ଷୟକାରୀ (ଶ୍ରୀରାମ) ଚରିତ ଶ୍ରବଣ କର ।

୨ । ବୃଷ୍ଟିହୀନ—ବର୍ଷା ନହେବାରୁ ।
ଚମ୍ପାବତୀ ନଗରୀରେ ବାରବର୍ଷ ପର୍ଯ୍ୟନ୍ତ ବର୍ଷା ନହେବାରୁ ସେହି ଦେଶର ରାଜା ଲୋମପାଦ ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଲେ ।

୩ । ବ୍ରହ୍ମଜ୍ଞାନ—ପରଂବ୍ରହ୍ମ ସମ୍ପର୍କୀୟ ଜ୍ଞାନ । ଯୋଗୀନ୍ଦ୍ର—ଯୋଗୀଶ୍ରେଷ୍ଠ ।
(ରାଜା ବ୍ରାହ୍ମଣମାନଙ୍କ ମୁଖରୁ ଶୁଣିବାକୁ ପାଇଲେ ଯେ) ସେହି ଦେଶକୁ ଋଷ୍ୟଶୃଙ୍ଗ ଆସିଲେ ବର୍ଷା ହେବ । ଯୋଗୀମାନେ ବ୍ରହ୍ମଜ୍ଞାନକୁ ସତ୍ୟରୂପେ ଗ୍ରହଣ କଲାପରି ରାଜା ବ୍ରାହ୍ମଣମାନଙ୍କର ଏହି ଉପଦେଶକୁ ହୃଦୟରେ ଗ୍ରହଣ କଲେ ।

୪ । ପଞ୍ଚରତ୍ନ ଥାଳୀ—ହୀରା, ନୀଳା ପ୍ରଭୃତି ପାଞ୍ଚପ୍ରକାର ରତ୍ନଥିବା ଥାଳୀ । ବଜ୍ର—ହୀରା । ଶତମନ୍ୟୁ—ଇନ୍ଦ୍ର ।
ରାଜା ନିଜ ନଗରରେ ପଞ୍ଚରତ୍ନର ଏକ ଥାଳୀ ବୁଲାଇଲେ । (ଉଦ୍ଦେଶ୍ୟ ଥିଲା—ଯେଉଁ ବ୍ୟକ୍ତି ଋଷ୍ୟଶୃଙ୍ଗଙ୍କୁ ଆଣିଦେବ, ସେ ସେହି ଥାଳୀକୁ ଉପହାର ସ୍ୱରୂପ ଲାଭ କରିବ) ଇନ୍ଦ୍ର ଯେଉଁପରି ବଜ୍ରାସ୍ତ୍ର ଦ୍ୱାରା ଶୋଭା ପାଉଥିଲେ, ସେହି ଥାଳୀ ସେହିପରି ହୀରଦ୍ୱାରା ଦୀପ୍ତିମନ୍ତ ହୋଇଉଠୁଥିଲା ।

ବିକାଶରେ ପଦ୍ମରାଗ ସବିତା ପ୍ରଭବ
ବହନ୍ତି ସେ ମାରକତ ହୋଇ ରତିଶୋଭ ଯେ । ୫ ।
ବିଦ୍ରୁମେ ମହା ଉଜ୍ଜ୍ୱଳ ଅଟବୀ ସଦୃଶ
ବହି ଗର୍ଭେ ମୋତି ଶୁକ୍ତି, ଏ ବିବିଧ ଶ୍ଳେଷ ଯେ । ୬ ।
ବେଶ୍ୟାସାର କରତା ତା ରତା ହୋଇ ନେଲ
ବନୁ ଆଜନ୍ମ ତପସ୍ୱୀ ଆଣିବ ବୋଇଲ ଯେ । ୭ ।
ବୃଷଭ ଗୋଡ଼ାଇ ଧେନୁ ପଛରେ ଯେମନ୍ତ
ବେଦାଧ୍ୟୟନ ଛଡାଇ ଆଣିବ ତେମନ୍ତ ଯେ । ୮ ।

---

୫ । ପଦ୍ମରାଗ—ପଦ୍ମରାଗମଣି । ସବିତା—ସୂର୍ଯ୍ୟ । ମାରକତ—ମର୍କତମଣି । ରତି—କନ୍ଦର୍ପର ସ୍ତ୍ରୀ ।

ସେହି ଥାଳୀ ପଦ୍ମରାଗମଣି ଧାରଣ କରିଥିବାରୁ ତାହା ସୂର୍ଯ୍ୟ ସଦୃଶ ଦେଖାଯାଉଥିଲା । (କାରଣ, ସୂର୍ଯ୍ୟଙ୍କ ଦ୍ୱାରା ପଦ୍ମଫୁଲର ରାଗ ବା ସୌନ୍ଦର୍ଯ୍ୟ ପ୍ରକାଶ ପାଏ । ଅତଏବ ଏହି ଥାଳୀରେ 'ପଦ୍ମରାଗ' ଥିବାରୁ ତାହା ସୂର୍ଯ୍ୟଙ୍କ ପ୍ରଭା ପ୍ରକାଶ କରୁଥିଲା ।) ପୁନଶ୍ଚ ସେଥିରେ ମର୍କତମଣି ଥିବାରୁ ତାହା ରତିଙ୍କ ଶୋଭା ପ୍ରକଟ କରୁଥିଲା (ମାର=କନ୍ଦର୍ପ, କତ= ନିକଟରେ—ଏହା ହେଉଛି 'ମାରକତ' ଶବ୍ଦର ବ୍ୟାଖ୍ୟାନ । ମାର ବା କନ୍ଦର୍ପର କତ ବା ନିକଟରେ ରତି ରହିଥାଏ । ଏହି କାରଣରୁ କବି ଏଠାରେ 'ମାରକତ'ରୁ 'ରତି'ର କଳ୍ପନା କରିଛନ୍ତି) ।

୬ । ବିଦ୍ରୁମ—ପୋହଳା, ବିଶେଷ ଦ୍ରୁମ (ବୃକ୍ଷ) । ଅଟବୀ—ବଣ । ମୋତି—ମୁକ୍ତା । ଶୁକ୍ତି—ଶାମୁକା ।

ବନ ମଧ୍ୟରେ ବିଶେଷ ଦ୍ରୁମ (ବିଦ୍ରୁମ) ଥାଏ ଏବଂ ଉକ୍ତ ଥାଳୀରେ ବିଦ୍ରୁମ (ପ୍ରବାଳ) ଥିବାରୁ ତାହା ବନସଦୃଶ ପ୍ରତୀତ ହେଉଥିଲା । ପୁନଶ୍ଚ ଶାମୁକା ଗର୍ଭରେ ମୋତି ଥାଏ । ସେହି ଥାଳୀରେ ମୋତି ଥିବାରୁ ତାହା ଶାମୁକା ପରି ପ୍ରତୀତ ହେଉଥିଲା । ଏହିପରି ଭାବରେ ଏହି ପଦଗୁଡ଼ିକରେ ଅଭଙ୍ଗ, ସଭଙ୍ଗ ଓ ଭଙ୍ଗାଭଙ୍ଗ—ଏହି ତିନିପ୍ରକାର ଶ୍ଳେଷ ଅଳଙ୍କାର ପ୍ରୟୋଗ କରାଯାଇଛି ।

୭ । ବେଶ୍ୟାସାର—ସର୍ବଶ୍ରେଷ୍ଠ ବେଶ୍ୟା । ରତା—ଅନୁରାଗ ।

ସେହି ନଗରୀର ସର୍ବଶ୍ରେଷ୍ଠ ବେଶ୍ୟା କରତା ବଡ଼ ଅନୁରାଗ ପ୍ରକାଶ ପୂର୍ବକ ସେହି ଥାଳୀକୁ ନେଲା ଏବଂ ବନ ମଧ୍ୟରୁ ଆଜନ୍ମ ତପସ୍ୱୀ ଋଷ୍ୟଶୃଙ୍ଗଙ୍କୁ ଆଣିଦେବ ବୋଲି କହିଲା ।

୮ । ବୃଷଭ—ଷଣ୍ଢ । ଧେନୁ—ଗାଈ ।

କରତା କହିଲା—ଷଣ୍ଢ ଯେଉଁପରି (ପ୍ରେମପାଗଳ ହୋଇ) ଗାଈ ପଛରେ ଗୋଡ଼ାଏ, ସେହିପରି ଋଷ୍ୟଶୃଙ୍ଗଙ୍କୁ ବେଦପାଠରୁ ନିବୃତ୍ତ କରାଇ ଏଠାକୁ ଆଣିବି ।

ବର୍ଦ୍ଧକୀ ଡକାଇ ସଜଡ଼ାଇ ଦିବ୍ୟ ନାବ
ବେଶ୍ମପରି ମହା ମନୋରମା ହୋଇଥିବ ଯେ । ୯ ।
ବିବିଧ ପଦାର୍ଥ ଭର୍ତ୍ତି କରିଦିଅ ତହିଁ
ବନ ରଚନା ହିଁ ହୋଇଥିବ ଭୂପେ କହି ଯେ । ୧୦ ।
ବଚସ୍କର ନୃପତି ସାମନ୍ତେ ଭୃତ୍ୟ ପରି
ବାର ବାରନାରୀ ଗଲେ ଅନୁକୂଳ କରି ଯେ । ୧୧ ।
ବସିଲେ ତରଣୀ ଅଙ୍କେ ଛାୟାଦେବୀ ହୋଇ
ବିରାଜିବା ପୁଷ୍କର ଗମନେ ସେ ଯୋଗାଇ ଯେ । ୧୨ ।
ବିଖ୍ୟାତ ଉଡୁପ ନାମ ଯୁକ୍ତ ତାରାଳିରେ
ବ୍ୟଗ୍ରବନ୍ତ ଗତିକରେ ନଶିଦିବସରେ ଯେ । ୧୩ ।

---

୯ । ବର୍ଦ୍ଧକୀ—ବଢ଼େଇ । ବେଶ୍ମ ପରି—ଘର ପରି ।

ଜରତା କହିଲ—ବଢ଼େଇ ଡକାଇ ମୋ ପାଇଁ ଏକ ଦିବ୍ୟ ନୌକା ନିର୍ମାଣ କରାଇବ । ସେହି ନୌକା ଘର ପରି ଅତ୍ୟନ୍ତ ସୁନ୍ଦର ହୋଇଥିବ ।

୧୦ । ଭୂପେ—ରାଜାଙ୍କୁ ।

ଜରତା ରାଜାଙ୍କୁ ଆହୁରି କହିଲ—ସେହି ନୌକାରେ ବିଭିନ୍ନ ପ୍ରକାର ଦ୍ରବ୍ୟ ପୂର୍ଣ୍ଣ କରିଦିଅ ଏବଂ ସେଥିରେ ଗୋଟିଏ ସ୍ଥାନରେ ଏକ କୃତ୍ରିମ ବଣ ନିର୍ମାଣ କରାଇଥିବେ ।

୧୧ । ବଚସ୍କର—ଆଦେଶ ପାଳନକାରୀ । ସାମନ୍ତ—ପ୍ରଭୁ । ବାରନାରୀ—ବେଶ୍ୟା । ଅନୁକୂଳ କରି—ଯାତ୍ରା ଆରମ୍ଭ କରି ।

ଭୃତ୍ୟ ନିଜ ପ୍ରଭୁର ଆଦେଶ ପାଳନ କଲାପରି ରାଜା (ଲୋମପାଦ) ଜରତାର କଥା ଅନୁଯାୟୀ ସେହିପରି ଏକ ନୌକା ନିର୍ମାଣ କରାଇଲେ । ସେହି ନୌକାରେ ବସି ବାରଜଣ ବେଶ୍ୟା ଯାତ୍ରା ଆରମ୍ଭ କଲେ ।

୧୨ । ତରଣୀ—ନୌକା, ସୂର୍ଯ୍ୟ । ଛାୟା—ସୂର୍ଯ୍ୟଙ୍କ ପତ୍ନୀ । ପୁଷ୍କର—ଜଳ, ଆକାଶ ।

ଛାୟା ସୂର୍ଯ୍ୟଙ୍କ କୋଳରେ ବସିଲ ପରି ଏହି ବେଶ୍ୟାମାନେ ନୌକାରେ ବସିଲେ । ସୂର୍ଯ୍ୟ ଆକାଶରେ (ପୁଷ୍କରରେ) ଗଲାପରି ଏହି ନୌକାଟି ମଧ୍ୟ ଜଳରେ (ପୁଷ୍କରରେ) ଯାତ୍ରା କଲା ।

୧୩ । ଉଡ଼ୁପ—ନୌକା, ଚନ୍ଦ୍ର । ତାରାଳି—ତାରାସମୂହ, ଦୀପ୍ତିମନ୍ତ ନାରୀ (ତାର = ଦୀପ୍ତି, ଆଳି = ନାରୀ) । ବ୍ୟଗ୍ରବନ୍ତ—ବିଶେଷ ଭାବରେ ଚଞ୍ଚଳ ।

ବେନ କୂଳେ ମହାରଣ୍ୟ ସତ୍ୟବାକେ ସ୍ଥାନ
ବିଘନ ପଶୁ ସମୂହେ ସତ୍ୟବାକେ ପୂର୍ଣ୍ଣ ଯେ । ୧୪ ।
ବାଜୀଗମ୍ୟ ସ୍ଥାନ ନୋହେ ସର୍ବ ସମୟରେ
ବାଜୀରଜ କ୍ରୀଡ଼ାକରେ ବିଗତ ଭୟରେ ଯେ । ୧୫ ।
ବିଶ୍ରାମ ଆଶ୍ରମ କେତେଦୂରେ ନାବ କରି
ବାମାକ୍ଷୀ କାମମୋହିନୀ ଘେନ ବାର ନାରୀ ଯେ । ୧୬ ।
ବାହାରେ ରଖି ଜରତା ଭ୍ରମର କେଶୀକି
ବିଲୋକି ଏମନ୍ତ ବନ, ଏମନ୍ତ ଋଷିଙ୍କି ଯେ । ୧୭ ।

---

ଜରତାଦି ବେଶ୍ୟାମାନେ ବସିଥିବା ନୌକାଟି ଚନ୍ଦ୍ରପରି ଦେଖାଯାଉଥିଲା (କାରଣ, ନୌକାକୁ 'ଉଡ଼ୁପ' ଓ ଚନ୍ଦ୍ରଙ୍କୁ 'ଉଡ଼ୁପ' କୁହାଯାଏ) । ଚନ୍ଦ୍ର ନକ୍ଷତ୍ରସମୂହ (ତାରକା) ସହିତ ରହିଲା ପରି ଏଥିରେ ମଧ୍ୟ ବହୁ ସୀମନ୍ତିନୀ (ତାରକା) ରହିଥିଲେ । ଉକ୍ତ ନୌକା ଦିନରାତି ଖୁବ୍ ଶୀଘ୍ର ଗତି କରୁଥିଲା ।

୧୪ । ସତ୍ୟବାକେ—କୂଆ, ଋଷି । ବିଘନ—ବିଶେଷ ଘନ, ବିଘ୍ନ ସୃଷ୍ଟିକାରୀ ।

ସେହି ନୌକା ଯେଉଁ ନଦୀରେ ଗତିକରୁଥିଲା, ତାହାର ଦୁଇକୂଳରେ ବିସ୍ତୃତ ବନପ୍ରଦେଶ ରହିଥିଲା । ଉକ୍ତ ବଣରେ ଗୋଟିଏ ହେଲେ କୂଆ ନଥିଲେ (ସତ୍ୟବାକେ ସ୍ଥାନ) । ସେଠାରେ ବିଘ୍ନ ସୃଷ୍ଟିକାରୀ ସିଂହ ପ୍ରଭୃତି ହିଂସ୍ରଜନ୍ତୁ ନଥିଲେ, ମାତ୍ର ମୃଗ ପ୍ରଭୃତି ପଶୁ ଦଳଦଳ ହୋଇ ରହିଥିଲେ । ସେଠାରେ ବହୁସଂଖ୍ୟାରେ ଋଷି ଥିଲେ (ସତ୍ୟବାକେ ପୂର୍ଣ୍ଣ) ।

୧୫ । ବାଜୀଗମ୍ୟ ସ୍ଥାନ—ଶରପ୍ରବେଶ କରିବା ସ୍ଥାନ । ବାଜୀରଜ—ପକ୍ଷୀସମୂହ । ବିଗତଭୟ—ଭୟଶୂନ୍ୟ ହୋଇ ।

ସେହି ବଣ ଏପରି ଘଞ୍ଚ ଥିଲା ଯେ, ଶରଟିଏ ମାତ୍ରେ ମଧ୍ୟ ତନ୍ମଧ୍ୟକୁ ପ୍ରବେଶ କରିପାରୁ ନଥିଲା । ଏହି କାରଣରୁ ସବୁ ସମୟରେ ପକ୍ଷୀମାନେ ଭୟଶୂନ୍ୟ ହୋଇ ସେଥିରେ କ୍ରୀଡ଼ା କରୁଥିଲେ ।

୧୬, ୧୭ । ବାମାକ୍ଷୀ—ସୁନ୍ଦର ନେତ୍ରୀ । ବାରନାରୀ—ବେଶ୍ୟା ।

ସେହି ସୁରୁନେତ୍ରା ସୁନ୍ଦରୀ ବେଶ୍ୟାଗଣ ଋଷ୍ୟଶୃଙ୍ଗଙ୍କ ଆଶ୍ରମର କିଛିଦୂରରେ ନୌକା ରଖିଲେ ଏବଂ କାମମୋହିନୀଙ୍କ ସହିତ ନୌକାରୁ ବାହାରିଲେ । ଭ୍ରମରକେଶୀ ଜରତାକୁ ନୌକାରେ ରଖିଦେଇ ସେମାନେ ଆଶ୍ରମ ଅଭିମୁଖେ ବାହାରିଲେ ଏବଂ ଏହିପରି ବଣ ଓ ଏହିପରି ଋଷିଙ୍କୁ ଦେଖିଲେ । (କିପରି ବଣ ଓ କିପରି ଋଷି, ପରବର୍ତ୍ତୀ ପଦରେ କୁହାଯାଉଛି ।)

ବିପର୍ଯ୍ୟସ୍ତ ପଲଶୀରେ ପଲଶୀରେ ଘନ
ବିନା ତପ ପ୍ରଭାତପ ପ୍ରଭାରେ ପ୍ରଧାନ ଯେ । ୧୮ ।
ବିଭୂତି ବାଞ୍ଛିକ ନୋହି ବିଭୂତି ବାଞ୍ଛିକ
ବର୍ଜିତ କାମ ଉଦୟ କାମ ଉଦୟକ ଯେ । ୧୯ ।
ବଲ୍ଲରୀ ଅନ୍ତରେ ଯାଇ ଆରମ୍ଭିଲେ ଗୀତ
ବଲ୍ଲକୀ ବଜାଇ କଲେ ସପ୍ତସ୍ୱର ଜାତ ଯେ । ୨୦ ।
ବିଚିତ୍ର ରାଗ ସରାଗ ମୁନିର ଜନ୍ମାଇ
ବୃଦ୍ଧି ପଞ୍ଚଶରକୁ ପଞ୍ଚମ ସ୍ୱର ଦେଇ ଯେ । ୨୧ ।

---

୧୮ । ବିପର୍ଯ୍ୟସ୍ତ—ଶୂନ୍ୟହୋଇଥିବା । ପଲଶୀ—ହିଂସ୍ରଜନ୍ତୁ, ବୃକ୍ଷ । ବିନା ତପପ୍ରଭା—ସୂର୍ଯ୍ୟକିରଣ ନାହିଁ (ବିନା + ଆତପପ୍ରଭା) । ତପପ୍ରଭା—ତପସ୍ୟାର ତେଜ ।

ସେହି ବଣରେ ମାଂସଭୋଜୀ ହିଂସ୍ରଜନ୍ତୁ ନାହାନ୍ତି (ବିପର୍ଯ୍ୟସ୍ତ ପଲଶୀରେ), ମାତ୍ର ବିଭିନ୍ନ ପ୍ରକାର ବୃକ୍ଷରେ ତାହା ପୂର୍ଣ୍ଣ ହୋଇଛି (ପଲଶୀରେ ଘନ) । ସେଠାରେ ସୂର୍ଯ୍ୟକିରଣ ପ୍ରବେଶ କରିପାରେ ନାହିଁ (ବିନା ତପପ୍ରଭା), ମାତ୍ର ଋଷିମାନଙ୍କ ତପସ୍ୟାରେ ତାହା ଦୀପ୍ତିମନ୍ତ ହୋଇଉଠିଛି (ତପପ୍ରଭାରେ ପ୍ରଧାନ) ।

୧୯ । ବିଭୂତି—ଐଶ୍ୱର୍ଯ୍ୟ ବା ଧନସମ୍ପଦ, ଭସ୍ମ । କାମ—ଭୋଗକାମନା, ଭଗବାନଙ୍କୁ ପାଇବା କାମନା ।

ସେହି ଋଷିମାନେ ଐଶ୍ୱର୍ଯ୍ୟ କାମନା କରୁନଥିଲେ (ବିଭୂତି ବାଞ୍ଛିକ ନୋହି), ମାତ୍ର ଭସ୍ମହିଁ ଦେହରେବୋଳି ହେଉଥିଲେ (ବିଭୂତି ବାଞ୍ଛିକ) । ସେମାନେ ସାଂସାରିକ ଭୋଗ କାମନା କରୁନଥିଲେ (ବର୍ଜିତ କାମଉଦୟ) ଏବଂ ଭଗବତ୍‌ପ୍ରାପ୍ତି ସୂଚକ କାମନା କରୁଥିଲେ (କାମଉଦୟକ) ।

୨୦ । ବଲ୍ଲରୀ—ଲତା । ବଲ୍ଲକୀ—ବୀଣା । ସପ୍ତସ୍ୱର—ସା, ରି, ଗା, ମା, ପା, ଧା, ନି—ସଙ୍ଗୀତ ଶାସ୍ତ୍ରର ଏହି ସପ୍ତସ୍ୱର, ।

ସେହି ବେଶ୍ୟାମାନେ ଋଷ୍ୟଶୃଙ୍ଗଙ୍କ ଆଶ୍ରମର ସ୍ୱଳ୍ପଦୂରରେ ଲତା ଗହଳରେ ରହି ଗୀତ ଗାଇବାକୁ ଆରମ୍ଭ କଲେ । ସେମାନେ ବୀଣା ବଜାଇ ସପ୍ତସ୍ୱର ଜାତକଲେ ।

୨୧ । ରାଗ—ଗୀତର ରାଗ । ସରାଗ—ଅନୁରାଗ ବା ଆକୃଷ୍ଟ ହେବା । ପଞ୍ଚଶର—କାମଭାବ । ପଞ୍ଚମସ୍ୱର—ସଙ୍ଗୀତର ସପ୍ତସ୍ୱର ମଧ୍ୟରୁ ପଞ୍ଚମ ସ୍ୱର—ଏହା କୋକିଳର ସ୍ୱରତୁଲ୍ୟ ଅତ୍ୟନ୍ତ ମଧୁର ।

ଋଷ୍ୟଶୃଙ୍ଗ ମୁନି ସେହି ରାଗ ଶୁଣି, ତାହାକୁ ମନମଧ୍ୟରେ ଚିନ୍ତାକରି ସେଥିପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ଯେତେବେଳେ ସେହି ବେଶ୍ୟାମାନେ ପଞ୍ଚମ ସ୍ୱରରେ ଗୀତ ଗାଇବାକୁ ଆରମ୍ଭ କଲେ, ସେତେବେଳେ ମୁନିଙ୍କ ମନରେ କାମଭାବ ବୃଦ୍ଧିପାଇଲା ।

ବିଟପୀଙ୍କ ମୂନମଣି ଅଙ୍କ ଯେ ଥିଲେ
ବିଟପୀଙ୍କି ମୁନ୍ନମଣି ସମ୍ଭାବନା କଲେ ଯେ । ୨୨ ।
ବସାଇ ଆସନେ ପୁଚ୍ଛେ କାହିଁ ତପିଗଣ
ବସ ମଠକେର, କହ ମଠ ନ କରଣ ଯେ । ୨୩ ।
ବଖାଣ କି କି ମନ୍ତ୍ରକୁ ଜପକର ଜାଣ
ବିଷ୍ଣୁ ଶିବ ସେବା କାହା ଭାବରେ ନିପୁଣ ଯେ । ୨୪ ।
ବିକାଶି ହାସ କଟାକ୍ଷ ଚାଳଣ ରସିକା
ବୋଇଲେ ଗେଲଇ ହୋଇ ଫୁଲଇ ନାସିକା ଯେ । ୨୫ ।
ବନେ ତୁମ୍ଭେ ଭ୍ରମ ଆମ୍ଭେ ବନରେ ବିଳସୁ
ବନୌକା ତୁମ୍ଭେ ବନିତା ଆମ୍ଭେଟି ଏ ବଶୁ ଯେ । ୨୬ ।

---

୨୨ । ବିଟପୀ—ବୃକ୍ଷ, ବେଶ୍ୟା । ମୁନମଣି—ଋଷିଶ୍ରେଷ୍ଠ—ଋଷ୍ୟଶୃଙ୍ଗ । ମୁନ ମଣି—ମୁନ ହୋଇ ମନେକରି । ସମ୍ଭାବନା—ସ୍ୱାଗତ କରିବା ।

ସେହି ସମୟରେ ମୁନିଶ୍ରେଷ୍ଠ ଋଷ୍ୟଶୃଙ୍ଗ ବୃକ୍ଷକୁ ଆଉଜି ବସିଥିଲେ । ଉକ୍ତ ବେଶ୍ୟାମାନଙ୍କୁ ଋଷି ମନେକରି ସ୍ୱାଗତ କଲେ ।

୨୩ । ତପିଗଣ—ତପସ୍ୱିମାନେ । ପୁଚ୍ଛେ—ପଚାରିଲେ । ବସ ମଠକେର—ମଠ (ଆଶ୍ରମ) ସ୍ଥାପନ କରି ରହିଅଛ । ମଠ ନ କରଣ—ବିଳମ୍ବ ନକର (ଶୀଘ୍ର) ।

ଋଷ୍ୟଶୃଙ୍ଗ ସେମାନଙ୍କୁ ଆସନରେ ବସାଇ ପଚାରିଲେ—"ହେ ତପସ୍ୱିଗଣ ! ଆପଣମାନେ କେଉଁଠାରେ ଆଶ୍ରମ କରି ରହୁଛନ୍ତି, ଶୀଘ୍ର କୁହନ୍ତୁ ।"

୨୪ । ବଖାଣ—ବ୍ୟାଖ୍ୟାନକର, କୁହ ।

(ଋଷ୍ୟଶୃଙ୍ଗ ପୁନର୍ବାର ପଚାରିଲେ) ଆପଣମାନେ କେଉଁ କେଉଁ ମନ୍ତ୍ର ଜପ କରନ୍ତି ? ଆପଣ ବିଷ୍ଣୁଙ୍କ ଉପାସନା କରନ୍ତି, ନାଁ ଶିବଙ୍କ ଉପାସନା କରନ୍ତି ?

୨୫ । ବିକାଶି ହାସ— ହସ ପ୍ରକାଶ କରି ବା ମୃଦୁକହସା ଦେଇ । କଟାକ୍ଷ ଚାଳଣ—ପ୍ରେମ ସୂଚକ ଦୃଷ୍ଟି ପକାଇ ।

ସେହି ରସିକନୀ ନାରୀମାନେ ମନ୍ଦହାସ ପ୍ରକାଶ କରି ଏବଂ ପ୍ରେମପୂର୍ଣ୍ଣ ଦୃଷ୍ଟି ଚାଳି, ନାସିକା ଫୁଲାଇ ଓ ଗେଲେଇ ହୋଇ କହିଲେ—

୨୬ । ବନୀ—ଉପବନ । ବିଳସୁ—ବିଳାସକରୁ ବା ବିହାର କରୁ । ବନୌକା—ଋଷି (ବନରେ ଓକ ବା ଗୃହ ଯାହାଙ୍କର = ବନୌକା) । ବନିତା—ନାରୀ ।

"ତୁମେ ବନରେ ଭ୍ରମଣ କର ଏବଂ ଆମ୍ଭେମାନେ ବନୀରେ (ଉପବନରେ) ବିଳାସ କରୁ । ବନରେ ଭ୍ରମଣ କରିବାରୁ ତୁମକୁ ବନୌକା କୁହାଯାଏ । ସେହିପରି ବନୀରେ ବିଳାସ କରିବାରୁ ଆମେ ବନିତା ରୂପେ ପରିଚିତ ହୋଇଛୁ ।"

ବୋଲିବାର ଶ୍ରୀମମନ୍ତ୍ର ଆଦ୍ୟବର୍ଣ୍ଣ ଭିନ୍ନ
ବିସର୍ଗ ଚତୁର୍ଥ ବର୍ଣ୍ଣ ଏକ କରି ଘେନ ଯେ । ୨୭ ।

ବସନ୍ତି ଆମ୍ଭ ଦେବତା ଶମ୍ଭୁ ହୃଦସ୍ଥଳ
ବକ୍ଷୋରୁହ ଉରେ ଯୋଡ଼ି ଶୀଘ୍ରେ କଲି କୋଳ ଯେ । ୨୮ ।

'ବିଭୂତି ଆମ୍ଭ ଦେଶର' ବୋଲି ତତପର
ବୋଳିଦେଲି ଚୂରି କାମମୋହିନୀ କର୍ପୂର ଯେ । ୨୯ ।

ବାସାନ୍ତର କରି ଋଷି ଦେଖୁ ପୟୋଧର
ବୋଇଲେ ହେ ହର ହର ମୋତେ କୃପାକର ଯେ । ୩୦ ।

---

୨୭ । ଶ୍ରୀମମନ୍ତ୍ର—ଶ୍ରୀମଙ୍କୁ ଜପକରିବା ମନ୍ତ୍ର (ଶ୍ରୀମାୟ ନମଃ) ।

ବେଶ୍ୟାମାନେ ଆହୁରି କହିଲେ—"ଆପଣ 'ଶ୍ରୀମାୟ ନମଃ' ବୋଲି ଶ୍ରୀମମନ୍ତ୍ର ଜପ କରୁଛନ୍ତି । ଆମ୍ଭେମାନେ ମଧ୍ୟ ସେହି ମନ୍ତ୍ର ଜପକରୁଛୁ । ଉଭୟଙ୍କ ମନ୍ତ୍ରରେ ଥିବା ପ୍ରଥମ ବର୍ଣ୍ଣଟି ମାତ୍ର ଭିନ୍ନ । ଅର୍ଥାତ୍, ଆପଣଙ୍କ ମନ୍ତ୍ରର 'ର' ସ୍ଥଳରେ ଆମେ 'କ' ଯୋଗ କରି ମନ୍ତ୍ର ଜପକରୁଛୁ । ଅବଶିଷ୍ଟ ବିସର୍ଗ ଓ ଅନ୍ୟ ଚାରିଗୋଟି ବର୍ଣ୍ଣ (ମାୟ ନମଃ) ସମାନ । (ଅର୍ଥାତ୍, ଆମେ "କାମାୟ ନମଃ" ବୋଲି ଜପକରୁଛୁ) ।

୨୮ । ଶମ୍ଭୁ—ଶିବ । ବକ୍ଷୋରୁହ—ସ୍ତନ । ଉରେ—ବକ୍ଷ ଦେଶରେ ।

"ଆମର ଉପାସ୍ୟ ଦେବତା ଶିବ ଆମ୍ଭମାନଙ୍କ ବକ୍ଷ ଉପରେ ରହିଛନ୍ତି ।" ଏହା କହି ସେ ନିଜର ସ୍ତନଯୁଗଳକୁ ଋଷ୍ୟଶୃଙ୍ଗଙ୍କ ବକ୍ଷ ଦେଶରେ ଲଗାଇ ତାଙ୍କୁ ଖୁବ୍ ଶୀଘ୍ର ଆଲିଙ୍ଗନ କଲା ।

୨୯ । ବିଭୂତି—ଭସ୍ମ । ତତପର—ଶୀଘ୍ର (ତତ୍ପର) ।

କାମ ମୋହିନୀ ବେଶ୍ୟା ନେଇଥିବା କର୍ପୂରକୁ ତତ୍କ୍ଷଣାତ୍ ହାତରେ ଚୂରିଦେଇ 'ଏହା ଆମ ଦେଶର ବିଭୂତି' ବୋଲି କହି ଖୁବ୍ ଶୀଘ୍ର ଋଷିଙ୍କ ଶରୀରରେ ବୋଳି ଦେଲା ।

୩୦ । ବାସାନ୍ତର—ଲୁଗା ବାହାର କରି ଦେଇ (ବାସ+ଅନ୍ତର) । ପୟୋଧର—ସ୍ତନ । ହର ହର—ହେ ଶିବ ! ହେ ଶିବ ! ।

କାମମୋହିନୀ ବେଶ୍ୟାର ବକ୍ଷସ୍ଥଳରୁ ବସ୍ତ୍ର ବାହାର କରି ଦେଇ ଋଷି ଯେତେବେଳେ ତାହାର ସ୍ତନଦ୍ୱୟକୁ ଦେଖିଲେ, ସେତେବେଳେ (ତାହାକୁ ପ୍ରକୃତ ଶିବଲିଙ୍ଗ ମନେକରି ଭକ୍ତି ଭାବରେ ତନ୍ମୟ ହୋଇଯାଇ) କହିଲେ—"ହେ ଶିବ ! ହେ ଶିବ ! ମୋତେ କୃପାକର ।"

ବିଜ୍ଞାନ ବେଦ ଅର୍ଥକୁ ବିଚାରି ସେ ବଚନେ
ବିଧାନ କଲା ମୁଖରେ ଚୁମ୍ବନେ ଚୁମ୍ବନେ ଯେ । ୩୧

ବନଫଳ କହି ପକ୍ୱ କଦଳୀ ଭୁଞ୍ଜାଇ
ବାଣ ପୟଃପେଟୀ ପୟଃ ପାନ ସେ କରାଇ ଯେ । ୩୨ ।

ବୋଧିଚିତ୍ତ ଏ ଆମ୍ଭ ନିର୍ଝର ନୀର କହି
ବୃଷ୍ୟକାରୀ କାମବୀଜ ଅଧାମ ପୂରାଇ ଯେ । ୩୩ ।

ବାଢ଼ିଲେ ଯେ ଘୃତପକ୍ୱ ଆମିକ୍ଷା ଅଗ୍ରତେ
ବର୍ଣ୍ଣି ପୁଚ୍ଛନ୍ତି କ ଭୋଜନ କର ସେ ବୋଲନ୍ତେ ଯେ । ୩୪ ।

---

୩୧ । ବିଜ୍ଞାନ ବେଦ ଅର୍ଥ—(ପୂର୍ବପଦରେ) ଲୁଚି ରହିଥିବା ଦୁଇଟି ଅର୍ଥ । (ପ୍ରଥମ ଅର୍ଥ—ହେ ଶିବ ! ରକ୍ଷାକର, ଦ୍ୱିତୀୟ ଅର୍ଥ—ହେ କାମଦେବ ! ରକ୍ଷାକର ।

ସେହି ଋଷି ଏହିପରି ଦୁଇ ଅର୍ଥ ଲୁଚି ରହିଥିବା ଉକ୍ତି ପ୍ରକାଶ କରିବାରୁ, କାମମୋହିନୀ ବୁଝିପାରିଲା ଯେ, ଋଷି କନ୍ଦର୍ପଠାରେ ଶରଣ ପଶିଛନ୍ତି । ତେଣୁ ସେ ତାହାଙ୍କ ମୁଖରେ ବାରମ୍ବାର ଚୁମ୍ବନ ପ୍ରଦାନକଲା ।

୩୨ । ବନଫଳ—ବଣର ଫଳ । ପକ୍ୱ—ପାଚିଲା । ବାଣ ପୟଃପେଟୀ—ବାଣ ନଡ଼ିଆ । ପୟ—ପାଣି ।

ସେହି ବେଶ୍ୟାମାନେ "ଏହା ଆମ୍ଭମାନଙ୍କ ବଣର ଫଳ" ବୋଲି କହି ପାଚିଲା କଦଳୀ ଋଷ୍ୟଶୃଙ୍ଗଙ୍କୁ ଖୁଆଇ ଦେଲେ ଏବଂ (ପିଇବା ପାଣି ବଦଳରେ) ବାଣ ନଡ଼ିଆର ସୁମିଷ୍ଟ ପାଣି ତାହାଙ୍କୁ ପିଆଇଲେ ।

୩୩, ୩୪ । ନିର୍ଝର—ଝରଣା । ବୃଷ୍ୟକାରୀ—ବଳକାରକ । କାମବୀଜ—କାମଶକ୍ତି ଉଦ୍ଦୀପନକାରୀ । ଅଧାମ—ମିଷ୍ଟାନ୍ନ ବିଶେଷ । ଆମିକ୍ଷା—ଛେନା ।

ସେମାନେ (ଋଷ୍ୟଶୃଙ୍ଗଙ୍କୁ ପଇଡ଼ ପାଣି ଦେଇ) "ଏହା ଆମ୍ଭର ବନପ୍ରଦେଶର ଝରଣା ଜଳ" ବୋଲି କହିଲେ ଏବଂ ବଳକାରକ ଓ କାମଭାବ ଉଦ୍ଦୀପକ ଅଧାମ ଓ ଘିଅରେ ପୁଆଯାଇଥିବା ଛେନା ପିଠା ତାହାଙ୍କ ଆଗରେ ବାଢ଼ିଦେଲେ । ଋଷିଙ୍କୁ 'ଭୋଜନ କରନ୍ତୁ' ବୋଲି ସେମାନେ କହିବାରୁ ଋଷି "ତୁମର ନାମ କଣ" ବୋଲି ସେମାନଙ୍କୁ ପଚାରିଲେ ।

ବିପ୍ର ତୁମ୍ଭେ ଆମ୍ଭେ ଯାହା ବୋଲଉ ତା ଶୁଣ
ବିପ୍ରଲବ୍ଧା ଯେନ ଅଷ୍ଟକାନ୍ତରେ ନିପୁଣ ଯେ । ୩୫ ।
ବାଳିକାଏ ବୋଲୁ ମୁନି ଭୁଞ୍ଜି ସ୍ୱାଦୁ ପାଇ
ବଟୁ ! ତୁମ୍ଭ ତପ ଧନ୍ୟ ବୋଲି ପ୍ରଶଂସଇ ଯେ । ୩୬ ।
ବଟ ଯାହା ବୋଇଲ ପ୍ରମାଣ ଅନୁସାରେ
ବାଧ୍ର୍ୟାୟନଶାସ୍ତ୍ର ପଡା ଗୁରୁ ଛନ୍ତି ଦୂରେ ଯେ । ୩୭ ।
ବେଳାସ୍ତ ହେବାର ଜାଣି ମେଲାଣି ହେଲୁଟି
ବାରମୁଖ୍ୟ ଋଷି ଉଠୁ ଗଲେ ସେ ପାଛୋଟି ଯେ । ୩୮ ।
ବାଟେ ରହି ରହି କହି ଗଲେ ବାରାଙ୍ଗନା
ବାହୁଡବା ହେଉ ଆମ୍ଭେ କାଲି ଆସୁ ପିନା ଯେ । ୩୯ ।

---

୩୫ । ବିପ୍ର—ବ୍ରାହ୍ମଣ । ବିପ୍ରଲବ୍ଧା—ଅଳଙ୍କାରଶାସ୍ତ୍ରୋକ୍ତ ଏକପ୍ରକାର ନାୟିକା ବିଶେଷ (ଯେଉଁ ନାୟିକା ସଙ୍କେତ ସ୍ଥାନରେ ନାୟକକୁ ନ ଦେଖି ନିରାଶ ହୋଇ ଫେରେ ।) ଅନ୍ୟ ପକ୍ଷରେ—ଯେଉଁ ନାରୀ ବିପ୍ରଦ୍ୱାରା ଲବ୍ଧ ବା ଉପଭୁକ୍ତ ହୋଇଛି ।

ମୁନିଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେହି ବେଶ୍ୟାମାନେ କହିଲେ—"ଆପଣ ଜାତିରେ 'ବିପ୍ର', ମାତ୍ର ଆମେ ହେଉଛୁ ବିପ୍ରଲବ୍ଧା ପ୍ରଭୃତି ଆଠପ୍ରକାର ନାୟିକାଙ୍କର କାର୍ଯ୍ୟ କରିବାରେ ଧୁରନ୍ଧର ।"

୩୬ । ବଟୁ—ବ୍ରହ୍ମଚାରୀ । ବାଳିକାଏ—ସେହି ବେଶ୍ୟାମାନେ ।

ସେହି ଯୁବତୀ ବେଶ୍ୟାମାନେ ଏହିପରି କହିବାରୁ ମୁନି ସେହି ମିଷ୍ଟାନ୍ନ ଖାଇ ତାହାର ଉତ୍ତମ ସ୍ୱାଦୁ ଅନୁଭବ କଲେ ଏବଂ କହିଲେ—"ହେ ବଟୁଗଣ ! ତୁମ୍ଭର ତପସ୍ୟା ପ୍ରକୃତରେ ସାର୍ଥକ ହୋଇଛି ।"

୩୭ । ତାହାଶୁଣି ସେମାନେ କହିଲେ—"ହେ ଋଷି ! ଆପଣ ଆମକୁ 'ବଟୁ' ବୋଲି ଯାହା କହିଲେ, ତାହା ପ୍ରମାଣ ଅନୁଯାୟୀ ଠିକ୍ । (କାରଣ, ଆମେ ପୁରୁଷମାନଙ୍କୁ 'ବଟୁଂ' ବା ଠକିଥାଉ) । ଏହି ସ୍ଥାନରୁ କିଛି ଦୂରରେ ଆମର ବାତ୍ସ୍ୟାୟନଶାସ୍ତ୍ର ପଢା ଗୁରୁ ଅଛନ୍ତି ।"

୩୮ । ବେଳାସ୍ତ—ବେଳ ଅସ୍ତହେବା । ମେଲାଣି ହେଲୁ—ବିଦାୟ ନେଲୁ । ବାରମୁଖ୍ୟ——ବେଶ୍ୟାମାନେ !

ବେଳବୁଡିବା ସମୟ ହେବା ଜାଣି ବେଶ୍ୟାମାନେ "ଆମ୍ଭେମାନେ ବିଦାୟ ନେଉଛୁ" ବୋଲି କହିବାରୁ ଋଷ୍ୟଶୃଙ୍ଗ ମୁନି ସେମାନଙ୍କୁ ପାଛୋଟି ଗଲେ ।

୩୯ । ବାରାଙ୍ଗନା —ବେଶ୍ୟା ।

ସେହି ବେଶ୍ୟାମାନେ ଗଲାବେଳେ ବାଟରେ ରହି ରହି ମୁନିଙ୍କୁ କହିଲେ, "ଆପଣ ଏଠାରୁ ଫେରନ୍ତୁ, ଆମ୍ଭେମାନେ କାଲି ପୁନର୍ବାର ଆସିବୁ ।"

ବିହ୍ୱଳତେ ଆସିବାରେ କରାଇ ନିୟମ
ବାହୁଡ଼ିଲେ ଋଷ୍ୟଶୃଙ୍ଗ ଆପଣା ଆଶ୍ରମ ଯେ । ୪୦ ।

ବହିନ ପ୍ରତିମ ନାବେ ପ୍ରବେଶ ନାଗରୀ
ବ୍ୟବସାୟ ଚୟ କହି ବ୍ୟବସ୍ଥିତ କରି ଯେ । ୪୧ ।

ବିଭାଣ୍ଡକ ଆସି ପୁତ୍ରେ ଜାନୁରେ ବସାଇ
ବିଷାଣ-ଋଷ୍ୟ ଅଙ୍ଗରୁ ସୁବାସକୁ ପାଇ ଯେ । ୪୨ ।

ବକତା ସକଳ କଥା କତବେ ଭଷିତ
ବିଭବଶୀଚରୀ ସେ ଭକ୍ଷନ୍ତି ତପିପୁତ ଯେ । ୪୩ ।

---

୪୦ । ବିହ୍ୱଳତେ—ଭାବ ବିହ୍ୱଳ ହୋଇ । କରାଇ ନିୟମ—ଶପଥ କରାଇ ।

ସେମାନଙ୍କ କଥାଶୁଣି ଋଷ୍ୟଶୃଙ୍ଗ ଭାବବିହ୍ୱଳ ହୋଇ ଉଠିଲେ ଏବଂ "କାଲି ଆଶ୍ରମକୁ ଆସିବ" ବୋଲି ନିୟମ କରାଇ ନିଜ ଆଶ୍ରମକୁ ଫେରିଲେ ।

୪୧ । ବହିନ ପ୍ରତିମ—ବୋଇତ ପରି (ବଡ଼ ଧରଣର) । ନାବେ—ନୌକାରେ । ବ୍ୟବସାୟଚୟ—ଘଟଣା ସମୂହ । ବ୍ୟବସ୍ଥିତ କରି—ଉଚିତ ପ୍ରକାରେ ।

ସେହି ଚତୁରୀ ନାରୀମାନେ ସେମାନଙ୍କର ବୋଇତ ତୁଲ୍ୟ ବିଶାଳ ନୌକା ଭିତରେ ପ୍ରବେଶ କଲେ ଏବଂ ସମସ୍ତ ଘଟଣା ଠିକ୍ ଭାବରେ ଜଣେଇବାକୁ କହିଲେ ।

୪୨ । ବିଭାଣ୍ଡକ—ଋଷ୍ୟଶୃଙ୍ଗଙ୍କ ପିତା । ବିଷାଣ—ଶୃଙ୍ଗ । ବିଷାଣ ଋଷ୍ୟ—ଋଷ୍ୟଶୃଙ୍ଗ (କବି 'ବି' ଆଦ୍ୟରେ ରଖିବା ନିମିତ୍ତ "ଋଷ୍ୟଶୃଙ୍ଗ" ପରିବର୍ତ୍ତେ "ବିଷାଣ ଋଷ୍ୟ" ବୋଲି ଉଲ୍ଲେଖ କରିଛନ୍ତି) ।

ଋଷ୍ୟ ଶୃଙ୍ଗଙ୍କ ପିତା ବିଭାଣ୍ଡକ ଋଷି ଆଶ୍ରମକୁ ଆସି ନିଜ ପୁତ୍ରର ଦେହର ସୁଗନ୍ଧ ଅନୁଭବ କଲେ ଏବଂ ସେ ତାହାଙ୍କୁ ଜଙ୍ଘରେ ବସାଇ ଆଦର ସହକାରେ ସମସ୍ତ ବିଷୟ ପଚାରିଲେ ।

୪୩ । ବକତା—କହିଲେ । କତବେ—କପଟରେ । ଭଷିତ—କହିଲେ । ବିଭବଶୀଚରୀ—ରାକ୍ଷସୀ (ଅନ୍ୟପକ୍ଷରେ—ବିବାହର ଯାହା ଚରମ ଫଳ, ତାହା କାମନାକରି ବିଚରଣ କରୁଥାନ୍ତି) । ତପିପୁତ ମୁନିକୁମାର (ଅନ୍ୟ ପକ୍ଷରେ—ତପସ୍ୱୀମାନଙ୍କର ପୁଣ୍ୟଫଳ) । ଭକ୍ଷନ୍ତି—ଖାଇଯାନ୍ତି । (ଅନ୍ୟ ପକ୍ଷରେ—ଉପଭୋଗ କରନ୍ତି) ।

ଋଷ୍ୟଶୃଙ୍ଗ ପିତାଙ୍କୁ ସବୁକଥା କହିବାରୁ, ଋଷି କହିଲେ—"ରେ ପୁତ୍ର । ଯେଉଁମାନେ ଆସିଥିଲେ, ସେମାନେ ରାକ୍ଷସୀ ଅଟନ୍ତି । ମୁନିକୁମାର ମାନଙ୍କୁ ଖାଇଯାଆନ୍ତି ।

ବ୍ୟବହାର କଲେ ନିଶ୍ଚେ ତାହାଙ୍କ ସଙ୍ଗରେ
ବାପ୍ ହେବୁ ଅଗ୍ନିପ୍ରୀତି ପତଙ୍ଗ ପ୍ରକାରେ ଯେ । ୪୪ ।
ବିରୋଧୋକ୍ତି ଜନକର ନ ଘେନିଲେ ଲବ
ବୁଜିଲେ ନେତ୍ର ସ୍ୱପନେ ଦେଖେ ସେହି ଧ୍ରୁବ ଯେ । ୪୫ ।
ଚକ୍ଷୁବଶୀ ଅନ୍ତ ତାତ ତପସ୍ଥାନେ ଗତ
ବଶ କରିଥିଲେ ରମା ଛନ୍ନ ମନସୁତ ଯେ । ୪୬ ।

---

'କିତବେ ଭ୍ରମିତ' ର ତାତ୍ପର୍ଯ୍ୟ ମୂଳକ ଅନ୍ୟ ଅର୍ଥ—"ରେ ପୁତ୍ର ! ଯେଉଁମାନେ ଆସିଥିଲେ, ସେମାନେ 'ଶର୍ମ୍ମ'ର ଚରମଫଳ (ସମ୍ଭୋଗ ଜନିତ ଇନ୍ଦ୍ରିୟ ସୁଖଲାଭ) କାମନା କରି ପୃଥିବୀରେ ବୁଲୁଥାନ୍ତି । ସେମାନେ ତପସ୍ୱିମାନଙ୍କ ତପସ୍ୟାର ପୁଣ୍ୟଫଳ ଭୋଗକରିଥାନ୍ତି ।

୪୪ । ଅଗ୍ନିପ୍ରୀତି ପତଙ୍ଗ ପ୍ରକାରେ—କୀଟ ପତଙ୍ଗାଦି ଅଗ୍ନିପ୍ରତି ଆକୃଷ୍ଟ ହୋଇ ସେଥିରେ ପୋଡ଼ି ମୃତ୍ୟୁଲାଭ କଲାପରି, ଅଥବା—ଅଗ୍ନିଙ୍କ ସହିତ ସୂର୍ଯ୍ୟ (ପତଙ୍ଗ)ଙ୍କ ସମ୍ପର୍କ ତୁଲ୍ୟ ।

ବିଭଣ୍ଡକ ଋଷ୍ୟଶୃଙ୍ଗଙ୍କୁ କହିଲେ—"ରେ ବାପୁ ! ତୁ ଯଦି ସେହି ସେହି ବାରାଙ୍ଗନାମାନଙ୍କ ସହିତ ମିଶିବୁ, ତେବେ ଅଗ୍ନିରେ କୀଟପତଙ୍ଗ ପଡ଼ି ପୋଡ଼ି ମଲାପରି ମୃତ୍ୟୁଲାଭ କରିବୁ ।

ଅନ୍ୟପକ୍ଷରେ (ଗୂଢ଼ଅର୍ଥ)—"ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲେ ସୂର୍ଯ୍ୟତେଜରେ ଅଗ୍ନି ଅଧିକ ଦୀପ୍ତିମନ୍ତ ହେଲାପରି, ତୁ ମଧ୍ୟ ବିଶେଷ ଖ୍ୟାତି ଅର୍ଜ୍ଜନ କରିବୁ ।"

୪୫ । ବିରୋଧୋକ୍ତି—ନିଷେଧ ବଚନ, ଅନ୍ୟପକ୍ଷରେ—ବିଗତ ହୋଇଛି 'ରୋଧ' ବା ନିଷେଧ ଯହିଁରୁ, ସେହିପରି ଉକ୍ତି, ଅର୍ଥାତ୍ ଉପଦେଶ । ନ ଘେନିଲେ ଲବ—ଟିକିଏ ହେଲେ ଗ୍ରହଣ କଲେନାହିଁ, ଅନ୍ୟପକ୍ଷରେ—ଟିକିଏ ଗ୍ରହଣ ନକରି ଭଲଭାବେ ଗ୍ରହଣ କଲେ ।

ପିତାଙ୍କର ନିଷେଧ ବଚନକୁ ଋଷ୍ୟଶୃଙ୍ଗ ଟିକିଏ ହେଲେ ଗ୍ରହଣ କଲେ ନାହିଁ । ଅନ୍ୟ ପକ୍ଷରେ (ଗୂଢ଼ଅର୍ଥ)—ପିତାଙ୍କର ଉପଦେଶ ଭଲଭାବେ ଗ୍ରହଣ କଲେ । ସେ ନିଦ୍ରାସମୟରେ ଆଖି ବୁଜିଦେଲେ ସେହି ବେଶ୍ୟାମାନଙ୍କ ସହିତ ନିଜର ବ୍ୟବହାର ଇତ୍ୟାଦି ବିଷୟ ସ୍ୱପ୍ନ ଦେଖନ୍ତି ।

୪୬ । ଚକ୍ଷୁବଶୀ ଅନ୍ତ—ଦୃଷ୍ଟି ପାଇବାରୁ । ତାତ—ପିତା (ବିଭଣ୍ଡକ ଋଷି) । ଛନ୍ନ—ଉଚ୍ଛନ୍ନ ହୋଇ ପଡ଼ିବା ।

ଦୃଷ୍ଟି ପାଇବାରୁ ଋଷ୍ୟଶୃଙ୍ଗଙ୍କ ପିତା ବିଭଣ୍ଡକ ଋଷି ତାହାଙ୍କର ତପସ୍ଥଳୀକୁ ଚାଲିଗଲେ । ସେହି ସୁନ୍ଦରୀ ବେଶ୍ୟାମାନେ ଋଷ୍ୟଶୃଙ୍ଗଙ୍କୁ ବଶ କରି ଦେଇଥିବାରୁ ତାହାଙ୍କ (ଋଷ୍ୟଶୃଙ୍ଗଙ୍କ) ମନ ଉଚ୍ଛନ୍ନ ହୋଇପଡ଼ିଲା ।

ବିପ୍ରଲମ୍ଭ ବ୍ୟଙ୍ଗାର ଯେ ଉଦୟ ମାନସ
ବାଞ୍ଛି ପୁନଃପୁନଃ ରମା ଚୁମ୍ବନ ଆଶ୍ଳେଷ ଯେ । ୪୭ ।

ବାରବାର ଆଶ୍ଳେଷରେ ନ ଆସେ ଚୁଙ୍କାର
ବନପ୍ରିୟ ତାଙ୍କୁ କଣ୍ଠ ଟେକଇ ସତ୍ୱର ଯେ । ୪୮ ।

ବାହ ପ୍ରାପ୍ତ ଗତି କରି ପୁଣି ନେଉଟଇ
ବଳିବର୍ଦ୍ଦ ଯଥା ରତ୍ନ ଧେନୁକୁ ଇଚ୍ଛଇ ଯେ । ୪୯ ।

ବଳାଧ୍ୱନି କରି ଯେବେ ଝିଙ୍କାରି ଝଙ୍କାର
ବାତାୟୁ ଡାକିଘଣ୍ଟିରେ ବଶ ପରକାର ଯେ । ୫୦ ।

---

୪୭ । ବିପ୍ରଲମ୍ଭ—ବିରହ । ବାଞ୍ଛି—ଇଚ୍ଛାକରେ । ଆଶ୍ଳେଷ—ଆଲିଙ୍ଗନ ।
ଋଷ୍ୟଶୃଙ୍ଗଙ୍କ ମନରେ ବିରହ ସଙ୍ଗେସଙ୍ଗେ ମିଳନ ନିମିତ୍ତ ପ୍ରବଳ ଆକାଙ୍‌କ୍ଷା ଜାତ ହେବାରୁ ସେ ବାରମ୍ବାର ସେହି ନାରୀମାନଙ୍କୁ ଚୁମ୍ବନ ଦେବା ଓ ଆଲିଙ୍ଗନ କରିବାକୁ ଇଚ୍ଛାକଲେ ।

୪୮ । ବାରବାର—ଥରକୁ ଥର । ଆଶ୍ଳେଷ—ଆଲିଙ୍ଗନ । ଚୁଙ୍କାର—ଚୁମ୍ବନର ଧ୍ୱନି । ବନପ୍ରିୟ—କୋଇଲି ।
ସେ ଶୂନ୍ୟକୁ ହାତବଢାଇ ସେହି ନାରୀମାନଙ୍କୁ ଆଲିଙ୍ଗନ କଲାପରି ଅଚରଣ କଲେ ମଧ୍ୟ ଚୁମ୍ବନ କାଳୀନ ଧ୍ୱନି ଶୁଣାଗଲା ନାହିଁ । ସେତେବେଳେ କୋଇଲି ଧ୍ୱନି କରିବାରୁ ସେହି ନାରୀମାନଙ୍କର କଣ୍ଠଧ୍ୱନି ଭାବି ସେ ତତ୍‌କ୍ଷଣ ସେହିଆଡ଼କୁ କାନଡ଼େରି ଶୁଣିଲେ ।

୪୯ । ବାହପ୍ରାପ୍ତ—ଘୋଡ଼ାପରି । ବଳିବର୍ଦ୍ଦ—ବଳଦ । ରତ୍ନଧେନୁ—ଉତ୍ତମଜାତି ଗାଈ ।
ଋଷ୍ୟଶୃଙ୍ଗ ଘୋଡାପରି ପ୍ରଖର ଗତିରେ ଅାଗକୁ ଚାଲିଯାଉଥିଲେ ଏବଂ ସେହି ନାରୀମାନଙ୍କୁ ନଦେଖି ଫେରି ଆସୁଥିଲେ । ବଳଦ ଉତ୍ତମଜାତି ଗାଈକୁ ସମ୍ଭୋଗ କରିବାକୁ ଇଚ୍ଛାକଲା ପରି ଋଷ୍ୟଶୃଙ୍ଗ ମଧ୍ୟ ସେହି ନାରୀମାନଙ୍କୁ ଭୋଗକରିବାକୁ ଇଚ୍ଛାକଲେ । (ଏଠାରେ 'ବଳିବର୍ଦ୍ଦ' ଶବ୍ଦ ପ୍ରୟୋଗ କରି କବି ସୂଚାଇଛନ୍ତିଯେ, ଋଷ୍ୟଶୃଙ୍ଗ ସେହି ବେଶ୍ୟାମାନଙ୍କୁ କେବଳ ବାହ୍ୟ ଉପଭୋଗ କରିଥିଲେ) ।

୫୦ । ବଳାଧ୍ୱନି—ପାଦରେ ପିନ୍ଧିବା ବଳାର ଶବ୍ଦ । ବାତାୟୁ—ମୃଗ । ଡାକିଘଣ୍ଟି—କାଠଘଣ୍ଟି ।
ମୃଗ କାଠଘଣ୍ଟିର ଧ୍ୱନି ଶୁଣି ବଶୀଭୂତ ହେଲାପରି ଋଷ୍ୟଶୃଙ୍ଗ ଝିଙ୍କାରି ଶବ୍ଦ ଶୁଣି ସେହି ନାରୀମାନଙ୍କ ପାଦବଳାର ଧ୍ୱନି ମନେକରି ବଶୀଭୂତ ହୋଇଯାଇ ସେଥିପ୍ରତି କର୍ଣ୍ଣ ଡେରିଲେ ।

ବନ୍ଧିଲା ଆରମ୍ଭି ଆଣୁ ମନୋଜ-ପୂଳାନ୍ଧ
ବାଗ୍ଭଳ ପ୍ରାୟ ଜନମ ହେଉଛୁ ଉନ୍ମାଦ ଯେ । ୫୧ ।

ବଢ଼ିବାରୁ ବେଳୁବେଳ ପ୍ରେମନଦୀ ତହିଁ
ବୁଡ଼ୁନାହିଁ ଚେତା ତୃଣ ଚଉପ୍ଭ ଭାସଇ ଯେ । ୫୨ ।

"ବିଳମ୍ବ କାହିଁକି ବେଗ ଆସ ବେଗ ଆସ
ବେଳ ବଳଗଲେ ମିଥ୍ୟା ହେଉଛୁଟି ଭାଷ ଯେ । ୫୩ ।

ବୋଲି ବୋଲି ଆଶ୍ରମ ପ୍ରାନ୍ତକୁ ସେ ଯେ ଗଲେ
ବୃକ୍ଷାରୂଢ଼େ ଆସିବାର ପଥ ନିରୀକ୍ଷିଲେ ଯେ । ୫୪ ।

ବ୍ୟଥିତ ହେବାର ତପୋଧନ ପୁଣ୍ୟ ଆସି
ବର ଚତୁରୀ ଦେଖନ୍ତି କୁଞ୍ଜୋଦରେ ପଶି ଯେ । ୫୫ ।

---

୫୧ । ମନୋଜପୂଳାନ୍ଧ—କନ୍ଦର୍ପ ରୂପକ ବାଣୁଆ ।

ସେତେବେଳେ କନ୍ଦର୍ପ ରୂପକ ବାଣୁଆ ତାହାଙ୍କୁ ଶରମାରବାରୁ ସେ ପାଗଳ ପରି ଉନ୍ମାଦତ ହୋଇଉଠିଲେ ।

୫୨ । ବେଳକୁବେଳ ସେହି ନାରୀମାନଙ୍କ ପ୍ରତି ତାହାଙ୍କର ପ୍ରେମଭାବ ବଢ଼ିବାକୁ ଲାଗିଲା । ନଦୀସ୍ରୋତରେ ଘାସ ଯେଉଁପରି ନବୁଡ଼ି ଏଣେତେଣେ ଭାସି ବୁଲୁଥାଏ, ସେହିପରି ପ୍ରେମରୂପକ ନଦୀସୋତରେ ତାହାଙ୍କର ମନ ଇତସ୍ତତଃ ଘୂରି ବୁଲିଲା ।

୫୩ । ଭାଷ—କଥା ।

ଋଷ୍ୟଶୃଙ୍ଗ ଭାବବହ୍ୱଳ ହୋଇ କହିଲେ—"ହେ ସୁନ୍ଦରୀମାନେ ! ବିଳମ୍ବ କାହିଁକି କରୁଛ ? ଖୁବ୍ ଶୀଘ୍ର ଶୀଘ୍ର ଆସ । ଅଧିକ ବିଳମ୍ବ ହେଲେ ତୁମ୍ଭମାନଙ୍କର କଥା ମିଥ୍ୟା ହୋଇଯିବ ।"

୫୪ । ଆଶ୍ରମପ୍ରାନ୍ତକୁ—ଆଶ୍ରମର ସୀମାକୁ । ବୃକ୍ଷାରୂଢ଼େ—ଗଛରେ ଚଢ଼ି

ଏହିପରି 'ଚଞ୍ଚଳ ଆସ, ଚଞ୍ଚଳ ଆସ' ବୋଲି କହି କହି ସେ ଆଶ୍ରମର ଶେଷସୀମା ପର୍ଯ୍ୟନ୍ତ ଗଲେ ଏବଂ (ସୁନ୍ଦରୀମାନଙ୍କୁ ନ ଦେଖି) ଗୋଟିଏ ଗଛରେ ଚଢ଼ି ସେମାନଙ୍କ ଆସିବା ବାଟକୁ ଚାହିଁ ରହିଲେ ।

୫୫ । ତପୋଧନ—ଋଷ୍ୟଶୃଙ୍ଗ । ବର ଚତୁରୀ—ଶ୍ରେଷ୍ଠା ଚତୁରୀ ବେଶ୍ୟାଗଣ । କୁଞ୍ଜୋଦରେ—ଲତାକୁଞ୍ଜ ଭିତରେ ।

ସେମାନଙ୍କର ପୁଣ୍ୟବଳରୁ ଋଷ୍ୟଶୃଙ୍ଗ (କାମପୀଡ଼ିତ ହୋଇ) ବ୍ୟଥିତ ହେଉଥିବା ବିଷୟ ସେହି ଚତୁରୀ ବେଶ୍ୟାଗଣ ଲତାକୁଞ୍ଜଭିତରେ ରହି ଦେଖୁଥିଲେ ।

ବିସ୍ପନ୍ଦ ଚିତ୍ତୁ ତେଜିଲେ ଶୃଙ୍ଗୀ ବଶ ହେବା ।
ବାରଣ ପଡ଼ିରେ ଡଗ୍-ଖୋପେ ପକାଇବା ଯେ । ୫୬ ।

ବୋଧିଦ୍ରୁମଦଳ ତୁଲ୍ୟ ତନୁଭୋଗ ଦେଇ
ବିକ୍ରୟ କରିବା ନୃପତିରେ ଧନ ପାଇ ଯେ । ୫୭ ।

ବାହାରିଲେ ପାଞ୍ଚି ତରୁଣୀଏ ଲତାମଧୁ
ବିଲୋକି ପାଶେ ମିଳିଲେ ସେ ଆଜନ୍ମ ସାଧୁ ଯେ । ୫୮ ।

ବାହୁ ଛନ୍ଦ ଛନ୍ଦି କାମମୋହିନୀ ସଙ୍ଗର
ବିକାର ଅଧିକେ ଚୁମ୍ବେ ପୁଲକ ସଙ୍ଗର ଯେ । ୫୯ ।

---

୫୬ । ବିସ୍ପନ୍ଦ—ସନ୍ଦେହ । ବାରଣ—ହାତୀ । ଖୋପ—ହାତୀ ଧରିବା ପାଇଁ ଖୋଳାଯାଇଥିବା ଗାତ ।

ଋଷ୍ୟଶୃଙ୍ଗ ସେମାନଙ୍କର ବଶୀଭୂତ ହୋଇଛନ୍ତି । ଏ ବିଷୟରେ ସେମାନଙ୍କ ମନରୁ ସନ୍ଦେହ ଦୂର ହେଲା । ହାତୀକୁ ଆକର୍ଷଣ କରାଇ ଏବଂ ଖୋପରେ ପକାଇ ରାଜନଅରକୁ ନେଲା ପରି ସେମାନେ ମଧ୍ୟ ଋଷ୍ୟଶୃଙ୍ଗଙ୍କୁ ନୌକାରେ ବସାଇ ରୋମପାଦ ନୃପଙ୍କୁ ଘେନିଯିବେ ।

୫୭ । ବୋଧିଦ୍ରୁମଦଳ—ଅଶ୍ୱତ୍ଥ (ଓସ୍ତ) ପତ୍ର । ତନୁ—ସାମାନ୍ୟ, ଅଳ୍ପ । ଭୋଗ—ଉପଭୋଗ ।

ହାତୀଧରାଳି ହାତୀକୁ ଖୋପରେ ପକାଇ ତାହାକୁ ସାମାନ୍ୟ କିଛି ଓସ୍ତ ପତ୍ର ଖାଇବାକୁ ଦିଏ ଏବଂ ପରେ ରାଜାଙ୍କୁ ସେହି ହାତୀ ବିକ୍ରୟ କରି ପ୍ରଚୁର ଧନପାଏ । ସେହିପରି ଉକ୍ତ ବେଶ୍ୟାମାନେ ମଧ୍ୟ ଋଷ୍ୟଶୃଙ୍ଗଙ୍କୁ ଅଳ୍ପ ମାତ୍ରାରେ ଶରୀର ଭୋଗ ଦେଇ ତତ୍‌ପରେ ତାହାଙ୍କୁ ରାଜାଙ୍କୁ ଅର୍ପଣ ପୂର୍ବକ ଧନ ପାଇବେ ବୋଲି ବିଚାର କଲେ ।

୫୮ । ପାଞ୍ଚି—ବିଚାର କରି । ବିଲୋକି—ଦେଖି । ଆଜନ୍ମସାଧୁ—ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗ ।

ସେହି ବେଶ୍ୟାମାନେ ଏହିପରି ବିଚାର କରି ଲତା ମଧ୍ୟରୁ ବାହାରିଲେ ଏବଂ ସେମାନଙ୍କୁ ଦେଖି ଋଷ୍ୟଶୃଙ୍ଗ ସେମାନଙ୍କ ନିକଟରେ ପହଞ୍ଚିଲେ ।

୫୯ । ବିକାର—କାମଭାବ ।

ଋଷ୍ୟଶୃଙ୍ଗ କାମମୋହିନୀ ସହିତ ବାହୁ ଛନ୍ଦାଛନ୍ଦି ହେବାରୁ ତାହାଙ୍କ କାମଭାବ ବଢ଼ିଲା ଏବଂ ସେ ତାହାକୁ ଚୁମ୍ବନ ଦେବାରୁ ତାଙ୍କର ଶରୀର ରୋମାଞ୍ଚିତ ହୋଇ ଉଠିଲା ।

ବୋଇଲେ ଜରତା ଗୁରୁ ଲୋଭିତ ଦର୍ଶନେ
ବଜେକର ଥରେ ଉଟଜକୁ କୃପାମନେ ଯେ । ୭୦ ।

ବ୍ରହ୍ମବଶ ରତ୍ନଶାସ୍ତ୍ର ତାଠାରୁ ଜାଣିବ
ବହୁଳେ ସମ୍ମତ କରି ଚଳିଲେ ସେ ଜବ ଯେ । ୭୧ ।

ବଜମି ନଉକାରେ ପ୍ରବେଶ ହେବା ଗୃହି
ବାରି ଭରି ଝଗ୍ର ପାଦ ଧୋଇ ତ୍ରୁମ୍ବୀ କହି ଯେ । ୭୨ ।

ବଲ୍କଳ ବୋଲି ପିନ୍ଧାଇ କୌଶେୟ ବସନ
ବ୍ୟାଘ୍ରଚର୍ମ ଭ୍ରମରେ ଦିନ୍ତି ଆ ଶଯ୍ୟାମାନ ଯେ । ୭୩ ।

---

୭୦ । ଉଟଜ—ପତ୍ରକୁଡ଼ିଆ ।

ଏହାପରେ କାମମୋହିନୀ ଋଷ୍ୟଶୃଙ୍ଗଙ୍କୁ କହିଲା—"ଆମର ଗୁରୁ ଜରତା ଆପଣଙ୍କୁ ଦେଖିବା ନିମିତ୍ତ ଅତ୍ୟନ୍ତ ଆଗ୍ରହୀ ହୋଇ ଉଠିଛନ୍ତି । ଆପଣ କୃପାପୂର୍ଣ୍ଣ ଚିତ୍ତରେ ଥରେ ଆମର ପତ୍ରକୁଡ଼ିଆକୁ ବିଜେ କରନ୍ତୁ ।

[ ବଜେ କର ଥରେ—ଏହାକୁ କେହି କେହି 'ବଜେ କ (ଜଳ) ରଥରେ' ବୋଲି ଅର୍ଥ କରିଥାନ୍ତି—ଦ୍ରଷ୍ଟବ୍ୟ : ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶା, ପ୍ରକାଶିତ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ଟୀକା ]

୭୧ । ବ୍ରହ୍ମବଶ—ପରଂବ୍ରହ୍ମଙ୍କୁ ବଶୀଭୂତ ବା କରଗତ କରିପାରିବା । ଜବ—ଶୀଘ୍ର ।

ସେହି ବେଶ୍ୟାମାନେ କହିଲେ—"ଆମ୍ଭମାନଙ୍କ ଗୁରୁ ଜରତାଠାରୁ ଆପଣ ପରଂବ୍ରହ୍ମଙ୍କୁ ବଶୀଭୂତ କରିପାରୁଥିବା ରତ୍ନଶାସ୍ତ୍ର ଶିକ୍ଷା କରିବେ ।" ଏହା ଶୁଣି ଖୁବ୍‌ବହୁଳ ହୋଇ ଋଷ୍ୟଶୃଙ୍ଗ ସେମାନଙ୍କ କଥାକୁ ସ୍ୱୀକାର କଲେ ଏବଂ ଶୀଘ୍ର ସେମାନଙ୍କ ସହିତ (ନୌକା ଅଭିମୁଖେ) ଗଲେ ।

୭୨ । ବଜମି—ପାଦପକାଇ । ବାରି—ଜଳ । ଝଗ୍ର—ଜଳପାତ୍ର ବିଶେଷ ।

ଋଷ୍ୟଶୃଙ୍ଗ ପାଦପକାଇ ଯାଇ ନୌକାରେ ପ୍ରବେଶ କରିବା ଦେଖି ଜରତା ସୁନାଝଗ୍ରରେ ଜଳପୂର୍ଣ୍ଣ କରିଆଣି ତାହାଙ୍କ ପାଦ ଧୋଇଦେଲା ଏବଂ କହିଲା—"ଏହା (ଝଗ୍ର) ହେଉଛି ଆମର ତ୍ରୁମ୍ବୀ" ।

୭୩ । କୌଶେୟ ବସନ—ପାଟଲୁଗା । ଦିନ୍ତିଆଶଯ୍ୟା—ପାଟରେ ତିଆରି ଗଦି ।

ଋଷିଙ୍କୁ ପାଟଲୁଗା ପିନ୍ଧାଇ ଦେଇ "ଏହା ଆମର ବଲ୍କଳ" ବୋଲି କହିଲା । ତାହାଙ୍କ ବିଶ୍ରାମ ନିମିତ୍ତ ପାଟ ତିଆରି ଗଦି ବିଛାଇ ଦେଇ 'ଏହା ଆମ୍ଭର ବ୍ୟାଘ୍ରଚର୍ମ' ବୋଲି କହିଲା ।

ବିବିଧ ସ୍ୱାଦୁ ପଦାର୍ଥ କରାଇ ଅଶନ
ବନାଇ ଚୂଳ କୁସୁମ ଚନ୍ଦନ ଲେପନ ଯେ । ୬୪ ।

ବସିଲା ଓଳଗି ପାଶେ ଜରତା ସୁମୁଖୀ
ବେଷ୍ଟିତା ଲତା ପାଦପେ ଦେଲା କୋଳ ଦେଖି ଯେ । ୬୫ ।

ବିଜ୍ଞା ସେ ପ୍ରଥମ ରସେ ଚନ୍ଦ୍ର ଗୃହଦେଲା
ବିଜ୍ଞାନେ ଋଷି କୁମାର ଉନ୍ମନେ ଶୋଇଲା ଯେ । ୬୬ ।

ବିଧୁନନ ଆରମ୍ଭିଲା ପୁରୁଷାୟିତରେ
ବନପତି ଉପରେ ହରିଣୀଲୀଳା କରେ ଯେ । ୬୭ ।

ବୈଶ୍ୱାନର ପରେ ନୃତ୍ୟ କରେ ଶୁଭ୍ରାପାଙ୍ଗୀ
ବିଷମ ସମସ୍ୟାହିଁ ପୂରିବା ଶ୍ଳେଷଭଙ୍ଗୀ ଯେ । ୬୮ ।

---

୬୪ । ଜରତା ଋଷ୍ୟଶୃଙ୍ଗଙ୍କୁ ନାନାବିଧ ସୁସ୍ୱାଦୁ ଖାଦ୍ୟପଦାର୍ଥ ଖୁଆଇଲା ଏବଂ ତାଙ୍କ ମୁଣ୍ଡର ଜଟାରେ ଫୁଲ ମଣ୍ଡିଦେଲା ଓ ଦେହରେ ଚନ୍ଦନ ଲେପନ କଲା ।

୬୫ । ସୁମୁଖୀ—ସୁନ୍ଦରମୁଖୀ ।
ସୁନ୍ଦରୀ ଜରତା ଋଷିଙ୍କୁ ଓଳଗି ହେଲା ଏବଂ ବୃକ୍ଷରେ ଲତା ଗୁଡ଼ାଇ ହେଲାପରି ସେ ଋଷିଙ୍କୁ ନିବିଡ଼ ଭାବରେ ଆଲିଙ୍ଗନ ପୂର୍ବକ ବସିଗଲା ।

୬୬ । ବିଜ୍ଞା—ପଣ୍ଡିତା । ପ୍ରଥମରସ—ଶୃଙ୍ଗାର ରସ । ଚନ୍ଦ୍ରଗୃହଦେଲା—କାମଭାବ ଉଦ୍ଦୀପନା କଲା । (ବିଭିନ୍ନ ତିଥିରେ ନାରୀ ଓ ପୁରୁଷର କେଉଁ ଅଙ୍ଗରେ ଚନ୍ଦ୍ର ଅବସ୍ଥାନ କରନ୍ତି, ରତିଶାସ୍ତ୍ରରେ ଲେଖାଯାଇଛି) । ବିଜ୍ଞାନେ—ଅଜ୍ଞାନ ହୋଇ । ଉନ୍ମନ—ଚଞ୍ଚଳ ହୋଇ ।
ରତିଶାସ୍ତ୍ର ଓ ଶୃଙ୍ଗାରରସ ପ୍ରବୀଣା ଜରତା ଋଷ୍ୟଶୃଙ୍ଗଙ୍କର ଚନ୍ଦ୍ର ଚାଳିଦେବାରୁ ମୁନିକୁମାର ଜ୍ଞାନଶୂନ୍ୟ ହୋଇଗଲେ ଏବଂ ଚଞ୍ଚଳହୋଇ ଶୋଇପଡ଼ିଲେ ।

୬୭ । ବିଧୁନନ—ରତିକ୍ରିୟା । ପୁରୁଷାୟିତରେ—ବିପରୀତ ରତିରେ । ବନପତି—ସିଂହ ।
ତତ୍ପରେ ଜରତା ବିପରୀତ ରତିକ୍ରିୟାଦ୍ୱାରା ଋଷ୍ୟଶୃଙ୍ଗଙ୍କୁ ସମ୍ଭୋଗ କଲା । ସେହି ଦୃଶ୍ୟ ଦେଖି ମନେହେଲା, ସତେ ଯେପରି ସିଂହ ଉପରେ ହରିଣୀ ଲୀଳା କରୁଛି । ଅନ୍ୟ ଅର୍ଥରେ—ବନପତି—ବୃନ୍ଦାବନର ଅଧିପତି ଶ୍ରୀକୃଷ୍ଣଙ୍କ ଉପରେ ଲକ୍ଷ୍ମୀ (ହରିଣୀ = ହରିଙ୍କ ପତ୍ନୀ) ଲୀଳା ରଚନା କରୁଛନ୍ତି ।

୬୮ । ବୈଶ୍ୱାନର—ଅଗ୍ନି, ଜଣେ ଋଷି । ଶୁଭ୍ରାପାଙ୍ଗୀ—ସ୍ୱାହାଦେବୀ । ବିଷମ ସମସ୍ୟା—ଅସମ୍ଭବ ବାକ୍ୟାର୍ଥ । ଶ୍ଳେଷଭଙ୍ଗୀ—ଶ୍ଳେଷଭାବରେ ଅର୍ଥ ।

ବସୁ ଚେତା, ଭାବେ ଅନ ଅନୁଭବୀ ଯୁବା
ବବୁଧାଳୟ ସୁଖ ଯେ ସେହି ଏହି ଅବା ଯେ । ୭୯ ।
ବାଜଣୀ କଙ୍କିଣୀ ବାଦ୍ୟ ତାଳ ତାଳି ସ୍ୱନ
ବ୍ୟାଖ୍ୟାନ ଧ୍ୱନ ଶ୍ଳେଷ ସେ କରଇ ପ୍ରଧାନ ଯେ । ୭୦ ।
ବବୃଦ୍ଧି ହୁଅଇ ସେହି ସ୍ୱରନାମା ହ୍ଲାଦେ
ବାଜେ ବେଣୀହାର ନାଚେ ନଷ୍ଟପ୍ରୁ ସେ ବାଦ୍ୟେ ଯେ । ୭୧ ।
ବାହିଲେ ସଲିଳ ରଥ କୈବର୍ତ୍ତେ ସେ କାଳେ
ବାହକ ପ୍ରାପ୍ତ ସେ ଦଣ୍ଡ ଧାରଣେ ବଶିଲେ ଯେ । ୭୨ ।

---

ପୁନଶ୍ଚ ସେହି ଦୃଶ୍ୟଦେଖି ମନେ ହେଉଥିଲା, ଯତେ ଯେପରି ଅଗ୍ନିଙ୍କ ଉପରେ ସ୍ୱାହାଦେବୀ ନୃତ୍ୟ କରୁଛନ୍ତି । (ଅନ୍ୟ ଅର୍ଥରେ—ବଶ୍ୱାନର ନାମକ ଋଷିଙ୍କ ଉପରେ ତାହାଙ୍କର ସ୍ତ୍ରୀ ଲୀଳା ରଚନା କଲପରି ମନେ ହେଉଥିଲା) । ଏଠାରେ ଶ୍ଳେଷଅଲଙ୍କାର ପ୍ରଯୁକ୍ତ ହୋଇଥିବାରୁ ଦ୍ୱିତୀୟ ଅର୍ଥଟି ଗ୍ରହଣ କଲେ ବଷମ ସମସ୍ୟା ପୂରଣ ହେବ ।

୬୯ । ଅନ ଅନୁଭବୀ—ପୂର୍ବରୁ କେବେ ଅନୁଭବ ନଥିବା । ବବୁଧାଳୟ—ସ୍ୱର୍ଗ ।

ଋଷିଙ୍କର ପୂର୍ବରୁ ଏହିପରି ଅନୁଭବ କେବେ ନଥିଲା । ସୁତରାଂ, ଚେତା ପାଇବା ପରେ ସେ ମନେକଲେ, "ଏହାହିଁ ସ୍ୱର୍ଗସୁଖ ହୋଇଥିବ ।"

୭୦ । ତାଳ ତାଳିସ୍ୱନ—ମୃଦଙ୍ଗ ପ୍ରଭୃତି ବାଦ୍ୟର ତାଳଶବ୍ଦ । ବ୍ୟାଖ୍ୟାନ—ବଶେଷ ଆଲୋଚନା କରି ଜାଣିବା । ଧ୍ୱନଶ୍ଳେଷ—ବଭିନ୍ନ ଶବ୍ଦ ଏକାଠି ହେବା, ଆଲିଙ୍ଗନ ହେତୁ ଧ୍ୱନ ।

ରତିକ୍ରିୟା ବେଳେ କଙ୍କିଣୀର କଣିକଣି ଧ୍ୱନ, ରତିକ୍ରିୟା ଜନତ ଧ୍ୱନ ଏବଂ ପରସ୍ପର ଆଲିଙ୍ଗନ ହେତୁ ବବଧ ଧ୍ୱନ ଶୁଣାଯାଉଥିଲା । ଏହା ସ୍ୱର୍ଗର ବବଧ ବାଦ୍ୟଯନ୍ତ୍ରରୁ ସୃଷ୍ଟି ହେଉଥିବା ତାଳଧ୍ୱନ ପରି ପ୍ରତୀତ ହେଉଥିଲା ।

୭୧ । ବବୃଦ୍ଧି ହୁଅଇ—ବଢ଼ଇ । ସ୍ୱରନାମା—ହାହା-ହୁହୁ ପ୍ରଭୃତି ଶବ୍ଦ, ଏହି 'ହାହା' 'ହୁହୁ' ନାମରେ ଗନ୍ଧର୍ବ ସ୍ୱର୍ଗରେ ଅଛନ୍ତି ।

ରତିକ୍ରୀଡା ସମୟରେ ହାହା ହୁହୁ ପ୍ରଭୃତି ଧ୍ୱନ ସୃଷ୍ଟି ହେଉଥିଲା ଏବଂ ଜରତାର ବେଣୀ ଓ ହାର ନର୍ତ୍ତକୀ ଭଙ୍ଗୀରେ ନୃତ୍ୟ କଲପରି ଜଣାଯାଉଥିଲା । ତାହା ସ୍ୱର୍ଗର ହାହା ହୁହୁ ପ୍ରଭୃତି ନାମଧାରୀ ଗନ୍ଧର୍ବମାନଙ୍କ ବାଦ୍ୟବାଦନ ଓ ଅପ୍ସରାମାନଙ୍କ ନୃତ୍ୟକ୍ରିୟା ତୁଲ୍ୟ ବୋଧ ହେଉଥିଲା ।

୭୨ । ସଲିଳରଥ—ନୌକା । ବାହକ—ସାରଥି ।

ସେହି ସମୟରେ କେଉଟମାନେ (ନୌକାଚାଳକ) ନୌକା ବାହିବାରେ ଲାଗିଲେ । ସେମାନେ ହାତରେ କାତବାଡ଼ି ଧରି ସାରଥି ତୁଲ୍ୟ ଦେଖାଯାଉଥିଲେ ।

ବୀଚରଙ୍କୁ ମୀନ କୂର୍ମ ଝିଙ୍କାଜନ ଯୋଟଖେ
ବେନ ରୋଧେ ମୃଗମୃଗୀ ନରନାରୀ ଦେଖେ ଯେ । ୭୩ ।
ବସ୍ତ୍ରକୁଞ୍ଚା ଚର୍ଚ୍ଚଳ ଗୁମ୍ଫରେ ସେ ମଣ୍ଡନ
ବସ୍ତୁତ ରୂପକ ରଥ ଯାତ୍ରାର ସମାନ ଯେ । ୭୪ ।
ବାସର ନିଶା ହେବାର ଜଣା ନୋହେ ତାହାଁ
ବାମା ଦ୍ୱାଦଶେ ଖଟନ୍ତି ରତିରସେ ମୋହି ଯେ । ୭୫ ।
ବେଳାରେ ଲଗିଲା ନାବ ଚମ୍ପାବତୀ ପୁରେ
ବରଷିଲା, ଋଷି ଝରନୀର ଲୋଡ଼ିବାରେ ଯେ । ୭୬ ।
ବହିଲା ପ୍ରବାହ ପୂର୍ଣ୍ଣ କେଦାର ହୋଇଲେ
ବିଭଣ୍ଡକ ପୁତ୍ର ପାଶେ ଲୋମପାଦ ମିଳେ ଯେ । ୭୭ ।

---

୭୩ । ବୀଚ—ଲହରୀ । ରଙ୍କୁ – ଦଉଡ଼ । ମୀନ—ମାଛ । କୂର୍ମ—କଇଁଚ । ଝିଙ୍କାଜନ—ଟଣାଓଟରା କରୁଥିବା ଲୋକ । ବେନରୋଧ—ଦୁଇକୂଳ ।

ଜଳର ଲହରୀମାଳା ରଥର ଦଉଡ଼ି, ନଦୀର ମାଛ ଓ କଇଁଚ ପ୍ରଭୃତି ରଥ ଟାଣୁଥିବା ଲୋକ ଏବଂ ନଦୀର ଉଭୟ ପାର୍ଶ୍ୱରେ ଥିବା ମୃଗମୃଗୀ ରଥ ଦେଖୁଥିବା ନରନାରୀ ପରି ଜଣାଯାଉଥିଲେ । (ଜଗନ୍ନାଥଙ୍କ ରଥଯାତ୍ରା ରୂପେ ଏହି ଦୃଶ୍ୟ କଳ୍ପିତ) ।

୭୪ । ବସ୍ତ୍ରକୁଞ୍ଚା—ଲୁଗାକୁଞ୍ଚା । ଚର୍ଚ୍ଚଳ—ପତାକା ।

ଜଗନ୍ନାଥଙ୍କ ରଥଯାତ୍ରା ବେଳେ ରଥରେ ଗୁମ୍ଫର ଓ ପତାକା ପ୍ରଭୃତି ଶୋଭାପାଇଲା ପରି, ଏହି ନୌକାରେ ମଧ୍ୟ ଲୁଗାକୁଞ୍ଚ ଶୋଭାପାଉଛି ।

୭୫ । ବାସର—ଦିନ । ନିଶା—ରାତି । ବାମା ଦ୍ୱାଦଶ—ବାରଜଣ ବେଶ୍ୟାନାରୀ ।

ରଥଯାତ୍ରା ସମ୍ବନ୍ଧରେ ଦିନରାତି ଜଣାପଡ଼େ ନାହିଁ । ସେହିପରି ବାରଜଣ ସୁନ୍ଦରୀ ନାରୀ (ବେଶ୍ୟା) ଋଷ୍ୟଶୃଙ୍ଗଙ୍କୁ ରତି ରସରେ ମୋହିତ କରି ତାହାଙ୍କ ସେବାରେ ଲଗିଥିବାରୁ ସେ ଦିନରାତି ଜାଣିପାରୁ ନଥିଲେ ।

୭୬ । ବେଳା—କୂଳ । ଝରନୀର—ଝରଣାପାଣି ।

ଏହିପରି ଭାବରେ ନୌକାଯାଇ ଚମ୍ପାବତୀପୁରର କୂଳରେ ଲଗିଲା । ସେତେବେଳେ ଋଷ୍ୟଶୃଙ୍ଗ ଝରପାଣି ଆବଶ୍ୟକ କରିବାରୁ ବର୍ଷା ହେଲା ।

୭୭ । ପ୍ରବାହ—ବର୍ଷାଜଳସ୍ରୋତ । କେଦାର—କିଆରି ।

ଚତୁର୍ଦ୍ଦିଗରେ ବର୍ଷାଜଳ ପ୍ରବାହିତ ହୋଇ କିଆରିସବୁ ଜଳପୂର୍ଣ୍ଣ ହୋଇଉଠିଲେ । ସେତେବେଳେ (ଋଷ୍ୟଶୃଙ୍ଗ ଆସିଲେ ବୋଲି ଜାଣି) ଲୋମପାଦ ରଜା ଋଷ୍ୟଶୃଙ୍ଗଙ୍କ ନିକଟରେ ପହଞ୍ଚିଲେ ।

ବିରଚିଲେ ଲକ୍ଷ୍ୟ ଗିରି ସଙ୍ଗେ ଋଷ୍ୟଶୃଙ୍ଗ
ବିଘାତ ବଜ୍ର ସୁହାସ ଯୋଗେ ଦନ୍ତଭଙ୍ଗ ଯେ । ୭୮ ।
ବିଷୟ ବୁଝାଉ ଯୋଷା ମହାତପୋବନ୍ତେ
ବାନ୍ଧି କଲ୍ୟାଣ ବସାଇ ରାଜା ଦଣ୍ଡବତେ ଯେ । ୭୯ ।
ବିମଳଚିତ୍ତେ ମଣ୍ଡିଲେ ଯାଇ ତା'ର ପୁରୀ
ବରଦାତା ପୁତ୍ରଦାନେ ହୋମାରମ୍ଭ କରି ଯେ । ୮୦ ।
ବାକକଲ୍ୟାଣିଏ ଶୁଣି ଦଶରଥେ କହି
ବେଶ୍ୟା ଜରତା ପ୍ରମୁଖ୍ୟା ଜାଙ୍ଗଳିକ ହୋଇ ଯେ । ୮୧ ।
ବିବର ପର୍ଣ୍ଣ କୁଟୀରେ ଥିଲେ ମୁନିନାଗ
ବଜାଇ ସପ୍ତକୀ ନାଗେଶ୍ୱର ବାଦ୍ୟ ବେଗ ଯେ । ୮୨ ।

---

୭୮ । ବିଘାତ—ଆଘାତ । ସୁହାସ—ମନ୍ଦହାସ ।

ଲୋମପାଦ ରାଜା ଋଷ୍ୟଶୃଙ୍ଗଙ୍କୁ ଦେଖି ତାହାଙ୍କୁ ପର୍ବତ ବୋଲି ମନେକଲେ ଏବଂ ନିଜର ମନ୍ଦହାସ ବଜ୍ର ତୁଲ୍ୟ ହେଲା । ବଜ୍ର ଯେଉଁପରି ପର୍ବତର ଦନ୍ତ ଭେଦକରେ, ସେହିପରି ରାଜାଙ୍କ ମନ୍ଦହାସ ମୁନିଙ୍କ ଦନ୍ତ ଭାଙ୍ଗିଦେଲା ।

୭୯ । ଯୋଷା—ସ୍ତ୍ରୀ । ମହାତପୋବନ୍ତ—ମହାତପସ୍ୱୀ ।

ମହାତପସ୍ୱୀ ଋଷ୍ୟଶୃଙ୍ଗଙ୍କୁ ଜରତା ସମସ୍ତ ବିଷୟ ବୁଝାଇ ଦେବାରୁ ମୁନି ତାହା ବୁଝିଲେ ଏବଂ ରାଜା ଦଣ୍ଡବତ ହେବାରୁ ତାହାଙ୍କୁ କଲ୍ୟାଣ କରି ନିକଟରେ ବସାଇଲେ ।

୮୦ । ବିମଳ ଚିତ୍ତେ—ନିର୍ମଳ ମନରେ ।

ତତ୍ପରେ ସେ ନିର୍ମଳ ମନରେ ଯାଇ ସେହି ଲୋମପାଦ ରାଜାଙ୍କ ନଗରୀ ମଣ୍ଡନ କଲେ ଏବଂ ପୁତ୍ରଦାନ ବିଷୟରେ ବର ପ୍ରଦାନ ନିମିତ୍ତ ଇଚ୍ଛୁକ ହୋଇ ହୋମକର୍ମ ଆରମ୍ଭ କଲେ ।

୮୧ । ବାକକଲ୍ୟାଣିଏ—ବ୍ରାହ୍ମଣମାନେ । ପ୍ରମୁଖ୍ୟା—ମୁଖ୍ୟ ସ୍ଥାନୀୟା । ଜାଙ୍ଗଳିକ—ସାପୁଆକେଳା, ବିଷବୈଦ୍ୟ ।

ବ୍ରାହ୍ମଣମାନେ ଏହି ଘଟଣା ଦେଖି ଯାଇ ଦଶରଥଙ୍କୁ କହିଲେ । ସାପୁଆକେଳା ନାଗସର୍ପକୁ ତାହାର ବିଲ ମଧ୍ୟରୁ ବାହାର କରି ଆଣିଲା ପରି ଜରତା ବେଶ୍ୟା ଋଷ୍ୟଶୃଙ୍ଗଙ୍କୁ କିପରି ତାହାଙ୍କ ଆଶ୍ରମରୁ ଚମ୍ପାବତୀ ନଗରୀକୁ ଆଣିଲେ, ତାହା ସେମାନେ ବ୍ୟାଖ୍ୟାନ କଲେ ।

୮୨ । ବିବର—ଗାତ । ପର୍ଣ୍ଣକୁଟୀର—ପତ୍ରକୁଡ଼ିଆ । ସପ୍ତକୀ—ବୀଣା । ନାଗେଶ୍ୱର ବାଦ୍ୟ—ପଦ୍ମତୋଲା ।

ବିଭ୍ରମଦତ୍ତ କୃତଚନ୍ତ୍ର ରସ ଗୀତ ଗାଇ
ବଧୂଚୂର୍ଣ୍ଣ ମନ୍ତ୍ରଧୂଳି ପକାଇ ପକାଇ ଯେ । ୮୩ ।

ବାହାରକୁ ଆଣି ନାବ ପେଡ଼ାରେ ମୁଦିଲି
ବିଳାସ ବଶ କରଣ ପୁଣି ଖେଳାଇଲି ଯେ । ୮୪ ।

ବାରବାମା—ବାର ଭୋଗିନୀରେ ସେହି ଯୋଗୀ
ବିଷ୍ଣୁବ୍ରତ ଏଣିକ ସେ ବୋଲାଇବେ ଭୋଗୀ ଯେ । ୮୫ ।

ବନ୍ଦ ନାଗରେ ଈଶ୍ୱର ପର ଚମ୍ପାପୁରେ
ବସନ୍ତ କୃପାଳୁ ହୋଇ କୁମାର ଦାନରେ ଯେ । ୮୬ ।

---

ମୁନିଶ୍ରେଷ୍ଠ (ମୁନିରୂପକ ନାଗସର୍ପ) ପର୍ଣ୍ଣକୁଟୀର ରୂପକ ଗଣ୍ଡି ମଧ୍ୟରେ ଥିଲେ । ସେହି ବେଶ୍ୟାମାନେ ବୀଣାରୂପକ ପଦ୍ମତୋଳା ବଜାଇଲେ ।

୮୩,୮୪ । ବିଭେଦତ କୃତଚନ୍ତ୍ର—ମନ ଉନ୍ମାଦକାରୀ । ବଧୂଚୂର୍ଣ୍ଣ—କର୍ପୂର ।

ସାପୁଆକେଳା ପଦ୍ମତୋଳାରେ ସ୍ୱର ସୃଷ୍ଟି କଲା ପରି ସେହି ବେଶ୍ୟାମାନେ ମନ ଉନ୍ମାଦକାରୀ ରସପୂର୍ଣ୍ଣ ଗୀତ ଗାଇଲେ । ସାପୁଆ କେଳା ଯେଉଁପରି ସର୍ପ ଉପରେ ମନ୍ତ୍ରଧୂଳି ପକାଏ, ସେହିପରି ବେଶ୍ୟାମାନେ ତାହାଙ୍କ ଉପରେ କର୍ପୂରଗୁଣ୍ଡ ପକାଇଲେ । ତତ୍‌ପରେ ସେହି ମୁନିରୂପକ ନାଗଙ୍କୁ ସେମାନେ ପଣକୁଡ଼ିଆ ରୂପକ ଗାତରୁ ଆଣି ନାବ ରୂପକ ପେଡ଼ିରେ ବନ୍ଦକରି ରଖିଲେ ଏବଂ ତାହାଙ୍କ ସହିତ ବିଳାସ ରଚନା ପୂର୍ବକ ତାଙ୍କୁ ବଶ କରାଇ ଖେଳାଇଲେ ।

୮୫ । ବାରବାମାବାର—ବେଶ୍ୟାସମୂହ । ଭୋଗିନୀ—ସର୍ପିଣୀ, ଅନ୍ୟ ଅର୍ଥରେ ସୁଖିନୀ । ଯୋଗୀ—ଋଷ୍ୟଶୃଙ୍ଗ । ଭୋଗୀ—ସର୍ପ, ସୁଖଭୋଗୀ ।

ଜରତାଦ ବେଶ୍ୟାମାନେ ଭୋଗିନୀ (ସର୍ପିଣୀ) ହେଲେ । ଯୋଗୀ ଋଷ୍ୟଶୃଙ୍ଗ ସେମାନଙ୍କ ଦ୍ୱାରା ସଂପୃକ୍ତ ହେବାରୁ ଭାବିଲେ, ଏଣିକି ସେ କ'ଣ 'ଭୋଗୀ' (ସର୍ପ) ବୋଲାଇବେ । (ମାନେ, ତାହାନୁହେ) ଭୋଗିନୀ (ସୁଖିନୀ) ବେଶ୍ୟାମାନଙ୍କ ସହିତ ସେ ଯୋଗୀ (ଯୁକ୍ତ) ହେବାରୁ ଏଣିକ ଭୋଗୀ (ସୁଖୀ) ହେବେ ।

୮୬ । ବନ୍ଦ—ବନ୍ଦନ କର, ସେବନ କର । ନାଗରେ—ସର୍ପମାନଙ୍କୁ, ତାମ୍ବୁଲ । ଚମ୍ପାପୁର—ଚମ୍ପାମଣ୍ଡିତ ହୋଇ, ଚମ୍ପାବତୀ ପୁରରେ । କୁମାର—କାର୍ତ୍ତିକେୟ, ପୁତ୍ର ।

ବାର୍ତ୍ତା ଶୁଣି ତୋଷ ଭରି ହୋଇ ସୂର୍ଯ୍ୟବଂଶୀ
ବଳ ସଜ କରି ଚମ୍ପାପୁରେ ମିଳେ ଆସି ଯେ । ୮୭ ।

ବାଟୁ ଲୋମପାଦ ନେଇ ଋଷିଙ୍କି ଭେଟାଇ
ବିକଶିତ ହାସ କରି କଲ୍ୟାଣେ ବସାଇ ଯେ । ୮୮ ।

ବିପ୍ରୋତ୍ତମ ପୁଚ୍ଛନ୍ତେ ତବ ସର୍ବ ମଙ୍ଗଳ କି
ବୋଲେ ବିକଳେ ପୁଚ୍ଛିଲ ସର୍ବଜ୍ଞ ତରକ ଯେ । ୮୯ ।

ବ୍ୟଥା ଜନମୁ ବିନତ ହୋଇଣ ତଦର୍ଥୀ
ବର ରୂପାଖିବା ଅଛୁ କହି ଦେଲା ଏଥି ଯେ । ୯୦ ।

---

ଋଷ୍ୟଶୃଙ୍ଗ ମହାଦେବଙ୍କ ତୁଲ୍ୟ ଶୋଭା ପାଉଛନ୍ତି । ମହାଦେବ ସର୍ପଧାରଣ କଲା ପରି ସେ ମୁଖରେ ତାମ୍ବୂଲ ଧାରଣ କରିଛନ୍ତି । ମହାଦେବ ଚମ୍ପାଫୁଲ ମଣ୍ଡିତ ହୋଇଥାନ୍ତି ଏବଂ ଋଷି ମଧ୍ୟ ଚମ୍ପାବତୀ ନଗରୀକୁ ମଣ୍ଡନ କରିଛନ୍ତି । ମହାଦେବ ଯେଉଁପରି କାର୍ତ୍ତିକେୟଙ୍କ (କୁମାର)ଙ୍କୁ ପାଳନ କରିବା ବିଷୟରେ ଅନୁରାଗୀ, ଏହି ଋଷି ସେହିପରି ଅପୁତ୍ରିକମାନଙ୍କୁ ପୁତ୍ର (କୁମାର) ଦାନ କରିବା ବିଷୟରେ ଅନୁରାଗୀ ଅଟନ୍ତି ।

୮୭ । ସୂର୍ଯ୍ୟବଂଶୀ—ସୂର୍ଯ୍ୟବଂଶର ରାଜା ଦଶରଥ । ଭରି—ଶୀଘ୍ର । ବଳ—ସୈନ୍ୟସାମନ୍ତ ।
ଏହି ଖବର ପାଇ ରାଜା ଦଶରଥ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସଙ୍ଗେ ସଙ୍ଗେ ସୈନ୍ୟସାମନ୍ତଙ୍କ ସହିତ ଚମ୍ପାବତୀ ନଗରୀରେ ଆସି ଉପସ୍ଥିତ ହେଲେ ।

୮୮ । ଲୋମପାଦ ରାଜା ଦଶରଥଙ୍କ ଆଗମନ ସମ୍ବାଦ ପାଇ ତାହାଙ୍କୁ ବାଟରୁ ନେଇ ଋଷିଙ୍କୁ ଭେଟ କରାଇଲେ । ଋଷି ଦଶରଥଙ୍କୁ ଦେଖି ହାସ ପ୍ରକାଶ ପୂର୍ବକ କଲ୍ୟାଣ କରି ଆସନରେ ବସାଇଲେ ।

୮୯ । ବିପ୍ରୋତ୍ତମ—ଋଷିଶ୍ରେଷ୍ଠ ଋଷ୍ୟଶୃଙ୍ଗ । ବିକଳେ—ଅଠିକ୍ ଭାବରେ ।
ମୁନିଶ୍ରେଷ୍ଠ ଋଷ୍ୟଶୃଙ୍ଗ ଦଶରଥଙ୍କୁ ପଚାରିଲେ, "ତୁମର ସର୍ବ ମଙ୍ଗଳ ତ ?" ସେତେବେଳେ ଦଶରଥ ମୁନିଙ୍କୁ କହିଲେ, "ଆପଣ ସର୍ବଜ୍ଞ ହୋଇ ମଧ୍ୟ ଏକଥା ମତେ କିପରି ତର୍କଣା କରି ପଚାରୁଛନ୍ତି ? (ମୋର କଣ ପ୍ରକୃତରେ ମଙ୍ଗଳ ହୋଇଛି କି ?) ।"

୯୦ । ତଦର୍ଥୀ—ତାହାର ପ୍ରାର୍ଥୀ ବା ପୁତ୍ରାର୍ଥୀ । ବର ରୂପାଖିବା—ଜରତା ବେଶ୍ୟା ।
ବ୍ୟଥିତ ମନରେ ଦଶରଥ ଋଷ୍ୟଶୃଙ୍ଗଙ୍କ ନିକଟରେ ପୁତ୍ରାର୍ଥୀ ହୋଇ ବିନୟ ପ୍ରକାଶ କରନ୍ତେ, ଜରତା ତାହାଙ୍କର ମନକଥା ପ୍ରକାଶ କରି ଦେଲା ।

ବରାଙ୍ଗନା ସୁନ୍ଦରୀରତନ ତବ ସୁତା
ବିବାହ କର ଯତିଇନ୍ଦ୍ରେ ହେବେ ସୁତଦାତା ଯେ । ୯୧ ।

ବୀରବର ଉପଇନ୍ଦ୍ର ଭଞ୍ଜ କହେ ରସ
ବସ୍ୟାଣୋଇ ପଦରେ ଏ ଗ୍ରନ୍ଥ ହେଲା ଶେଷ ଯେ । ୯୨ ।

---

୯୧ । ବରାଙ୍ଗନା—ଅତ୍ୟନ୍ତ ସୁନ୍ଦରୀ । ଯତୀନ୍ଦ୍ରେ—ମୁନିଶ୍ରେଷ୍ଠ ଋଷ୍ୟଶୃଙ୍ଗଙ୍କୁ ।
ଜରତା କହିଲା—"ହେ ରାଜା ଦଶରଥ ! ଆପଣଙ୍କର ଅତ୍ୟନ୍ତ ସୁନ୍ଦରୀ କନ୍ୟା (ଶାନ୍ତା)କୁ ଋଷିଙ୍କ ସହିତ ବିବାହ କରାଇଦିଅନ୍ତୁ । ସେ ଆପଣଙ୍କୁ ପୁତ୍ର ପ୍ରଦାନ କରିବେ ।

୯୨ । ବୀରବର ଉପେନ୍ଦ୍ରଭଞ୍ଜ କହୁଛନ୍ତି, ରାମଚରିତ ମୂଳକ ଏହି ଗ୍ରନ୍ଥ ବସ୍ୟାନବେ ପଦରେ ଶେଷହେଲା ।

# ପଞ୍ଚମ ଛାନ୍ଦ

ରାଗ—ମଙ୍ଗଳ ଗୁଜ୍ଜରୀ

ବିଭାକର ବଂଶୀ ଶୁଣି ପୁଲକ ବପୁ
ବିଭାକର ଲଗ୍ନ ବୁଝି ବଶିଷ୍ଠ କହି । ୧ ।
ବିନ୍ୟାସ କଲେ ସେ ବାଣୀ ସନ୍ଧ୍ୟାବସାନେ
ବସାଇବା ମଣ୍ଡପରେ କନ୍ୟା ସୁମନେ । ୨ ।
ବିଜନ ସ୍ଥାନରେ ବସି ବେନି ନୃପତି
ବିବିଧ ସମ୍ଭାର କରି ନଗ୍ର ମଣ୍ଡାନ୍ତି । ୩ ।
ବାସଙ୍ଗ ରସ ନବାନୁଭବୀ ଭ୍ରମର
ବାରିଜ ବାସ ଲଭି କି ନୋହେ ଆତୁର । ୪ ।

---

୧ । ବିଭାକର ବଂଶୀ—ସୂର୍ଯ୍ୟ ବଂଶର ସନ୍ତାନ (ଦଶରଥ) । ପୁଲକ ବପୁ—ଅତିଶୟ ଆନନ୍ଦିତ ହୋଇ ।

(ଋଷ୍ୟଶୃଙ୍ଗଙ୍କ ସହିତ ଶାନ୍ତା କନ୍ୟାର ବିବାହ ନିଶ୍ଚୟ କରିବା ଠାରୁ) ଶୁଣି ଦଶରଥ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଶୁଭ ଲଗ୍ନ ଠିକ୍ କରି ଶାନ୍ତା କନ୍ୟା ସହିତ ଋଷ୍ୟଶୃଙ୍ଗଙ୍କୁ ବିବାହ କରାଇବା ନିମିତ୍ତ ବଶିଷ୍ଠଙ୍କୁ କହିଲେ ।

୨ । ବିନ୍ୟାସ କଲେ—ପ୍ରୟୋଗ କଲେ । ସନ୍ଧ୍ୟାବସାନେ—ସନ୍ଧ୍ୟାପରେ ।

ଏହା ଶୁଣି ବଶିଷ୍ଠ କହିଲେ, "ସନ୍ଧ୍ୟାପରେ କନ୍ୟାକୁ ନେଇ ମଣ୍ଡପରେ ବସାଇବା ।"

୩ । ବିଜନ ସ୍ଥାନ—ନିର୍ଜନ ସ୍ଥାନ । ସମ୍ଭାର—ଆୟୋଜନ, ସାଜସଜ୍ଜା ।

ରାଜା ଦଶରଥ ଓ ଲୋମପାଦ ଏକାନ୍ତ ସ୍ଥାନରେ ବସି ବିବିଧ ସମ୍ଭାରରେ ନଗରକୁ ମଣ୍ଡାଇବା ପାଇଁ ଆଦେଶ ଦେଲେ ।

୪ । ନବାନୁଭବୀ—ନୂତନ ଅନୁଭବ ଲାଭ କରିଥିବା । ବାରିଜବାସ—ପଦ୍ମ ଫୁଲର ସୁଗନ୍ଧ ।

ଯେଉଁ ଭ୍ରମର ନୂତନ କରି ବାସଙ୍ଗ ଫୁଲର ରସ ଆସ୍ୱାଦନ କରିଥାଏ, ସେ ପଦ୍ମ ଫୁଲର ସୁଗନ୍ଧ ଲାଭକଲେ ତାହାକୁ ଉପଭୋଗ କରିବା ନିମିତ୍ତ ଆତୁର ହୁଏ ନାହିଁ କି ? (ଅର୍ଥାତ୍, ଜରତା ବେଶ୍ୟାକୁ ଉପଭୋଗ କରିଥିବା ଋଷ୍ୟଶୃଙ୍ଗ ପଦ୍ମିନୀ ଜାତୀୟା ଶାନ୍ତାକନ୍ୟାକୁ ପାଇବା ନିମିତ୍ତ ଆତୁର ହୋଇ ଉଠିଲେ ।)

ବାରସ୍ତ୍ରୀକ ପୃଚ୍ଛି ଏକାନ୍ତରେ ତା କାନ୍ତ
ବର୍ଦ୍ଧନ ଅର୍ଥେ କ୍ରମେ ସେ ଶୋଭା କଥିତ । ୫ ।

ବଳକ୍ଷ ପାଶ ପାଟଳୀ ସାରସ ପାଳ
ବାହୁ ଶ୍ରବଣ ଉଦର ଗଣ୍ଡରେ ଦଳ । ୬ ।

ବକ୍ଷୋଜ କଦମ୍ବ ଚକ୍ରେ ଟକାଇ ଉକା
ବିଭ୍ରମ ଭ୍ରମରେ ଲକ୍ଷ୍ୟ ନାଭି ଅଳକା । ୭ ।

---

୫ । ବାରସ୍ତ୍ରୀ—ବେଶ୍ୟା ସ୍ତ୍ରୀ ଜରତ୍ତା । ପୃଚ୍ଛି—ପଚାରି । ତା କାନ୍ତ—ସେହି ଶାନ୍ତାକନ୍ୟାର ସୌନ୍ଦର୍ଯ୍ୟ । ବର୍ଦ୍ଧନ ଅର୍ଥେ—ଆସକ୍ତି ବଢ଼ାଇବା ନିମିତ୍ତ । କଥିତ—କହିଲା ।

ଋଷ୍ୟଶୃଙ୍ଗ ଏକାନ୍ତ ସ୍ଥାନରେ ଜରତ୍ତାକୁ ଶାନ୍ତାକନ୍ୟାର ସୌନ୍ଦର୍ଯ୍ୟ ବିଷୟ ପଚାରିଲେ । ସେହି ବେଶ୍ୟା ଶାନ୍ତାପ୍ରତି ଋଷିଙ୍କର ଆସକ୍ତି ବଢ଼ାଇବା ପାଇଁ ତାହାର (ଶାନ୍ତାର) ସୌନ୍ଦର୍ଯ୍ୟ ଗୋଟିକ ପରେ ଗୋଟିଏ ବର୍ଣ୍ଣନା କଲା ।

୬ । ବଳକ୍ଷ—ଅତୁଳନୀୟ । ସାରସ—ପଦ୍ମ । ପାଳ—ଖଣ୍ଡାର ମୂଳରେ ଥିବା ଅର୍ଦ୍ଧଚନ୍ଦ୍ରାକାର ଅଂଶ । ଶ୍ରବଣ—କାନ । ଗଣ୍ଡ—ଗାଲ ।

ଜରତ୍ତା କହିଲା—ଶାନ୍ତାର ବାହୁବନ୍ଧନ ଫାଶଠାରୁ ମଧ୍ୟ ଆହୁରି ମନୋହର । ତାହାର କର୍ଣ୍ଣ ପାଟଳୀ ଫୁଲଠାରୁ ଅଧିକ ସୁନ୍ଦର । ତାହାର ଉଦର ପଦ୍ମପତ୍ରଠାରୁ ଅଧିକ ସୁନ୍ଦର ଏବଂ ଗଣ୍ଡସ୍ଥଳ ଖଣ୍ଡାର ପାଳ ଅପେକ୍ଷା ଅଧିକ ଚିତ୍ତାକର୍ଷକ । ଏହି କାରଣରୁ ତାହାର ସୌନ୍ଦର୍ଯ୍ୟ ଅତୁଳନୀୟ ।

୭ । ବକ୍ଷୋଜ—ସ୍ତନ । ଚକ୍ର—ଚକ୍ରବାକ ପକ୍ଷୀ ଓ ରଥର ଚକ । ବିଭ୍ରମ—ବିଶେଷ ଭ୍ରମ । ଭ୍ରମରେ—ଭଉଁରୀରେ, ଭ୍ରମରମାନଙ୍କଠାରେ । ଅଳକା—କପାଳ ଉପରେ ଥିବା ଛୋଟ ଛୋଟ ବାଳ ।

ସେହି ଶାନ୍ତା କନ୍ୟାର ବକ୍ଷୋଜଦ୍ୱୟ ଚକ୍ରବାକ ପକ୍ଷୀଠାରୁ ମଧ୍ୟ ଅଧିକ ସୁନ୍ଦର । ତାହାର କଦମ୍ବ ଆକାର ଓ ସୌନ୍ଦର୍ଯ୍ୟରେ ରଥଚକକୁ ମଧ୍ୟ ବଳିଯାଇଛି । ବୋଧହୁଏ ସୌନ୍ଦର୍ଯ୍ୟରେ ପରାଜିତ ହେବାରୁ ଚକ୍ରବାକ-ଚକ୍ରବାକୀ ରାତିରେ କରୁଣ ଚିତ୍କାର କରନ୍ତି ଏବଂ ରଥ ଚାଲିଲା ବେଳେ କେଁ କେଁ ଶବ୍ଦ କରେ । ତାହାର ନାଭି ଜଳ ଭଉଁରୀଠାରୁ ଅଧିକ ଲୋଭନୀୟ ଏବଂ କପାଳ ଉପରେ ଥିବା ଚୂର୍ଣ୍ଣ କୁନ୍ତଳ ଭ୍ରମରଠାରୁ ମଧ୍ୟ ଅଧିକ ସୁନ୍ଦର ଦେଖାଯାଉଥିଲା । ନାଭି ଓ ଅଳକା ସଙ୍ଗେ ଯଥାକ୍ରମେ ଜଳଭଉଁରୀ ଓ ଭ୍ରମରକୁ ତୁଳନା କରିବା ପାଗଳାମି ହେବ ।

ବସ୍ତ୍ରୀର୍ଣ୍ଣରେ ଶୋଭ ରମ୍ଭା ପ୍ରଭାକୁ ଗଞ୍ଜି
ବୃଷାଳ ଉରୁଯୁଗଳ ଚରମ ରାଜ ।୮।

ବଘଟିତ ହର ଓଷ୍ଟେ ପ୍ରାତୋଦୟରେ
ବଶୀର୍ଣ୍ଣ କଟୀ ନାସିକା ମଧୂର ଗିରେ ।୯।

ବଲକ୍ଷିତ ଚନ୍ଦ୍ରହାସେ ତନୁ ଶୀତଳେ
ବର୍ଣ୍ଣ ସୁଲପନ ରୋମାବଳୀର ଭୂଲେ ।୧୦।

---

୮। ବସ୍ତ୍ରୀର୍ଣ୍ଣରେ ଶୋଭ—ସୌନ୍ଦର୍ଯ୍ୟ ପ୍ରସାରିତ ହେବାରେ । ରମ୍ଭା—କଦଳୀ ବୃକ୍ଷ (ନାରୀମାନଙ୍କ ଜାନୁକୁ ଓଲଟ କଦଳୀ ବୃକ୍ଷ ସହିତ ତୁଳନା କରାଯାଇଥାଏ)। ପ୍ରଭା—ଦେବମୂର୍ତ୍ତିର ମସ୍ତକର ପଛପଟେ ଥିବା ଦୀପ୍ତିମନ୍ତ ଅଂଶ । ବୃଷାଳ ଉରୁ—ସୁବଳିତ ଜଙ୍ଘ । ଚରମ—ପିଠି ।

ସେହି ଶାନ୍ତାର ଅଙ୍ଗର ସୌନ୍ଦର୍ଯ୍ୟ ବଳସିତ ହୋଇ ଥିବାରୁ ତାହାର ସୁବଳିତ ଜାନୁଦ୍ୱୟ କଦଳୀ ବୃକ୍ଷକୁ ଧିକ୍‌କାର କରୁଛି । ତାହାର ମାଂସଳ ପିଠି ପ୍ରଭାଠାରୁ ମଧ ଅଧିକ ରମଣୀୟ ।

୯। ବଘଟିତ—ସମାନ ନ ହେବା । ହର ସୂର୍ଯ୍ୟ, ସିଂହ, ଶୁଆ, କୋକିଳ । ବଶୀର୍ଣ୍ଣ—ଦଦୁଆ । ଗିର—ବଚନ ।

ସେହି ଶାନ୍ତାର ଓଷ୍ଠ ପ୍ରଭାତକାଳୀନ ବାଲସୂର୍ଯ୍ୟଠାରୁ ମଧ ଅଧିକ ଲାଲବର୍ଣ୍ଣ । ତାହାର ଅଣ୍ଟା ସିଂହର ଅଣ୍ଟାଠାରୁ ମଧ ଅଧିକ କ୍ଷୀଣ (ସରୁ)। ନାସାର ସୌନ୍ଦର୍ଯ୍ୟ ଶୁକର ନାସାର ସୌନ୍ଦର୍ଯ୍ୟଠାରୁ ଅଧିକତର ଏବଂ ତାହାର କଣ୍ଠସ୍ୱର କୋକିଳର ସ୍ୱରଠାରୁ ଅଧିକ ମଧୁର ।

୧୦। ବଲକ୍ଷିତ—ଅସମାନ । ଚନ୍ଦ୍ର—କର୍ପୂର, ଚନ୍ଦନ, ସୁବର୍ଣ୍ଣ, ଜହ୍ନ, କାର୍ମିଖିଲତା । ଲପନ—ମୁଖ ।

ସେହି ଶାନ୍ତାର ମନ୍ଦହାସ କର୍ପୂରଠାରୁ ମଧ ଅଧିକ ଶୁଭ୍ର, ତାହାର ଦେହ ଚନ୍ଦନ ଠାରୁ ଅଧିକ ଶୀତଳ, ଶରୀର ସ୍ୱର୍ଣ୍ଣଠାରୁ ଅଧିକ ଦୀପ୍ତିମନ୍ତ, ମୁଖ ଚନ୍ଦ୍ରଠାରୁ ଅଧିକ ରମଣୀୟ ଏବଂ ରୋମାବଳୀ କାର୍ମିଖି ଲତାଠାରୁ ମଧ୍ୟ ଅଧିକ କୋମଳ ଓ ଲୁଳିତ ହୋଇଛି ।

ବାଳ ଭ୍ରୂଲତା ଲୋଚନ ଗମନ ଗଳା
ବପୁ ମୃଗଙ୍କେ ସାରଙ୍ଗ ନୋହିବେ ତୁଳା । ୧୧ ।
ବିଧାତା ବୋଇବିଧାନେ ଶାନ୍ତ ସେ ଶାନ୍ତା
ବୋଲି ମଉନ ହୋଇଲି ବାରବନତା । ୧୨ ।
ବିଧୁନ୍ତୁଦ ପ୍ରାୟ ହୋଇ ସନ୍ଧ୍ୟା ଆସିଲା
ବିବସ୍ୱାନଗ୍ରାସୀ ରଙ୍ଗଭାବ ଦଶିଲା । ୧୩ ।
ବାଳୀ ସେ କାଳୀ, ପିଧାମି କ ପାଟଶାଢ଼ୀ
ବହିଲେ କ ସରସ୍ୱତୀ କାଳନ୍ଦୀ ଜଡ଼ି । ୧୪ ।

---

୧୧ । ବପୁ—ଶରୀର । ସାରଙ୍ଗ—ମେଘ, ଧନୁ, ମୃଗ, ହାତୀ, ଶଙ୍ଖ, ପଦ୍ମଫୁଲ ।

ସେହି ଶାନ୍ତାର କେଶରାଶି ମେଘଠାରୁ ଅଧିକ କୃଷ୍ଣବର୍ଣ୍ଣ ଓ ସ୍ନିଗ୍ଧ । ତାହାର ଭ୍ରୂଲତା ଧନୁଠାରୁ ଅଧିକ ସୁନ୍ଦର । ତାହାର ଚକ୍ଷୁ ମୃଗର ଚକ୍ଷୁଠାରୁ ସୁନ୍ଦରତର, ଗୃହ ଗଜର ଗତ ଅପେକ୍ଷା ଅଧିକ ଚିତ୍ତାକର୍ଷକ, କଣ୍ଠ ଶଙ୍ଖଠାରୁ ଅଧିକ ସୁନ୍ଦର ଏବଂ ଶରୀରର ସୁଗନ୍ଧ ପଦ୍ମଠାରୁ ମଧ୍ୟ ଅଧିକ ଆମୋଦ ଦାୟକ ।

୧୨ । ବାରବନତା—ବେଶ୍ୟା (ଜରତା)

ବିଧାତା ଏହି ଅତ୍ୟନ୍ତ ସୁନ୍ଦରୀ ଶାନ୍ତା କନ୍ୟାକୁ ସୃଷ୍ଟି କରିବା ପରେ ଶାନ୍ତି ଲଭି କଲେ । (କାରଣ, ସେ ନିଜର ମନମୂତାବକ ଏକ ପରମା ସୁନ୍ଦରୀ କନ୍ୟା ଗଢ଼ି ପାରିଛନ୍ତି; ତେଣୁ ପରମ ଆତ୍ମପ୍ରସାଦ ଲଭିକଲେ) । ଏତିକ କହିଦେଇ ଜରତା ମୌନ ହେଲା ।

୧୩ । ବିଧୁନ୍ତୁଦ—ରାହୁ । ବିବସ୍ୱାନ—ସୂର୍ଯ୍ୟ ।

ଏହାପରେ ରାହୁତୁଲ୍ୟ ସନ୍ଧ୍ୟା ଆସି ଉପସ୍ଥିତ ହେଲା । ସୂର୍ଯ୍ୟୋପରାଗ ସମୟରେ ରାହୁ ସୂର୍ଯ୍ୟମଣ୍ଡଳକୁ ଗ୍ରାସକଲେ, ତାହା ଯେଉଁପରି ଆରକ୍ତ ବର୍ଣ୍ଣ ଦେଖାଯାଏ, ସେହିପରି ବର୍ତ୍ତମାନ ସୂର୍ଯ୍ୟ ଲୋହିତବର୍ଣ୍ଣ ଧାରଣ କଲେ ।

୧୪ । ବାଳୀକାଳୀ—କୃଷ୍ଣବର୍ଣ୍ଣା ସ୍ତ୍ରୀ । ପିଧାମି କ—ପିନ୍ଧିଛୁ କି । କାଳନ୍ଦୀ—ଯମୁନାନଦୀ ।

ସନ୍ଧ୍ୟାକାଳ ଏକ କୃଷ୍ଣବର୍ଣ୍ଣା ନାରୀ ପରି ଦେଖାଗଲା । ସେତେବେଳେ ଅସ୍ତଗାମୀ ସୂର୍ଯ୍ୟଙ୍କ ରକ୍ତିମ କିରଣ ଉକ୍ତ ନାରୀର ଲୋହିତରଙ୍ଗର ପାଟବସ୍ତ୍ର ପରି ଜଣାଗଲା । ମନେହେଲା, ସେହି ସନ୍ଧ୍ୟାରୂପକ କୃଷ୍ଣବର୍ଣ୍ଣା ନାରୀ ସତେ ଯେପରି ଏକ ପାଟଶାଢ଼ୀ ପିନ୍ଧିଛି । ପୁନଶ୍ଚ ସନ୍ଧ୍ୟାବେଳରେ ପଶ୍ଚିମ ଦିଗରେ ଏକ ସମୟରେ କୃଷ୍ଣବର୍ଣ୍ଣ (ଅନ୍ଧକାର) ଏବଂ ଲୋହିତବର୍ଣ୍ଣ (ଅସ୍ତଗାମୀ ସୂର୍ଯ୍ୟଙ୍କ ରକ୍ତିମ ଆଭା) ଦେଖି ମନେହେଲା, ସତେ ଯେପରି ସରସ୍ୱତୀ ଓ ଯମୁନାନଦୀ ଏକତ୍ର ପ୍ରବାହିତ ହେଉଛନ୍ତି । (ଅଳଙ୍କାର ଶାସ୍ତ୍ରରେ ସରସ୍ୱତୀ ନଦୀର ଜଳକୁ ଲୋହିତବର୍ଣ୍ଣ ଓ ଯମୁନାର ଜଳକୁ କୃଷ୍ଣବର୍ଣ୍ଣ ବୋଲି ପ୍ରତିପାଦନ କରାଯାଇଛି ।

ବନଜାରି କର କଟୁ ଆସିଲ୍ ବଶି
ବାରୁଣୀ ତ୍ରିବେଣୀ ଘାଟେ ପଡ଼ିଲା ଘୋଷି । ୧୫ ।
ବସ୍ତୃତ ପକ୍ଷେ ବକାଦି ପ୍ରମୁଖ ଦ୍ୱିଜେ
ବିକାଶି ଶ୍ଳୋକବାଣୀ କି ବିହାରେ ମଜ୍ଜେ । ୧୬ ।
ବଜ୍ରଘୋଷ ଆଦି ବାଦ୍ୟ ବାଜେ ଏକାଳେ
ବରକନ୍ୟା ଋଷ୍ୟଶୃଙ୍ଗ ଶାନ୍ତାକୁ କଲେ । ୧୭ ।
ବାରି ବିତାଳିଦେଲେ ଶଙ୍ଖେ ଶଙ୍ଖେ ରତନ
ବସ୍ତ୍ରାସହ ଧେନୁ କଉଷେୟ ବସନ । ୧୮ ।

---

୧୫ । ବନଜାରି—ଚନ୍ଦ୍ର ( ବନଜ=ପଦ୍ମ, ତାହାର ଶତ୍ରୁ—ଚନ୍ଦ୍ର ) । କର—କିରଣ । ବାରୁଣୀ—ପଶ୍ଚିମଦିଗ, ତ୍ରିବେଣୀଘାଟର ଏକ ସ୍ନାନଯୋଗ । ତ୍ରିବେଣୀଘାଟ—ଗଙ୍ଗା, ଯମୁନା, ସରସ୍ୱତୀର ମିଳନସ୍ଥଳ ।

ଯେତେବେଳେ ଚନ୍ଦ୍ରଙ୍କର ଶୁଭ୍ରକିରଣ କଟୁ ପରିମାଣରେ ପ୍ରକାଶିତ ହେଲା । ତାହା ପଶ୍ଚିମ ଦିଗସ୍ଥ କୃଷ୍ଣବର୍ଣ୍ଣ ଓ ନୀଳବର୍ଣ୍ଣ ସହିତ ମିଳିତ ହୋଇ ଗଙ୍ଗା, ଯମୁନା ଓ ସରସ୍ୱତୀର ଏକତ୍ର ମିଳନସ୍ଥଳ (ତ୍ରିବେଣୀ ଘାଟ) ତୁଲ୍ୟ ପ୍ରତିଭାତ ହେଲା ଏବଂ ଏହି ମିଳନ ବାରୁଣୀ ଦିଗ (ପଶ୍ଚିମଦିଗ)ରେ ହୋଇଥିବାରୁ ସେଠାରେ ଏକ ବାରୁଣୀ ସ୍ନାନଯୋଗ ପଡ଼ିଲା ପରି ମନେହେଲା । (ଗଙ୍ଗାନଦୀର ଜଳର ବର୍ଣ୍ଣ ଶୁଭ୍ରବର୍ଣ୍ଣ ବୋଲି ଅଳଙ୍କାର ଶାସ୍ତ୍ରରେ କୁହାଯାଇଛି ।).

୧୬ । ବସ୍ତୃତ ପକ୍ଷେ—ବସ୍ତୃତ ହୋଇଛି ପିତୃପକ୍ଷ ତର୍ପଣ ପ୍ରଭୃତିରେ ଧର୍ମକର୍ମ ଯେଉଁମାନଙ୍କର (ବ୍ରାହ୍ମଣ), ପକ୍ଷ ବା ଡ଼େଣା ବିସ୍ତାର କରି (ପକ୍ଷୀ) । ବକାଦି—ବେଗ୍ଲ । ଦ୍ୱିଜ—ପକ୍ଷୀ, ବ୍ରାହ୍ମଣ ।

ସନ୍ଧ୍ୟା ହେବାରୁ ବେଗ୍ଲ ପ୍ରଭୃତି ବକାଦି ପକ୍ଷିମାନେ ଡେ଼ଣାବିସ୍ତାର ପୂର୍ବକ କଳରବ କରି ବିହାର କଲେ । ତାହା ଦେଖି ଜଣାଗଲା, ଯେତେ ଯେପରି ବ୍ରାହ୍ମଣମାନେ ତ୍ରିବେଣୀ ଘାଟରେ ପିତୃପକ୍ଷରେ ସ୍ନାନ ଓ ତର୍ପଣାଦି କରି ଶ୍ଳୋକ ଉଚ୍ଚାରଣ କରୁଛନ୍ତି ।

୧୭ । ବଜ୍ରଘୋଷ—ବାଦ୍ୟ ବିଶେଷ ।

ସେତେବେଳେ ବଜ୍ରଘୋଷ ଇତ୍ୟାଦି ବାଦ୍ୟ ବାଜିଲା ଏବଂ ଋଷ୍ୟଶୃଙ୍ଗ ଓ ଶାନ୍ତାଙ୍କୁ ବରକନ୍ୟା ବେଶରେ ମଣ୍ଡନ କରାଗଲା ।

୧୮ । ବାରି—ଜଳ । ଶଙ୍ଖେ—ଶଙ୍ଖରେ । ଶଙ୍ଖେ—୧ରେ ୧୨ଗୋଟି ଶୂନ୍ୟ ଦେଲେ ଯେଉଁ ବିଶାଳ ସଂଖ୍ୟା ହେବ, ସେହି ସଂଖ୍ୟକ । ବସ୍ତ୍ରାସହ— ବାଛୁରୀ ସହିତ । ଧେନୁ—ଗାଈ । କଉଷେୟ ବସନ—ପାଟଲୁଗା ।

କନକାସନ ସାବିତ୍ରୀ ପ୍ରାପ୍ତ ହରଷିଲେ
ବିନୋଦେ ଶର୍ବରୀରେ ଏକାନ୍ତେ ରସିଲେ । ୧୯ ।

ବାହୁଲେୟ ପ୍ରାପ୍ତ ହେଲା ପ୍ରାତ ଉତ୍ପତ୍ତି
ବିଭ୍ରାଡ଼ି ତାରକାସୁର ପ୍ରମୋଦ ଅତି । ୨୦ ।

ବିଭ୍ରାଜ ଉଜ୍ଜ୍ୱଳ ଶକ୍ତି ମନ୍ତ୍ରରେ ସେହି
ବିହାରୀ ହୋଇ କ୍ରମଶେ ଷଷ୍ଠୀରେ ସ୍ନେହୀ । ୨୧ ।

---

ରାଜା ଦଶରଥ (ବିବାହ ବେଦୀରେ) ଋଷିଙ୍କରେ ପାଣିରେ (କନ୍ୟା ସହିତ) ଏକ ଶଙ୍ଖ ପରିମିତ ରତ୍ନ, ବାଛୁରୀଯୁକ୍ତ ଗାଈ ଓ ପାଟଲୁଗା ପ୍ରଭୃତି ( ଯୌତୁକ ଆକାରରେ ) ଦେଲେ ।

୧୯ । କନକାସନ—ବ୍ରହ୍ମା । ସାବିତ୍ରୀ—ବ୍ରହ୍ମାଙ୍କ ପତ୍ନୀ । ଶର୍ବରୀ—ରାତ୍ରି । ଏକାନ୍ତେ—ନିର୍ଜନ ସ୍ଥାନରେ ।

ଋଷ୍ୟଶୃଙ୍ଗ ଓ ଶାନ୍ତା ବିବାହ କରିସାରିବା ପରେ ବ୍ରହ୍ମା ଓ ସାବିତ୍ରୀ ତୃପ୍ତି ହେଲେ । ସେମାନେ ରାତ୍ରି କାଳରେ ଅତି ଆନନ୍ଦରେ ନିର୍ଜନ ସ୍ଥଳରେ ରତି ରସ ଉପଭୋଗ କଲେ ।

୨୦ । ବାହୁଲେୟ—କାର୍ତ୍ତିକେୟ । ବିଭ୍ରାଡ଼ି—ବିତାଡ଼ିତ କରି । ତାରକାସୁର—ତାରକ ନାମକ ଅସୁର, ତାରା ଓ ସୂର୍ଯ୍ୟ ।

ତତ୍ପରେ ପ୍ରଭାତ ହେଲା । ଉକ୍ତ ପ୍ରଭାତକାଳ କାର୍ତ୍ତିକେୟଙ୍କ ଜନ୍ମ ତୁଲ୍ୟ ପ୍ରତିଭାତ ହେଲା । କାରଣ, କାର୍ତ୍ତିକେୟ ଜନ୍ମହେଲା ପରେ ତାରକ ନାମକ ରାକ୍ଷସକୁ ବଧକରି ଦେବଗଣଙ୍କର ଅତ୍ୟନ୍ତ ଆନନ୍ଦ ବର୍ଦ୍ଧନ କରାଇଥିଲେ । ସେହିପରି ବର୍ତ୍ତମାନ ପ୍ରାତଃକାଳ ହେବାରୁ ତାରକାଗଣ ଜ୍ୟୋତଶୂନ୍ୟ ହୋଇପଡ଼ିଲେ ଏବଂ ସୂର୍ଯ୍ୟଦେବ ପ୍ରକାଶ କଲେ ।

୨୧ । ବିଭ୍ରାଜ—ଶୋଭାପାଇ । ଶକ୍ତି—କାର୍ତ୍ତିକେୟଙ୍କ ଅସ୍ତ୍ର । ବିହାରୀ ହୋଇ—ବିହାର କରି । ଷଷ୍ଠୀ—ଷଷ୍ଠୀଦେବୀ (ତାହାଙ୍କର ଛଅ ମାତା), ଛଅ ଦଣ୍ଡ (ଏକ ଘଣ୍ଟା = ଅଢ଼େଇ ଦଣ୍ଡ) ।

( ତାରକାସୁର ବଧ ବେଳେ ) କାର୍ତ୍ତିକେୟ ଯେଉଁପରି 'ଶକ୍ତି' ଧାରଣ ପୂର୍ବକ ଶୋଭା ପାଉଥିଲେ, ପୁନଶ୍ଚ କାର୍ତ୍ତିକେୟ ବିହାର କ୍ରମରେ ଛଅମାତାଙ୍କ ଠାରେ (ଷଷ୍ଠୀ) ସ୍ନେହ ପ୍ରକାଶ କଲା ପରି ପ୍ରାତଃକାଳ ମଧ୍ୟ ଛଅ ( ଷଷ୍ଠୀ ) ଦଣ୍ଡରେ ସ୍ନେହ ରହିଲା (ଛଅ ଦଣ୍ଡ ପର୍ଯ୍ୟନ୍ତ ରହିଲା) ।

ବାରକରେ ଖ୍ୟାତ ଶିବପୁରେ ଉତ୍ସବେ
ବାଦନ ଯେ ଶଙ୍ଖମାଳଗଣ ହିଁ ଭବେ । ୨୨ ।
ବିଗତ ନିଦ୍ରା ଏକାଳେ ଦଶରଥର
ବସାଇ ଜାମାତା ଫେରିଗଲେ ରଥର । ୨୩ ।
ବପ୍ରକ୍ରମି ପରବେଶ ଅଯୋଧ୍ୟା ଦୁର୍ଗେ
ବ୍ରତ ଆଚରଇ ତହିଁ ମହର୍ଷି ବର୍ଗେ । ୨୪ ।
ବୀତହୋତ୍ର ସ୍ଥାପି ଯଜ୍ଞକୁଣ୍ଡେ ସତ୍ୱରେ
ବ୍ରହ୍ମବେତ୍ତା ହୋମ କଲେ ପୁତ୍ର ଅର୍ଥରେ । ୨୫ ।
ବ୍ୟାପି ତହୁଁ ଧୂମାବଳୀ ଊର୍ଦ୍ଧ୍ୱେ ଚପଳେ
ବିୟତରେ ଜଳଧର ପ୍ରାୟେ ଦିଶିଲେ । ୨୬ ।

---

୨୨ । ବାରକରେ—ବାରଗୋଟି ହାତରେ; ସୋମ, ମଙ୍ଗଳ ପ୍ରଭୃତିବାର । ଶିବପୁର—କୈଳାସରେ, ଶିବ ମନ୍ଦିରରେ । ଶଙ୍ଖମାଳଗଣ—ମାଳିମାନେ ଶଙ୍ଖ ବଜାଇଲେ, ଶିବଙ୍କ ପ୍ରମଥ ଗଣ ଶଙ୍ଖ ବଜାଇଲେ । ଭବେ—ଜନ୍ମହୁଅନ୍ତେ, ଭକ୍ତିଭାବରେ ।

କାର୍ତ୍ତିକେୟ ବାରଗୋଟି ହାତରେ ଶୋଭିପାଉଥିଲେ ଏବଂ ସେ ଜନ୍ମହେବା ପରେ କୈଳାସରେ ଆନନ୍ଦ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଶିବଙ୍କ ପ୍ରମଥଗଣ ଶଙ୍ଖ ବଜାଇଥିଲେ । ସେହିପରି ପ୍ରାତଃକାଳ ସୋମ, ମଙ୍ଗଳ ପ୍ରଭୃତି ବାରକୁ ପ୍ରକାଶ କରଏ । ପ୍ରାତଃକାଳ ହେବାରୁ ଶିବମନ୍ଦିରରେ ମାଳିମାନେ ଭକ୍ତିପୂର୍ଣ୍ଣ ଭାବରେ ଶଙ୍ଖ ବଜାଇଲେ ।

୨୩ । ବିଗତ ନିଦ୍ରା—ନିଦଭାଙ୍ଗିବା । ଜାମାତା—ଜ୍ୱାଇଁ ।

ପ୍ରାତଃକାଳ ହେବାରୁ ଦଶରଥଙ୍କ ନିଦଭାଙ୍ଗିଲା ଏବଂ ସେ ଜାମାତା ଋଷ୍ୟଶୃଙ୍ଗଙ୍କୁ ରଥରେ ବସାଇ ଅଯୋଧ୍ୟା ଫେରିଲେ ।

୨୪ । ବପ୍ର—ନଗର ବାହାରର ପାଚେରି । ମହର୍ଷିବର୍ଗେ—ଋଷିମାନଙ୍କୁ ।

ଦଶରଥ ରଥରେ ଯାଇ ଅଯୋଧ୍ୟାର ବାହାର ପାଚେରି ଅତିକ୍ରମ ପୂର୍ବକ ଅଯୋଧ୍ୟା ଦୁର୍ଗରେ ପ୍ରବେଶ ହେଲେ ଏବଂ ଋଷିମାନଙ୍କୁ ବ୍ରତ ଆଚରଣ କରିବା ପାଇଁ କହିଲେ ।

୨୫ । ବୀତହୋତ୍ର—ଅଗ୍ନି । ସତ୍ୱରେ—ଶୀଘ୍ର । ବ୍ରହ୍ମବେତ୍ତା—ବ୍ରହ୍ମଜ୍ଞ । ପୁତ୍ର ଅର୍ଥରେ—ପୁତ୍ର ପାଇବା ନିମିତ୍ତ ।

ତତ୍ପରେ ଯଜ୍ଞ କୁଣ୍ଡରେ ଅଗ୍ନି ସ୍ଥାପନ ପୂର୍ବକ ବ୍ରହ୍ମବେତ୍ତା ଋଷ୍ୟଶୃଙ୍ଗ ଦଶରଥଙ୍କ ପୁତ୍ରପ୍ରାପ୍ତି ନିମିତ୍ତ ଯଜ୍ଞ କଲେ ।

୨୬ । ଧୂମାବଳୀ—ଧୂମସମୂହ । ବିୟତ—ଆକାଶରେ ।

ସେହି ଯଜ୍ଞରୁ ଧୂଆଁ ଉଠି ଆକାଶରେ ଘନେ ଘନେ ବ୍ୟାପ୍ତ ହୋଇଗଲା ଏବଂ ତାହା ମେଘପରି ଦେଖାଗଲା ।

ଅନୂଳ ଲକ୍ଷ୍ୟ ବଡ଼ଭି ରଙ୍ଗ କେତନ
ବରହ ଟେକ ଅନାଇ କେକୀ ନର୍ତ୍ତନ । ୨୭ ।
ବସ୍ଥିର ଚତ୍ତ ତୃଷାର୍ତ୍ତି ଯେତେ ସାରଙ୍ଗ
ଯାଥିଯାଥି ହୋଇ ଉଡ଼ିଲେ ନକଟେ ରଙ୍ଗ । ୨୮ ।
ବାଯୁନାଏ ଦୁନ୍ଦୁଭି ବଜାଉ ହରଷେ
ବଜନତ ସ୍ତନତ କ ପ୍ରତେ ମାନସେ । ୨୯ ।
ବଟବକ ମଧୁଶ୍ରୀ ଭେଶ୍ରୀ ଦାତ୍ୟୁହ କଙ୍କ
ବର୍ଷାଭୂ ଝମକ ସହିଁ ଉଚ ନାଦକ । ୩୦ ।
ବଳାକା ପ୍ରକାର ହଟ୍ଟେ ଚଗ୍ଳମାନ
ବଂଶେ ଉଡ଼ୁଛନ୍ତି ହୋଇ ଅତ ରଞ୍ଜନ । ୩୧ ।

---

୨୭ । ବଡ଼ଭି—ଅଟ୍ଟାଳିକା । କେତନ—ପତାକା । ବରହ—ଚନ୍ଦ୍ରିକା । କେକୀ—ମୟୂର ।
ରାଜାଙ୍କ ଅଟ୍ଟାଳିକା ଉପରେ ଉଡ଼ୁଥିବା ଲାଲରଙ୍ଗର ପତାକା ସେହି ଧୂମ୍ରବର୍ଣ୍ଣ ସହିତ ମିଶି ମେଘ ଦେହରେ ବିଜୁଳିର ଚମକ ତୁଲ୍ୟ ଦେଖାଗଲା । ତାହା ଦେଖି ମୟୂରଗଣ ବର୍ଷାର ଆଗମନ ବୋଲି ଭାବି ଚନ୍ଦ୍ରିକା ଟେକି ନୃତ୍ୟକଲେ ।

୨୮ । ବସ୍ଥିର ଚତ୍ତ—ଚଞ୍ଚଳମନା । ସାରଙ୍ଗ—ଚାତକ ପକ୍ଷୀ । ଯାଥି ଯାଥି—ଦଳ ଦଳ ।
(ସେହି ଦୃଶ୍ୟ ଦେଖି ମେଘ ମନେକରି) ତୃଷାର୍ତ୍ତ ଚାତକଗଣ ଅସ୍ଥିରମନା ହୋଇ ଉଠିଲେ ଏବଂ ଦଳବଦ୍ଧ ହୋଇ ସେହି ଧୂମ୍ରରାଶି ନିକଟରେ ଉଡ଼ିବାରେ ଲାଗିଲେ ।

୨୯ । ବାଯୁନାଏ—ବାଦ୍ୟ ବଜାଇବା ଲୋକ । ଦୁନ୍ଦୁଭି—ଏକ ପ୍ରକାର ବାଦ୍ୟ । ବଜନତ—ଜାତ ହେବା । ସ୍ତନତ—ମେଘଗର୍ଜନ ।
ଯେତେବେଳେ ବାଦ୍ୟକାରଗଣ ଦୁନ୍ଦୁଭି ବାଦ୍ୟ ବଜାଇବାରୁ ତାହା ମନରେ ମେଘଧ୍ୱନି (ବଜ୍ରଧ୍ୱନି)ର ଧାରଣା ସୃଷ୍ଟି କଲା ।

୩୦ । ବଟବକ—ବଗୁର । ମଧୁଶ୍ରୀ—ମହୁରୀ । ଦାତ୍ୟୁହ—ଡାହୁକ । ବର୍ଷାଭୂ—ବେଙ୍ଗ । ଝମକ—ବାଦ୍ୟବିଶେଷ ।
ମହୁରୀ ଓ ଭେରୀ ପ୍ରଭୃତି ବାଦ୍ୟ ବାଜି ଉଠିବାରୁ ତାହା ଯଥାକ୍ରମେ ଡାହୁକ ଓ କଙ୍କର ବର୍ଷାକାଳୀନ ଶବ୍ଦ ତୁଲ୍ୟ ପ୍ରତୀତ ହେଲା । ପୁନଶ୍ଚ ଝମକ ବାଦ୍ୟର ଉଚ୍ଚଧ୍ୱନି ବେଙ୍ଗ ଶବ୍ଦର ଧାରଣା ମନରେ ସୃଷ୍ଟିକଲା ।

୩୧ । ବଳାକା—ବଗ । ଚଗ୍ଳ—ପତାକା । ବଂଶେ—ବାଉଁଶରେ । ଅତରଞ୍ଜନ – ଅତି ସୁନ୍ଦର ।
(ରାଜାଙ୍କ ନଅର ଏବଂ ଯଜ୍ଞକୁଣ୍ଡ ନିକଟରେ) ବାଉଁଶ ଉପରେ ଲାଗି ଉଡ଼ୁଥିବା ଅତି ସୁନ୍ଦର ପତାକା ଗୁଡ଼ିକ ବଗପରି ଦେଖାଯାଉଥିଲା ।

ବରଷିବେ କୃପାଜଳ ଉଦୟେ ହରି
ବହ୍ନିକୁଣ୍ଡ ନଭ ଅବଲମ୍ବନ କରି । ୩୨ ।

ବଶିଷ୍ଠାଦି ଋଷ୍ୟଶୃଙ୍ଗ ସେଠାରେ ଥିଲେ
ବିହୀନ ନିମିଷ ଯେ ସେମାନେ ନମିଲେ । ୩୩ ।

ବରୁଣାଳୟ କରୁଣାକର ବୋଇଲେ
ବିରାଜ କମ୍ବୁ ଚକ୍ର ଗଦାବ୍ଜେ ମଣ୍ଡୁଳେ । ୩୪ ।

ବିଧୃତ କର ମକର ଲକ୍ଷଣମାନ
—କୁଣ୍ଡାନ୍ତ ମହନ୍ତା ଯୋଗେ ନମ୍ରନମୀନ । ୩୫ ।

---

୩୨ । ହରି—ଭଗବାନ ବିଷ୍ଣୁ, ମେଘ । ବହ୍ନିକୁଣ୍ଡେ—ଯଜ୍ଞକୁଣ୍ଡରେ । ନଭ—ଆକାଶ । ଅବଲମ୍ବନ—ଆଶ୍ରୟ ।

ମେଘ ଆକାଶକୁ ଆଶ୍ରୟ କରି ଜଳ ବର୍ଷଣ କରେ । ସେହିପରି ଭଗବାନ ବିଷ୍ଣୁ, ଯଜ୍ଞକୁଣ୍ଡକୁ ଆଶ୍ରୟ କରି କୃପାବାରି ବର୍ଷଣ କରିବେ (ଅର୍ଥାତ୍, ଦଶରଥଙ୍କ ପ୍ରତି କୃପା କରିବେ) ।

୩୩ । ବିହୀନ ନିମିଷ—ଆଖି ପଲକ ନ ପକାଇ (ଅପଲକ ନେତ୍ରରେ) ।

ସେହି ଯଜ୍ଞକୁଣ୍ଡ ନିକଟରେ ବଶିଷ୍ଠ ମହର୍ଷି ଓ ଋଶ୍ୟଶୃଙ୍ଗ ଉପସ୍ଥିତ ଥିଲେ । ଉଭୟେ ଅପଲକ ଦୃଷ୍ଟିରେ ଯଜ୍ଞପ୍ରତି ଗୃହେ ନମସ୍କାର କଲେ ।

୩୪ । ବରୁଣାଳୟ—ସାଗର । ବିରାଜ—ବିରାଜିତ ହୁଅ । କମ୍ବୁ—ଶଙ୍ଖ ।

ସେମାନେ (ବଶିଷ୍ଠ ଓ ଋଷ୍ୟଶୃଙ୍ଗ) ଯଜ୍ଞକୁଣ୍ଡକୁ ଲକ୍ଷ୍ୟ କରି କହିଲେ, "ହେ କୃପାନିଧି ! ହେ କରୁଣାକର ! ଆପଣ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରି ଏହି ଯଜ୍ଞକୁଣ୍ଡରେ ବିରାଜିତ ହୁଅନ୍ତୁ ।"

୩୫ । ବିଧୃତ କର—ଧାରଣ କରିଛୁ । ମକର—କୁମ୍ଭୀର । ମହନ୍ତାଯୋଗ—ଧ୍ୟାନଯୋଗ ବିଶେଷ ।

ସେମାନେ (ଭଗବାନଙ୍କୁ 'ଦୟାର ସାଗର' ବୋଲି ପ୍ରମାଣିତ କରିବାକୁ ଯାଇ) କହିଲେ—"ସମୁଦ୍ରରେ ଯେଉଁପରି ମକର (କୁମ୍ଭୀର) ରହିଥାଏ, ଆପଣ ସେହିପରି ମକରକୁଣ୍ଡଳ ଧାରଣ କରିଛନ୍ତି । ସମୁଦ୍ରରେ ମତ୍ସ୍ୟ ରହିଥାଏ । ଆପଣଙ୍କ ହସ୍ତରେ ସେହିପରି ମତ୍ସ୍ୟାଦି ସାମୁଦ୍ରିକ ଚିହ୍ନ ରହିଛି । ମହନ୍ତାଯୋଗରେ ଲୋକମାନେ ସମୁଦ୍ରରେ ସ୍ନାନ କଲାପରି ଯୋଗୀ ଓ ଭକ୍ତମାନଙ୍କର ନେତ୍ର ରୂପକ ମୀନ ଆପଣଙ୍କ ପାଦରେ ନିମଗ୍ନ ହୋଇଥାଏ ।"

ବୋଇତୁଆଳେ ଯେ ଦଶରଥ ନୃପତି
ବାଞ୍ଛୁ ବାରେ କର ତାରେ ରତ୍ନ ପ୍ରାପତି । ୩୬ ।
ବଡ଼ବାନଳେ ପକାଅ ରାକ୍ଷସଗଣ
ବ୍ୟତ୍ରକେ ଏଥିରୁ ନାହିଁ ଆନ ମାର୍ଗଣ । ୩୭ ।
ବ୍ୟାକୋଷ କୁସୁମ ହାସ ମୁଖେ ଧଇଲେ
ବୋଲି 'ଅସ୍ତୁ' ସ୍ୱର ଚରୁ ରୂପେ ଦିଶିଲେ । ୩୮ ।
ବ୍ୟଞ୍ଜଳି କରନ୍ତେ କର ସେ ଋଷ୍ୟଶୃଙ୍ଗ
ବ୍ରହ୍ମରୂପୀ ପରବେଶ ହୋଇଲେ ବେଗ । ୩୯ ।
ବ୍ରାହ୍ମଣ-ଶ୍ରେଷ୍ଠ ତା ରଜା ହସ୍ତରେ ଦେଲେ
ବାଣ୍ଟି ସବ ମହଷୀରେ ଦିଅ ବୋଇଲେ । ୪୦ ।

---

୩୬ । ବୋଇତୁଆଳ—ବୋଇତ ବ୍ୟବସାୟୀ । ବାଞ୍ଛିବା – କାମନା କରିବା ।

ସେମାନେ ଆହୁରି କହିଲେ—"ଦଶରଥ ରଜା ବୋଇତ ବ୍ୟବସାୟୀ ତୁଲ୍ୟ ଅଟନ୍ତି । ବୋଇତ ବ୍ୟବସାୟୀ ଯେଉଁପରି ସର୍ବଦା ରତ୍ନ ପାଇବା ନିମିତ୍ତ ଲାଳସା ରଖିଥାଏ, ସେହିପରି ରଜା ଦଶରଥ ପୁତ୍ରରତ୍ନ ପାଇବାକୁ କାମନା କରୁଛନ୍ତି । ଆପଣ ତାହାଙ୍କର ମନୋବାଞ୍ଛା ପୂରଣ କରନ୍ତୁ ।"

୩୭ । ବଡ଼ବାନଳେ—ସମୁଦ୍ରର ଅଗ୍ନିରେ (ବଡ଼ବାଗ୍ନିରେ) । ବ୍ୟତ୍ରକେ—ବ୍ୟତିରେକେ । ଆନ ମାର୍ଗଣ—ଅନ୍ୟ ମାଗୁଣି (ମାଗିବା) ।

"ହେ ପ୍ରଭୁ ! ଆପଣ ରାକ୍ଷସମାନଙ୍କୁ ବଡ଼ବାଗ୍ନି ମଧ୍ୟରେ ପକାଇ ଦିଅନ୍ତୁ । ଏହା ବ୍ୟତୀତ ଆପଣଙ୍କୁ ଅନ୍ୟ କୌଣସି ବିଷୟ ଆମ୍ଭେମାନେ ମାଗୁନାହୁଁ ।"

୩୮ । ବ୍ୟାକୋଷ କୁସୁମ—ଫୁଟନ୍ତା ଫୁଲ । ଅସ୍ତୁ—ହେଉ ।

(ଋଷିମାନଙ୍କର ଏହି ପ୍ରାର୍ଥନା ଶୁଣି ଯଜ୍ଞକୁଣ୍ଡରେ ଆବିର୍ଭୂତ ଭଗବାନ ବିଷ୍ଣୁ) ପ୍ରସ୍ଫୁଟିତ ଫୁଲ ପରି ମୁଖରେ ହାସ ପ୍ରକାଶ କଲେ ଏବଂ 'ଅସ୍ତୁ' (ତଥାସ୍ତୁ) ବୋଲି କହିଲେ । ତତ୍ପରେ ସେ ଯଜ୍ଞକୁଣ୍ଡରେ ସ୍ୱରଗୋଟି ଚରୁ ରୂପେ ଦେଖାଦେଲେ ।

୩୯ । ବ୍ୟଞ୍ଜଳି—ଅଞ୍ଜଳି । ବ୍ରହ୍ମରୂପୀ—ଚରୁରୂପକ ବ୍ରହ୍ମ ।

ସେତେବେଳେ ଋଷ୍ୟଶୃଙ୍ଗ ଅଞ୍ଜଳି କରିବାରୁ ସେହି ଚରୁ ରୂପୀ ବ୍ରହ୍ମ ତାହାଙ୍କ ହସ୍ତରେ ପ୍ରବେଶ କଲେ ।

୪୦ । ବ୍ରାହ୍ମଣଶ୍ରେଷ୍ଠ—ଋଷିଶ୍ରେଷ୍ଠ ଋଷ୍ୟଶୃଙ୍ଗ । ମହିଷୀ—ରାଣୀ ।

ଋଷ୍ୟଶୃଙ୍ଗ ମହର୍ଷି ସେହି ଚରୁକୁ ରଜା ଦଶରଥଙ୍କ ହସ୍ତରେ ଦେଲେ ଏବଂ କହିଲେ—"ଏହି ଚରୁକୁ ଆପଣ ସମସ୍ତ ରାଣୀଙ୍କ ମଧ୍ୟରେ ବାଣ୍ଟି ଦିଅନ୍ତୁ ।"

ବାତ ମଳୟାଦ୍ରିରୁ ଯେ ବହଇ ଯେବେ
ବଂଶକମେ ନାହିଁ ଯଥା ହେବା ଚନ୍ଦନ । ୪୧ ।

ବ୍ରତ-ନୋହ୍ନ ସାତଶତ ସତଗୃଳଣି
ବାମା ଅଛନ୍ତି କୌଶଲ୍ୟା କୈକେୟୀ ଭଣି । ୪୨ ।

ଚରୁକୁ ନୃପତି ଦୁଇଭାଗ ତା କଲେ
ବହ୍ୱଳେ ସେ ଦୁହିଁଙ୍କର ପାଣିରେ ଦେଲେ । ୪୩ ।

ବିମଳହୃଦୟା ଭଣି କଲ ଅଛେଳା
ବେନି ବେନି ଭାଗ ଦେଲେ ସନ୍ତୋଷେ ରଜା । ୪୪ ।

---

୪୧ । ବାତ—ପବନ । ମଳୟାଦ୍ରି—ମଳୟ ପର୍ବତ । ବଂଶକର୍ମେ—ବାଉଁଶର ଭାଗ୍ୟରେ ।

ରିଷ୍ୟଶୃଙ୍ଗ ରଜାଙ୍କୁ କହିଲେ—"ମଳୟ ପର୍ବତରୁ ପବନ ବହି କେତେକ ବୃକ୍ଷକୁ ସ୍ପର୍ଶ କଲେ, ତାହା ଚନ୍ଦନରେ ପରିଣତ ହୁଏ । ମାତ୍ର ଯେତେ ମଳୟ ପବନର ସ୍ପର୍ଶ ପାଇଲେ ମଧ୍ୟ ବାଉଁଶ ଗଛର ଭାଗ୍ୟରେ ଚନ୍ଦନ ହେବା ସମ୍ଭବ ହୁଏନାହିଁ ।" (ଅର୍ଥାତ୍, ସମସ୍ତ ରାଣୀ ଚରୁ ଖାଇଲେ ମଧ୍ୟ କେତେଜଣ ହିଁ ପୁତ୍ରବତୀ ହେବେ, ସମସ୍ତେ ପୁତ୍ରବତୀ ହୋଇପାରିବେ ନାହିଁ) ।

୪୨ । କୌଶଲ୍ୟା ଓ କୈକେୟୀ ଦଶରଥଙ୍କୁ କହିଲେ—"ଅନ୍ତଃପୁର ମଧ୍ୟରେ ବ୍ରତ ଆଚରଣ ନ କରି ସାତଶହ ସତଗୃଳଣ ଜଣ ରାଣୀ ରହିଛନ୍ତି ।"

୪୩ । ବହ୍ୱଳେ—ବିଭୋଳ ହୋଇ (ନିଜର କର୍ତ୍ତବ୍ୟ ଠିକ୍ ଭାବେ ସ୍ଥିର କରି ନ ପାରି) । ପାଣିରେ—ହାତରେ ।

(ଅନ୍ୟ ରାଣୀମାନେ ବ୍ରତ ଆଚରଣ କରି ନଥିବା ଶୁଣି) ରଜା ଦଶରଥ ବିରକ୍ତ ହୋଇଗଲେ ଏବଂ କୌଶଲ୍ୟା ଓ କୈକେୟୀ କେବଳ ବ୍ରତ ଅଚରଣ କରିଛନ୍ତି ଭାବି ବିହ୍ୱଳିତ ଚିତ୍ତରେ ଚରୁକୁ ଦୁଇଭାଗ କରିଦେଇ ସେମାନଙ୍କ ହସ୍ତରେ ପ୍ରଦାନ କଲେ ।

୪୪ । ବିମଳ ହୃଦୟା—ନିର୍ମଳ ହୃଦୟା । ଭଣି—କହିଲେ । କଲ ଅଛେଳା—ବୁଝି ପାରିଲ ନାହିଁ ।

ତାହା ଦେଖି ନିର୍ମଳ ହୃଦୟା କୈକେୟୀ ଓ କୌଶଲ୍ୟା ରଜାଙ୍କୁ କହିଲେ—"ଆପଣ ଆମ କଥା ଠିକ୍‌ଭାବେ ବୁଝିପାରିଲେ ନାହିଁ ।" ତତ୍‌ପରେ ଏହି ଉଭୟ ରାଣୀ ନିଜ ନିଜର ଚରୁକୁ ଦୁଇଭାଗ କରି ସେଥିରୁ ଗୋଟିଏ ଲେଖାଁଏ ଭାଗ ସୁମିତ୍ରାଙ୍କୁ ଦେଲେ । ଏହା ଫଳରେ ଦଶରଥ ସନ୍ତୁଷ୍ଟ ହେଲେ ।

ବିଶ୍ୱଗର୍ଭ ସେ ଅଶନେ ଗର୍ଭରେ ରହି
ବରଷେ ସେ ସ୍ୱାତିଜଳ ଭକ୍ଷଣ ବହି । ୪୫ ।
ବହଇ ଉଦରେ ମୋତି ଶୁକ୍ତି ଯେମନ୍ତ
ବିଘ୍ନ ନୋହି ଏ କଥା ହିଁ ହେଲା ତେମନ୍ତ । ୪୬ ।
ବୈଭାଣ୍ଡକୀ କାନ୍ତା ଯେବେ ସ୍ୱବନେ ଗତି
ବାସରକୁ ବାସର ରାଣୀଏ ଅଶକ୍ତ । ୪୭ ।
ବିଧୃତ ଲତିକା ମେରୁ ଏଥି ଉପରୁ
ବିସ୍ମୟ ନୋହିଲା ଅଶକତ ହେବାରୁ । ୪୮ ।
ବର୍ଣ୍ଣ ସୁବର୍ଣ୍ଣ ଦୋହଦ ରୂପ୍ୟରେ କଣି
ବକ୍ଷୋଜ ଦନ୍ତସମ୍ପୁଟେ ରକ୍ଷଣ ମଣି । ୪୯ ।

---

୪୬ । ବିଶ୍ୱଗର୍ଭ—ଭଗବାନ ବିଷ୍ଣୁ । ଅଶନେ—ଭୋଜନ କରିବାରୁ । ଶୁକ୍ତି—ଶାମୁକା ।
ତିନିରାଣୀ ସେହି ଚରୁ ଭକ୍ଷଣ କରିବାରୁ ଭଗବାନ ବିଷ୍ଣୁ ସେମାନଙ୍କ ଗର୍ଭରେ ରହିଲେ । ସ୍ୱାତୀ ନକ୍ଷତ୍ର ସମୟରେ ଆକାଶରୁ ପତିତ ବୃଷ୍ଟିଜଳ ଶାମୁକା ଭକ୍ଷଣ କଲେ ତାହାର ଗର୍ଭରେ ମୁକ୍ତା ହୋଇ ରହେ । ସେହିପରି ଭଗବାନ ବିଷ୍ଣୁ ନିର୍ବିଘ୍ନରେ ରାଣୀମାନଙ୍କ ଗର୍ଭରେ ରହିଲେ ।

୪୭ । ବୈଭାଣ୍ଡକୀ—ବିଭାଣ୍ଡକ ଋଷିଙ୍କ ପୁତ୍ର, ଋଷ୍ୟଶୃଙ୍ଗ । କାନ୍ତା—ସ୍ତ୍ରୀ । ବାସରକୁ ବାସର—ଦିନକୁ ଦିନ ।
ଏହାପରେ ଋଷ୍ୟଶୃଙ୍ଗ ମୁନି ନିଜର ପତ୍ନୀ ଶାନ୍ତାଙ୍କୁ ସଙ୍ଗରେ ନେଇ ଆପଣାର ତପୋବନକୁ ଗଲେ । ଦଶରଥଙ୍କ ରାଣୀମାନେ ଦିନକୁ ଚଳପ୍ରଚଳ ହେବାକୁ ଅସମର୍ଥ ହୋଇ ଉଠିଲେ ।

୪୮ । ବିଧୃତ—ଧରିଲା ।
(ବିରାଟ ପୁରୁଷ ଭଗବାନ ବିଷ୍ଣୁ ରାଣୀମାନଙ୍କ ଗର୍ଭରେ ରହିବାରୁ) ମନେହେଲା, ସତେ ଯେପରି ଏକ ଲତା ମେରୁ ପର୍ବତକୁ ଧାରଣ କରିଛି । ତେଣୁ ସେମାନେ ଦିନକୁ ଦିନ ଅଶକ୍ତ ହୋଇପଡ଼ିବା କିଛି ବିଚିତ୍ର କଥା ନୁହେ ।

୪୯ । ବର୍ଣ୍ଣ ସୁବର୍ଣ୍ଣ—କାନ୍ତି ରୂପକ ସୁନା । ଦୋହଦ—ଗର୍ଭାବସ୍ଥାରେ ନାରୀମାନଙ୍କ ଇଚ୍ଛା । ରୂପ୍ୟ—ରୂପା । ସମ୍ପୁଟ—ଫରୁଆ । ମଣି—ମନେ ହେଉଛି ।
ରାଣୀମାନେ ଦେହର କାନ୍ତି ରୂପକ ସୁବର୍ଣ୍ଣକୁ ଦୋହଦ ରୂପକ ରୂପାରେ କିଣି ନିଜର ବକ୍ଷୋଜ ରୂପକ ହାତୀଦାନ୍ତ ଫରୁଆରେ ସାଇତି ରଖିଲେ ପରି ମନେହେଲା । (ଅର୍ଥାତ୍ ଗର୍ଭାବସ୍ଥାରେ ରାଣୀମାନଙ୍କର ସ୍ୱର୍ଣ୍ଣକାନ୍ତି ତୁଲ୍ୟ ଦେହର ବର୍ଣ୍ଣ କ୍ରମଶଃ ପାଣ୍ଡୁର ଦେଖାଗଲା ।)

ବୃଦ୍ଧି ହେବା କଟୀ ପୃଥୂ ଅଧିକ ନୋହି
ବଧି ପୂର୍ବେ ସିଂହ ଲକ୍ଷ୍ୟ ଗ୍ରାସିଛି ଯେହି । ୫୦ ।
ବର୍ଣ୍ଣିତ ମଧୂରସରେ ଉଦର ପଥ
ବମନ ହେବା ଶବ୍ଦ କ ଆନ ପଦାର୍ଥ । ୫୧ ।
ବସନ୍ତ ମଧୂମାସରେ ନବମୀ ଖ୍ୟାତ
ବପତଧ୍ୱଜ ବହିଲେ ଚତୁର୍ଦ୍ଧା ମୂର୍ତ୍ତି । ୫୨ ।
ବ୍ୟୂପୃତ୍ତି ଏ କୌଶଲ୍ୟା କୈକେୟୀ ସୁମିତ୍ରା
ବାସବ ଦିଗଦ୍ରି ତିନ ଶୃଙ୍ଗ ଶୋଭିତା । ୫୩ ।

---

୫୦ । କଟୀ—ଅଣ୍ଟା । ପୃଥ—ପୃଥୂଳ ବା ମୋଟା । ସିଂହ ଲକ୍ଷ୍ୟ—ସିଂହକଟୀର ଉପମାକୁ । ଗ୍ରାସିଛି—ବଳିଯାଇଛି ।

ଗର୍ଭାବସ୍ଥାରେ ରାଣୀମାନଙ୍କର କ୍ଷୀଣକଟୀ କ୍ରମଶଃ ସ୍ଥୂଳ (ମୋଟା) ହେବାକୁ ଲାଗିଲା । ଏହାର କାରଣ ହେଉଛି, ସେହି କ୍ଷୀଣକଟୀ ସିଂହ କଟୀକୁ ବଳିଯାଇଛି ବୋଲି ମୂର୍ଖରୁ ବର୍ଣ୍ଣନା କରାଯାଇଛି । (ଜଣେ ଅନ୍ୟ ଜଣକୁ ବିବାଦରେ ବଳିଗଲେ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ଉଠେ ; ସେହିପରି ସିଂହକଟୀକୁ ବଳିବାରୁ ଫୁଲି ଉଠି ସ୍ଥୂଳ ଦେଖାଗଲା ) ।

୫୧ । ବର୍ଣ୍ଣିତ—ବିସ୍ତୃତ । ମଧୂରସରେ—ପରଂବ୍ରହ୍ମ ସ୍ୱରୂପୀ ନାରାୟଣଙ୍କ ରସରେ, ଦିବ୍ୟ ତେଜରେ । ବମନ—ବାନ୍ତି । ଶବ୍ଦ କ—ବିଶବ୍ଦ କ ।

ଗର୍ଭାବସ୍ଥାରେ ରାଣୀମାନଙ୍କୁ ବାନ୍ତି ହେଲା । (ଏହି ପ୍ରସଙ୍ଗରେ କବି କହୁଛନ୍ତି) ସେମାନଙ୍କ ଉଦର ପଥ ନାରାୟଣ ରୂପକ ଅମୃତରସରେ ପରିପୂର୍ଣ୍ଣ ହୋଇଛି । ତେଣୁ ଅନ୍ୟ ଯେ କୌଣସି ପଦାର୍ଥ ସେମାନେ ଭକ୍ଷଣ କଲେ ଅରୁଚି ଲାଗି ବମନ (ବାନ୍ତି) ହେବା କିଛି ବିଚିତ୍ର ନୁହେ ।

୫୨ । ମଧୂମାସ—ଚୈତ୍ରମାସ । ବପତଧ୍ୱଜ—ଗରୁଡ଼ବାହନ, ଭଗବାନ ବିଷ୍ଣୁ । ଚତୁର୍ଦ୍ଧା ମୂର୍ତ୍ତି—ଚାରି ପ୍ରକାର ମୂର୍ତ୍ତି ।

ବସନ୍ତ ଋତୁରେ ଚୈତ୍ରମାସର ବିଖ୍ୟାତ ନବମୀତିଥିରେ ଗୁରୁଡ଼ଧ୍ୱଜ ଭଗବାନ ବିଷ୍ଣୁ ଚତୁର୍ଦ୍ଧାମୂର୍ତ୍ତି ଧାରଣ କଲେ ।

୫୩ । ବ୍ୟୁପୃତ୍ତି ଏ—ଏପରି ଜ୍ଞାନ ଜନ୍ମିଲା ଯେ । ବାସବ ଦିଗଦ୍ରି—ପୂର୍ବଦିଗର ପର୍ବତ (ବାସବ = ଇନ୍ଦ୍ର, ଇନ୍ଦ୍ର ହେଉଛନ୍ତି ପୂର୍ବଦିଗର ଅଧିପତି) ।

ସେହି ସମୟରେ କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କୁ ଦେଖି ଜଣାଗଲା, ସତେ ଯେପରି ପୂର୍ବ ଦିଗରେ ତିନ ଗୋଟି ଶୃଙ୍ଗ ଶୋଭା ପାଉଛନ୍ତି ।

ବିଧୁ ଗୁରୁ ଭାର୍ଗବ ଅଙ୍ଗିର ଉଦିତ
ବିନାଶିତ ଧାତ୍ରୀ ରାତ୍ରି ନିବିଡ଼ ଧ୍ୱାନ୍ତ । ୫୪ ।

ବଧାଇ ଲଭିଲେ ନୃପେ ନାରୀଏ କହି
ବାର୍ତ୍ତାବହେ ରାଜ୍ୟାନ୍ତରେ ଗମିଲେ ତହିଁ । ୫୫ ।

ବାରତା କହି ସାମନ୍ତେ ପାତ୍ରେ ଭୃଶତ
ବେତ୍ରକେ କଟକ କୁଣ୍ଡଳରେ ମଣ୍ଡିତ । ୫୬ ।

ବାଟ ହାଟ ଜୂର ତୂର ବାଜେ ଅସଂଖ୍ୟ
ବିଦୂଷକ କାତ୍ୟାୟିନୀ ହୃଷ୍ଟ ଅଲେଖ । ୫୭ ।

---

୫୪ । ବିଧୁ—ଚନ୍ଦ୍ର । ଗୁରୁ—ବୃହସ୍ପତି । ଭାର୍ଗବ—ଶୁକ୍ର । ଅଙ୍ଗିର—ମଙ୍ଗଳ । ବିନାଶିତ ନଷ୍ଟ ହେଲା । ଧାତ୍ରୀ—ପୃଥିବୀ । ନିବିଡ଼ଧ୍ୱାନ୍ତ—ଘୋର ଅନ୍ଧକାର ।

ପୂର୍ବଦିଗର ପର୍ବତରେ ଚନ୍ଦ୍ର, ବୃହସ୍ପତି, ଶୁକ୍ର ଓ ମଙ୍ଗଳ ଉଦିତ ହେଲା ପରି ତିନିରାଣୀଙ୍କ ଗର୍ଭରୁ ଚାରିଗୋଟି ପୁତ୍ରସନ୍ତାନ ଜାତ ହେଲେ । ଫଳରେ ପୃଥିବୀର ଦୁଶ୍ଚିନ୍ତା ରୂପକ ନିବିଡ଼ ଅନ୍ଧକାର ଦୂର ହେଲା ।

୫୫ । ବଧାଇ—ପୁରସ୍କାର । ବାର୍ତ୍ତାବହ—ସମ୍ବାଦବାହକ ।

ଅନ୍ତଃପୁରର ନାରୀମାନେ ଦଶରଥଙ୍କୁ ପୁତ୍ର ଜନ୍ମ ହେବା ସମ୍ବାଦ ଦେଇ ପୁରସ୍କାର ଲାଭ କଲେ । ବାର୍ତ୍ତାବହଗଣ ଏହି ସମ୍ବାଦ ଦେବା ପାଇଁ ଅନ୍ୟ ରାଜ୍ୟମାନଙ୍କୁ ଗଲେ ।

୫୬ । ସାମନ୍ତେ ପାତ୍ରେ—ପାତ୍ର, ମନ୍ତ୍ରୀ ପ୍ରଭୃତି ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ । ବେତ୍ରକେ—ପ୍ରତିହାରୀମାନେ । କଟକ—ବଳା (କଙ୍କଣ) ।

ପ୍ରତିହାରୀମାନେ ସାମନ୍ତ ଓ ପାତ୍ରମନ୍ତ୍ରୀମାନଙ୍କୁ ଏହି ସମ୍ବାଦ ଦେଇ ପୁରସ୍କାର ସ୍ୱରୂପ କଙ୍କଣ ଓ କୁଣ୍ଡଳ ପ୍ରଭୃତି ଲାଭ କଲେ ।

୫୭ । ତୂର—ତୂରୀବାଦ୍ୟ । କାତ୍ୟାୟିନୀ—ଦରବୁଢ଼ୀ ସ୍ତ୍ରୀ, ବିଧବା । ହୃଷ୍ଟ—ଆନନ୍ଦିତ ।

ପୁତ୍ର ଜନ୍ମ ହେବା ସମ୍ବାଦ ଚାରିଆଡ଼େ ପ୍ରଚାରିତ ହେବାରୁ ଦୋକାନ ବଜାର ପ୍ରଭୃତି ଜୂର ହେଲା । ଅସଂଖ୍ୟ ତୂରୀବାଦ୍ୟ ବାଜିଲା । ହାସ୍ୟ ରସିକ ଓ ଦରବୁଢ଼ୀ ବିଧବାମାନଙ୍କ ଆନନ୍ଦ କହିଲେ ନ ସରେ । (ଜୂର—ରାଜାଙ୍କର ପୁତ୍ରଜନ୍ମ ପ୍ରଭୃତି ଆନନ୍ଦ ଉତ୍ସବ ସମୟରେ ଲୋକମାନେ ମିଠାଇ ଦୋକାନରେ ପଶିଯାଇ ମନଇଚ୍ଛା ବଳପୂର୍ବକ ଖାଦ୍ୟ ଖାଆନ୍ତି ଏବଂ ପରେ ରାଜା ବ୍ୟବସାୟୀମାନଙ୍କୁ ସେହି କ୍ଷତିପୂରଣ ଦିଅନ୍ତି ।)

ବୃନ୍ଦବୃନ୍ଦ ହୋଇ ତହିଁ ଜନନୀମାନେ
ବସୁଧାପତି ଦେଖିଲେ ସୂନୁ ସୁମନେ । ୫୮ ।

ବନଜନାଭି ପଦକୁ ସାର୍ଥ କରଇ
ବିଲମ୍ବିତ ନାଡ଼ି ନାଭିମଣ୍ଡଳେ ଶୋଭଇ । ୫୯ ।

ବିଚ୍ଛେଦନ କଲେ ନାଭି ଉଦୟ ହୃଦେ
ବିଗନ୍ଧ ସୁବାସ ଯେଣୁ କସ୍ତୂରୀ ବଦେ । ୬୦ ।

ବ୍ୟକତ ସୂତିକା ଗୃହ କାରୁଣ୍ୟ ପୟ
ସର୍ପିଶ୍ରେ ବିଅନନ୍ତ ଶୋଭା ଶଯ୍ୟା ନିଶ୍ଚୟ । ୬୧ ।

---

୫୮ । ବୃନ୍ଦ ବୃନ୍ଦ—ଦଳଦଳ । ବସୁଧାପତି—ରାଜା । ସୂନୁ—ପୁତ୍ର । ସୁମନେ—ଆନନ୍ଦ-ମନରେ ।

ଏହାପରେ ମା'ମାନେ (ଦଶରଥଙ୍କର ଅନ୍ୟାନ୍ୟ ରାଣୀମାନେ) ଓ ରାଜା ଦଶରଥ ଆନନ୍ଦ ମନରେ ପୁତ୍ରମାନଙ୍କୁ ଦେଖିଲେ ।

୫୯ । ବନଜନାଭ—ପଦ୍ମନାଭ । ବିଲମ୍ବିତ ନାଡ଼—ନାଡ଼ ଲମ୍ବି ଅଛି ।

(ସେମାନେ ସମସ୍ତେ ଦେଖିଲେ—) ଶିଶୁମାନଙ୍କ ନାଭିରୁ ନାଡ଼ ଲମ୍ବି ଅଛି । ତେଣୁ ନାରାୟଣଙ୍କର ପଦ୍ମନାଭ ନାମ ଏହିଠାରେ ସାର୍ଥକ ହେଲା ।

୬୦ । ବିଚ୍ଛେଦନ କଲେ—କାଟିଲେ । ଉଦୟ ହୃଦେ—ହୃଦୟରେ ଏ ଭାବ ଜାତ ହେଲା । ବିଗନ୍ଧ ସୁବାସ—ଦେହର ସୁଗନ୍ଧ ।

ତାହାପରେ ପୁତ୍ରମାନଙ୍କର ନାଭିଚ୍ଛେଦନ କରାଗଲା । ସେତେବେଳେ ସେମାନଙ୍କ ଦେହରୁ କସ୍ତୁରୀ ଗନ୍ଧ ନିର୍ଗତ ହେଉଥିଲା । ସୁତରାଂ, ହୃଦୟରେ ଏହି ଭାବ ଜାତ ହେଲା ଯେ ଯେପରି କି ସେମାନଙ୍କ ଅଙ୍ଗ ସୌରଭ କସ୍ତୁରୀଠାରୁ ଅଧିକ ଥିବାରୁ ଦାଈମାନେ ସେଗୁଡ଼ିକୁ (ନାଭିନାଡ଼କୁ) ମୃଗନାଭି ଭ୍ରମରେ ଛେଦନ କଲେ ।

୬୧ । ବ୍ୟକତ—ପ୍ରକାଶିତ । କାରୁଣ୍ୟପୟ—କରୁଣା ରୂପକ କ୍ଷୀର ।

ସେହି ସୂତିକାଗୃହ (ଭଗବାନ ବିଷ୍ଣୁଙ୍କ) କରୁଣା ରୂପକ କ୍ଷୀରରେ ପରିପୂର୍ଣ୍ଣ ହୋଇ କ୍ଷୀର ସମୁଦ୍ର ରୂପେ ପ୍ରକାଶିତ ହେଲା ଏବଂ ଶିଶୁମାନେ ଶୟନ କରିଥିବା ଶଯ୍ୟା ସର୍ପଶ୍ରେଷ୍ଠ ଅନନ୍ତନାଗର ଶୋଭା ଧାରଣ କଲା ।

ଖାଟ ଚନ୍ଦ୍ରାତପ କୁକ୍କୁଆ ବାସ ରଚଲ
ବବେକା ଶୁଆଇ ସଦା ନଦ୍ରା ଚଟାଇ । ୭୨ ।

ବ୍ରୀହ୍ନି ଆଦ ପଞ୍ଚବୀଜ ପଞ୍ଚୁଆଣ୍ଡ ଯେ
ବ୍ୟାନ ସନ ପଞ୍ଚବାୟୁ ତୋଷକ ସେ ଯେ । ୭୩ ।

ବନଜନ୍ମା ଲକ୍ଷ୍ୟ ନାସ୍ତ ଷଷ୍ଠୀଘରକୁ
ବରାଟକେ ମଣ୍ଡି କଲେ ମନୋହରକୁ । ୭୪ ।

ବଯୋଗ ନଦ୍ରାରେ କାମମଧୁରେ ବାଧ
ବରଚ ଏ ପାଞ୍ଚ ଉଠିଆର ସମ୍ବାଦ । ୭୫ ।

---

୭୨ । ଖାଟ—ଲହଗ୍ଗ । ଚନ୍ଦ୍ରାତପ—ଗୃହ୍ଣୁଆ । ବବେକା—ଧୈରବ୍ରତୀ, ବଗ୍ଭରଣୀଳା ଚତୁସ୍ତ୍ରୀ ନାସ୍ତ ।

ଯେପ୍ରି ସୂତକା ଗୃହରେ ବନ୍ଧା ହୋଇଥିବା ଗୃହ୍ଣୁଆର କୁଞ୍ଚିତ ବସ୍ତ୍ର କ୍ଷୀର ସମୁଦ୍ରର ଲହଗ୍ଗ ପର ଦେଖା ଯାଉଥିଲା । କ୍ଷୀର ସମୁଦ୍ରରେ ଯେଉଁପର ସରସ୍ୱତୀ ବିଷ୍ଣୁଙ୍କ ନଦ୍ରା ଭଙ୍ଗକର ତାହାଙ୍କୁ ଜାଗ୍ରତ କରାଉଥାନ୍ତି, ଚତୁସ୍ତ୍ରୀ ନାସ୍ତମାନେ ସେହପର ଶିଶୁମାନଙ୍କର ନଦ୍ରା ଭଙ୍ଗ କରାଇ ସେମାନଙ୍କୁ ସଚେତ କରାଉଥିଲେ ।

୭୩ । ବ୍ରୀହ୍ନି ଆଦ ପଞ୍ଚବୀଜ—ଧାନ, ମୁଗ, ଗହମ, କାଙ୍କୁଲ ଓ ଗୁରୁଲ ଏହି ପାଞ୍ଚ ପ୍ରକାର ବୀଜ । ବ୍ୟାନସହ ପଞ୍ଚବାୟୁ—ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ, ଏହି ପଞ୍ଚବାୟୁ । ତୋଷକ—ଶାନ୍ତିକାରକ ।

ସନ୍ତାନ ଜନ୍ମର ପଞ୍ଚମ ଦବସରେ (ପଞ୍ଚୁଆତ) ଧାନ, ମୁଗ, ଗହମ, କାଙ୍କୁଲ ଓ ଗୁରୁଲ, ଏହି ପଞ୍ଚବୀଜ ଭଜାଯାଇ ଲୋକମାନଙ୍କ ମଧ୍ୟରେ ବଣ୍ଟାଗଲା । କାରଣ, ଏହି ପଞ୍ଚବୀଜ ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ, ଏହି ପଞ୍ଚ ବାୟୁଦୋଷ ନାଶକାରକ ।

୭୪ । ବନଜନ୍ମା—ପଦ୍ମ । ଲକ୍ଷ୍ୟ—ଉପମା । ଷଷ୍ଠୀଘର—ଷଠୀଘର । ବରାଟକ—କଉଡ଼ି, ପଦ୍ମଫୁଲର ମଝିରେ ଥିବା ବୀଜକୋଷ ।

ନାସ୍ତମାନେ ପୁଣି ଜନ୍ମର ଷଷ୍ଠ ଦବସରେ ଷଠୀଘର ତଆର କର ତାହାକୁ କଉଡ଼ିରେ ମଣ୍ଡି ଦେବାରୁ ତାହା ପଦ୍ମଫୁଲ ପର ଦେଖାଗଲା । କାରଣ, ପଦ୍ମଫୁଲ ମଧ୍ୟରେ ବରାଟକ (ବୀଜକୋଷ) ଥାଏ ଏବଂ ଷଠୀଘରେ ମଧ୍ୟ ବରାଟକ (କଉଡ଼ି) ଖଞ୍ଜା ଯାଇଛୁ ।

୭୫ । ବଯୋଗ ନଦ୍ରା—ନଦରୁ ଉଠିବା । କାମ—କନ୍ଦର୍ପ, କାମନା ଅନୁସାରେ । ମଧୁରେ—ମଧୁଦୈତ୍ୟ ସହତ, ସୌନ୍ଦର୍ଯ୍ୟ ଗୁଣରେ । ଉଠିଆର—ସମଗ୍ର ଦବସର କର୍ମ ବଶେଷ ।

ବଂଶ ଏକାଦିନେ ଦୋଳି ଶୟନ କରି
ବଟପତ୍ର ପୁଟେ ବାଳ ମୁକୁନ୍ଦ ପରି । ୭୬ ।
ବଢ଼ାନ୍ତେ ଯେ ଦଶରଥ ଶ୍ରୀକର କର
ବାହୁ ଊର୍ଦ୍ଧ୍ୱେ ମାର୍କଣ୍ଡେୟ ଥିବା ପ୍ରକାର । ୭୭ ।
ବ୍ରହ୍ମଋଷି ନାମ ଦିନ୍ତି ଶ୍ରୀରାମ ରାମ
ବୋଲେ ଚନ୍ଦ୍ର ଭଦ୍ର ହେଉ ଏ ପଛେ ରମ୍ୟ । ୭୮ ।
ବଂଶେ ରଘୁ ରାଘବ ଏ ସେ ନାଥ ଭଣି
ବୋଲାଇବେ ରାବଣାରି ରାଜେନ୍ଦ୍ର ପୁଣି । ୭୯ ।

---

(ବ୍ରହ୍ମାଙ୍କ ଦ୍ଧାରା ହେତୁ) ନାରାୟଣ ନିଦ୍ରାରୁ ଉଠନ୍ତେ ସ୍ୱେଚ୍ଛାରେ ମଧୁକୈଟଭ ସହିତ ବିବାଦ କରିଥିଲେ । ସେହିପରି ଏହି ଶିଶୁ ସୌନ୍ଦର୍ଯ୍ୟ ଗୁଣରେ କନ୍ଦର୍ପର ପ୍ରତିଦ୍ୱନ୍ଦ୍ୱୀ ହେବ ଭାବି ଧାଇମାନେ ଜନ୍ମର ସପ୍ତମ ଦିବସରେ ଉଠିଆରି କର୍ମ ସମ୍ପାଦନ କଲେ ।

୭୬ । ବଂଶ ଏକାଦିନେ—ଏକୋଇଶ ଦିନରେ । ବଟପତ୍ର ପୁଟେ—ବଟପତ୍ର ପୁଡ଼ାରେ ।

ଏକୋଇଶ ଦିନରେ ପୁଅମାନେ ଦୋଳିରେ ଶୟନ କଲେ । (ପ୍ରଳୟ କାଳରେ) ବିଷ୍ଣୁ ବାଳମୁକୁନ୍ଦ ରୂପ ଧରି ବଟପତ୍ର ପୁଡ଼ାରେ ଶୟନ କଲାପରି ଏହି ଶିଶୁମାନେ ଦେଖାଗଲେ ।

୭୭ । କର—ହାତ । ବାହୁ ଊର୍ଦ୍ଧ୍ୱେ—ଉପରକୁ ହାତଟେକି ।

ରାଜା ଦଶରଥ ଦୋଳି ଝୁଲାଇବା ପାଇଁ ଯେତେବେଳେ ହାତ ବଢ଼ାଇଲେ, ସେତେବେଳେ ସେ ଊର୍ଦ୍ଧ୍ୱବାହୁ ମାର୍କଣ୍ଡେୟଙ୍କ ତୁଲ୍ୟ ଦେଖାଗଲେ ।

୭୮ । ବ୍ରହ୍ମଋଷି—ବ୍ରହ୍ମର୍ଷି ବଶିଷ୍ଠ । ରମ୍ୟ—ରମଣୀୟ ।

ବ୍ରହ୍ମର୍ଷି ବଶିଷ୍ଠ ଜ୍ୟେଷ୍ଠ ପୁତ୍ରର ନାମ ଠିକ୍ କରି କହିଲେ, "ଏହି ପୁତ୍ରକୁ ରମଣୀୟ 'ଶ୍ରୀରାମ' ନାମ ଦିଆଯାଉ । 'ଶ୍ରୀରାମ' ନାମ ପଛରେ 'ଚନ୍ଦ୍ର' ଓ 'ଭଦ୍ର', ଏହି ଦୁଇଟି ସୁନ୍ଦର ଶବ୍ଦ ଯୋଗ କରାଯାଇ ସେ 'ଶ୍ରୀରାମ ଚନ୍ଦ୍ର' ଓ 'ଶ୍ରୀରାମ ଭଦ୍ର' ରୂପରେ କଥିତ ହୁଅନ୍ତୁ ।"

୭୯ । ରାବଣାରି—ରାବଣର ଶତ୍ରୁ । ରାଜେନ୍ଦ୍ର—ରାଜଶ୍ରେଷ୍ଠ ।

ବଶିଷ୍ଠ ଆହୁରି କହିଲେ—"ରଘୁବଂଶରେ ଜାତ ହୋଇଥିବାରୁ ଏ 'ରାଘବ' ନାମ ଧାରଣ କରିବେ । ପୁନଶ୍ଚ ରଘୁବଂଶର ନାଥ (ଶ୍ରେଷ୍ଠ) ସନ୍ତାନ ହେତୁ 'ରଘୁନାଥ' ରୂପେ ପରିଚିତ ହେବେ । ଏତଦ୍‌ବ୍ୟତୀତ ଏହାଙ୍କ ନାମ 'ରାବଣାରି' ଓ 'ରାଜେନ୍ଦ୍ର' ମଧ୍ୟ ରହିବ ।"

ବପ୍ତା ଦଶରଥ ରଜା ଯେଣୁ ସ୍ୱଭବେ
ବହନ୍ତୁ ଏ ଦାଶରଥି ନାମକୁ ଏବେ । ୭୦ ।
ବହିଲେ ଭରତ ନାମ କୈକେୟୀ ସୁତେ
ବୋଇଲେ ସଦା ବର୍ତ୍ତିବ ଏ ଶୁଭରତେ । ୭୧ ।
ବେନି ସୁତ ସୁମିତ୍ରାର ଦେଖି ହରଷ
ବିଚକ୍ଷଣ ଲକ୍ଷଣମାନଙ୍କେ ପ୍ରକାଶ । ୭୨ ।
ବହୁ ଲକ୍ଷ୍ମଣ ନାମକୁ ଅଗ୍ରଜ ସୁତ
ବୋଲିବାର କୁମାର ଏହାକୁ ଉଚିତ । ୭୩ ।
ବଡ଼ ଶକ୍ତିମନ୍ତେ ନଗଣିବ ଆନରେ
ବୃଦ୍ଧିହେବ ମେଘନାଦ ତୋଷଦାନରେ । ୭୪ ।
ବଶିଷ୍ଠେ ଯେଣୁ ଶତ୍ରୁଘ୍ନ ହେବ ସହଜେ
ବଦତ ଏଣୁ ଶତ୍ରୁଘ୍ନ ନାମ ଅନୁଜେ । ୭୫ ।

---

୭୦ । ବପ୍ତା—ବାପା ।

ଏହାଙ୍କର ପିତା ଦଶରଥ ହୋଇଥିବାରୁ, ସେ 'ଦଶରଥି' ନାମ ବହନ କରନ୍ତୁ ।

୭୧ । ଶୁଭରତେ—ଶୁଭ କାର୍ଯ୍ୟରେ ରତ ହେବ ।

ତାହାପରେ ବଶିଷ୍ଠ କୈକେୟୀଙ୍କ ପୁତ୍ରକୁ 'ଭରତ' ବୋଲି ନାମ ଦେଇ 'ଏହି ବାଳକ ସର୍ବଦା ଶୁଭକାର୍ଯ୍ୟରେ ରତ ହେବ' ବୋଲି କହିଲେ ।

୭୨ । ସୁମିତ୍ରାଙ୍କର ଦୁଇ ପୁତ୍ରଙ୍କୁ ଦେଖି ବଶିଷ୍ଠ ଅତ୍ୟନ୍ତ ଆନନ୍ଦିତ ହେଲେ । ସେହି ଦୁହିଁଙ୍କଠାରେ ବିଚକ୍ଷଣ ଶୁଭ ଲକ୍ଷଣମାନ ପ୍ରକଟିତ ହୋଇଥିଲା ।

୭୩ । ଅଗ୍ରଜସୁତ—ବଡ଼ ପୁଅ । କୁମାର—କାର୍ତ୍ତିକେୟ ।

ବଶିଷ୍ଠ କହିଲେ—ସୁମିତ୍ରାଙ୍କର ବଡ଼ ପୁଅଟି ବିଭିନ୍ନ ଶୁଭ ଲକ୍ଷଣ ଯୁକ୍ତ ହୋଇ ଥିବାରୁ ଲକ୍ଷ୍ମଣ ନାମ ଧାରଣ କରୁ । ପୁନଶ୍ଚ ଏହି ପୁତ୍ରକୁ 'କୁମାର' ନାମରେ ନାମିତ କରିବା ଯଥାର୍ଥ ହେବ ।

୭୪ । ଶକ୍ତିମନ୍ତ—ଶକ୍ତିନାମକ ଅସ୍ତ୍ରଧାରୀ, ଶକ୍ତିଶାଳୀ । ମେଘନାଦ—ଇନ୍ଦ୍ରଜିତ, କାର୍ତ୍ତିକେୟ । ତୋଷଦାନ—ତୋଷ ପ୍ରଦାନ, ତୋଷ ଖଣ୍ଡନ କରିବା ।

(ଏହି ପୁତ୍ରକୁ 'କୁମାର' କୁହାଯିବାର କାରଣ ହେଉଛି) କୁମାର ବା କାର୍ତ୍ତିକେୟ ଯେଉଁପରି ହାତରେ ଶକ୍ତିଧାରଣ କରିଥାନ୍ତି ଏବଂ ବୀରମାନଙ୍କୁ ମୋଟେ ଖାତିର କରନ୍ତି ନାହିଁ । ଏହି ପୁତ୍ର ମଧ୍ୟ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ବୀରପଣରେ ସମସ୍ତଙ୍କୁ ବଳିପଡ଼ିବ । ପୁନଶ୍ଚ କାର୍ତ୍ତିକେୟ ନିଜର ବାହନ ମେଘନାଦ (ମୟୂର) କୁ ତୋଷଦାନ (ଆନନ୍ଦ

ବିଧାନ ସୁମିତ୍ରା ସୁତ ଦୁହେଁ ସୌମିତ୍ରୀ
ବୋଲନ୍ତି ବୋଲି ବିଗତ ତହୁଁ ସେ ଯନ୍ତ୍ରୀ । ୭୬ ।

ବଢ଼ି ସୁତେ ଦିନୁଦିନ ପ୍ରଭା ଉଦୟେ
ବଳକ୍ଷପକ୍ଷରେ କଳାକର ପରାୟେ । ୭୭ ।

ବାଡ଼ ଧରି ଉଭା ଶୋଭା କେବା କହିବ
ବଡ଼ କବି ଯହିଁ ଜଡ଼ ହୋଇ ରହିବ । ୭୮ ।

ବିହାର ରଚିଲେ କ୍ରମେ କ୍ରମେ ଚତ୍ୱରେ
ବୟସ୍ତ୍ରଗତ ଶିଶୁ ସଙ୍ଗେ ରଙ୍ଗେ ସତ୍ୱରେ । ୭୯ ।

---

ପ୍ରଦାନ) କରନ୍ତି । ଏହି ପୁତ୍ର ମଧ୍ୟ ସେହିପରି ମେଘନାଦ ତୋଷକାରୀ (ଇନ୍ଦ୍ରଜିତର ବଧକାରକ) ହେବ ।

୭୫ । ଶତ୍ରୁଘ୍ନ—ଶତ୍ରୁମାନଙ୍କର ବଧକାରକ । ଅନୁଜ—ସାନଭାଇ ।

ସୁମିତ୍ରାଙ୍କର ସାନପୁଅଟି ବିଷୟରେ ବଶିଷ୍ଠ କହିଲେ ଯେ, ସେ ବଡ଼ ହେଲେ ଶତ୍ରୁମାନଙ୍କୁ ବଧ କରିବ । ତେଣୁ ତାହାର ନାମ ଶତ୍ରୁଘ୍ନ ରଖାଗଲା ।

୭୬ । ବିଗତ—ଚାଲିଗଲେ । ଯନ୍ତ୍ରୀ—ବଶିଷ୍ଠ ।

ତତ୍ପରେ ବଶିଷ୍ଠ ସୁମିତ୍ରାଙ୍କର ଦୁଇଟିପୁତ୍ରଙ୍କୁ ସୌମିତ୍ରୀ ନାମ ଦେଇ ପ୍ରସ୍ଥାନ କଲେ ।

୭୭ । ବଳକ୍ଷପକ୍ଷ—ଶୁକ୍ଲପକ୍ଷ । କଳାକର—ଚନ୍ଦ୍ର ।

ଶୁକ୍ଲପକ୍ଷରେ ଚନ୍ଦ୍ରକଳା ବୃଦ୍ଧିପାଇଲା ପରି ଦଶରଥଙ୍କର ଏହି ଚାରିପୁତ୍ର ଦିନକୁ ଦିନ ବଢ଼ିବାକୁ ଲାଗିଲେ ଏବଂ ସେମାନଙ୍କର ଶରୀରର ଦୀପ୍ତି ବଢ଼ିବାକୁ ଲାଗିଲା ।

୭୮ । ବାଡ଼ ଧରି—କାନ୍ଥ ଧରି ।

କ୍ରମଶଃ ଶିଶୁମାନେ କାନ୍ଥଧରି ଠିଆହେଲେ ଏବଂ ଚାଲିଲେ । ସେହି ସମୟର ଶୋଭା କିଏ ବା ବର୍ଣ୍ଣନା କରି ପାରିବ ? ପ୍ରତିଭାଶାଳୀ ମହାକବି ମଧ୍ୟ ସେହି ଦୃଶ୍ୟ ଦେଖି ମୂକ ହୋଇ ରହି ଯିବେ, ତାହାଙ୍କର ଲେଖନୀ ଚାଲିବ ନାହିଁ ।

୭୯ । ଚତ୍ୱର—ଅଗଣା ।

ସେମାନେ କ୍ରମଶଃ ଅଗଣାରେ ବୁଲାବୁଲି ଆରମ୍ଭ କଲେ । ସମବୟସ୍କ ଅନ୍ୟାନ୍ୟ ଶିଶୁମାନଙ୍କ ସହିତ ଖେଳ କୌତୁକରେ ଶୀଘ୍ର ଶୀଘ୍ର ଦୌଡ଼ିବାକୁ ଆରମ୍ଭ କଲେ ।

ବାଲ୍ୟେ ଜଗତୀ ରଚନା ନୋହେ ବିସୋରି
ବାଲୁକାରେ ସର୍ଜନା ଯେ ସେହି ପ୍ରକାର । ୮୦ ।

ବ୍ରତ ବିଧାନ ସମୟ ତହୁଁ ହୋଇଲା
ବଦ୍ରିକାରେ ନର ନାରାୟଣ ଯା ଲୀଳା । ୮୧ ।

ବରହୀ ସ୍ୱତ ସ୍ପୃଷ୍ଟରେ ଶିଖଣ୍ଡ ଧରେ
ବାହାରିଲେ ନଗର ଭ୍ରମଣ ଇଚ୍ଛାରେ । ୮୨ ।

ବାଳ କିଶୋର ଭାବକୁ ପ୍ରକାଶେ ତହିଁ
ବାହଗ୍ରୀବ ହୋଇଥିଲେ ପୂର୍ବରେ ଯେହି । ୮୩ ।

---

୮୦ । ଜଗତୀ—ସଂସାର । ବିସୋରି—ପାସୋରିବା । ବାଲୁକା—ବାଲି ।

(ଭଗବାନ ବିଷ୍ଣୁ ଅସଂଖ୍ୟ ବ୍ରହ୍ମାଣ୍ଡ ନିର୍ମାଣ କରିଛନ୍ତି) ତେଣୁ ସେ ଯେତେବେଳେ ରାମାବତାର ଗ୍ରହଣ କଲେ, ସେହି ସଂସାର ସର୍ଜନାକୁ ଭୁଲିପାରିଲେ ନାହିଁ । ସୃଷ୍ଟିସର୍ଜନା ଅଭ୍ୟାସ ହେତୁ ସେ ପିଲାଦିନେ ଶିଶୁମାନଙ୍କ ସହିତ ଖେଳରେ ପ୍ରବୃତ୍ତ ହୋଇ ବାଲିଘର ରଚନା କଲେ ।

୮୧ । ରାମଚନ୍ଦ୍ରଙ୍କର ବ୍ରତୋପନୟନ ସମୟ ଉପସ୍ଥିତ ହେଲା । ଭଗବାନ ବିଷ୍ଣୁ ହିମାଳୟର ନରନାରାୟଣ ପର୍ବତ ମଧ୍ୟରେ ବଦ୍ରିକାଶ୍ରମରେ ଲୀଳା ରଚନା କରିଥିଲେ । ବର୍ତ୍ତମାନ ରାମଚନ୍ଦ୍ର ନରନାରାୟଣ ଭାବରେ ଅସଂଖ୍ୟ ଲୋକଙ୍କର ଆଶା ଭରସାର ସ୍ଥଳ ହେଲେ (ନାରାୟଣ—ନାର = ନରସମୂହ, ଅୟନ = ଆଶ୍ରୟ ସ୍ଥଳ) ।

୮୨ । ବରହୀ—ମୟୂର, ନିଶ୍ଚିତ ଭାବରେ ଶ୍ରେଷ୍ଠ (ବର+ହି = ନିଶ୍ଚିତ) । ଶିଖଣ୍ଡ—ମୟୂରଚନ୍ଦ୍ରିକା । ନଗ—ବୃକ୍ଷର ବା ପର୍ବତର, ସହର ।

ରାମଚନ୍ଦ୍ର ମୟୂର ତୁଲ୍ୟ ଜଣାଗଲେ । କାରଣ, ମୟୂର ଚନ୍ଦ୍ରିକା (ବରହ) ଧାରଣ କରିଥିବାରୁ ତାହାକୁ 'ବରହୀ' କୁହାଯାଏ । ସେହିପରି ରାମଚନ୍ଦ୍ର ଜନସମାଜରେ ନିଶ୍ଚିତ ଭାବରେ ସର୍ବଶ୍ରେଷ୍ଠ (ବରହି) ଅଟନ୍ତି । ମୟୂର ଶିଖଣ୍ଡ (ଚନ୍ଦ୍ରିକା) ଧାରଣ କରିଥିବାରୁ 'ଶିଖଣ୍ଡୀ' ନାମରେ ଖ୍ୟାତ । ରାମଚନ୍ଦ୍ର ମଧ୍ୟ ଶିଖଣ୍ଡ ତୁଲ୍ୟ ମସ୍ତକରେ ଚୂର୍ଣ୍ଣ କୁନ୍ତଳ ଧାରଣ କରିଥିଲେ । ମୟୂର ସ୍ୱେଚ୍ଛାରେ ପର୍ବତ ବା ବୃକ୍ଷ (ନଗ) ଉପରେ ଭ୍ରମଣ କଲା ପରି ରାମଚନ୍ଦ୍ର ମଧ୍ୟ ସ୍ୱେଚ୍ଛାରେ ନଗରରେ ଭ୍ରମଣ କଲେ ।

୮୩ । ବାହଗ୍ରୀବ—ହୟଗ୍ରୀବ ।

ବୃଷ ଧନୁଯୁକ୍ତ ରାମଚନ୍ଦ୍ର ସହଜେ
ବନ୍ଦାରୁ ସେ ଶ୍ରୁତିରୂପ ବିଦ୍ୟାଧର ଯେ । ୮୪ ।

ବିନଶ୍ଚି ଦାସୀ ପ୍ରକାରେ ଶାରଦା ଯାର
ବିଣା କେଉଁ ବିଦ୍ୟା ଆଦି ସ୍ମୃତି ସାର । ୮୫ ।

ବିଭ୍ରାଣରୁ ଦୁକୂଳ ମନକୁ ଆଣିଲ
ବିଶ୍ଵ ସ୍ନେହ ପୀତାମ୍ବର ନାମେ ଜାଣିଲ । ୮୬ ।

---

ରାମଚନ୍ଦ୍ର ବାଲ୍ୟାବସ୍ଥା ଅତିକ୍ରମ କରି କିଶୋର ଅବସ୍ଥାରେ ପଦାର୍ପଣ କଲେ । ନାରାୟଣ ପୂର୍ବେ ହୟଗ୍ରୀବ ହୋଇଥିଲେ । ବର୍ତ୍ତମାନ ସେ କିଶୋର (ବା ବାଳଅଶ୍ୱ) ରୂପ ଧାରଣ କଲେ । 'କିଶୋର' ଶବ୍ଦର ଅନ୍ୟ ଏକ ଅର୍ଥ ହେଉଛି, ବାଳଅଶ୍ୱ ।

୮୪ । ବୃଷ—ବୃଷରାଶି, ଶ୍ରେଷ୍ଠ । ଧନୁ—ଧନୁରାଶି, ଗୃପ । ବନ୍ଦାରୁ—ବନ୍ଦନୀୟ । ଶ୍ରୁତି—ବେଦ । ବିଦ୍ୟାଧର—ବିଭିନ୍ନ ବିଦ୍ୟାରେ ନିପୁଣ ।

ରାମଚନ୍ଦ୍ର ରମଣୀୟ ଚନ୍ଦ୍ରପରି ଦେଖା ଯାଉଥିଲେ । ଚନ୍ଦ୍ର ବୃଷରାଶି ଓ ଧନୁରାଶିରେ ଶୋଭା ପାଇଲା ପରି ରାମଚନ୍ଦ୍ର ମଧ୍ୟ ବୃଷଧନୁ (ଶ୍ରେଷ୍ଠଧନୁ) ଧାରଣ କରିଥିଲେ । ବେଦ ତୁଲ୍ୟ ସେ ବନ୍ଦନୀୟ ଥିଲେ । କାରଣ, ବେଦରେ ବିଭିନ୍ନ ବିଦ୍ୟା ରହିଲା ପରି ସେ ମଧ୍ୟ ବିଭିନ୍ନ ବିଦ୍ୟାରେ ଦକ୍ଷତା ହାସଲ ପୂର୍ବକ 'ବିଦ୍ୟାଧର' ରୂପେ ପରିଚିତ ହେଲେ ।

୮୫ । ଶାରଦା—ସରସ୍ୱତୀ । ସ୍ମୃତି (ସ୍ମୃତି)—ଧର୍ମଶାସ୍ତ୍ର ।

ଯେଉଁ ରାମଚନ୍ଦ୍ରଙ୍କ ନିକଟରେ ସ୍ୱୟଂ ସରସ୍ୱତୀ ଦାସୀ ରୂପେ ବିନୀତା ହୋଇ ରହିଛନ୍ତି, ସ୍ମୃତି ପ୍ରଭୃତି ଶ୍ରେଷ୍ଠ ଧର୍ମଶାସ୍ତ୍ର କିପରି ବା ତାହାଙ୍କର ଅଗୋଚର ହେବ ? (ଅର୍ଥାତ୍, ସ୍ମୃତିଶାସ୍ତ୍ରରେ ପ୍ରତିପାଦିତ ସମାଜଗ୍ଳନା ଓ ରାଜ୍ୟଶାସନ ବିଷୟରେ ସେ ଦକ୍ଷତା ଅର୍ଜନ କଲେ) ।

୮୬ । ବିଭ୍ରାଣ—ପରିଧାନ । ଦୁକୂଳ—ବସ୍ତ୍ର । ପୀତାମ୍ବର—ହଳଦିଆ ଲୁଗା ।

ରାମଚନ୍ଦ୍ର ହଳଦିଆ ଲୁଗା ପିନ୍ଧିବାକୁ ବିଶେଷ ଆଗ୍ରହ ପ୍ରକାଶ କରୁଥିବାରୁ ସେ ପୀତାମ୍ବର ନାମରେ ପରିଚିତ ହେଲେ ।

ବସୋର ନୋହି କୃପଣ ଧନର ଭାବ
ବପ୍ତା ମାତାମାନଙ୍କର ମାନସୁ ଲବ । ୮୭ ।

ବଡ଼ କି ? ଏ ନଗର ଜନଙ୍କ ଏ ଭାବ
ବଖାଣି ହୋଇଲେ ଏକା ସେହି ପ୍ରସ୍ତାବ । ୮୮ ।

ବର୍ଦ୍ଧିତ ଯେ ବାଣିଜ୍ୟ ଧନର ପ୍ରକାର
ବଦେଶେ ହୋଇଲା ଦନୁଦନ ପ୍ରଚାର । ୮୯ ।

ବଳୀବର୍ଦ୍ଦ ଯହିଁ ଜନମୁଖ ହୋଇଲେ
ବହଯୁ ସ୍ଥାନ ସ୍ଥାନକେ ବହି ସେ କଲେ । ୯୦ ।

---

୮୭ । ବସୋର—ପାସୋରବା । ବପ୍ତା—ବାପା । ଲବ—ଟିକିଏ ।

କୃପଣ ବ୍ୟକ୍ତ ଟିକିଏ ହେଲେ ଧନ ବଷୟକ ଚନ୍ତା ମନରୁ ନ ଭୁଲଲା ପର ରାମଚନ୍ଦ୍ର ଓ ଅନ୍ୟାନ୍ୟ ସନ୍ତାନମାନେ ପିତାମାତାଙ୍କ ମନରୁ ଟଲେ ହେଲେ ଦୂର ହେଉ ନଥିଲେ ।

୮୮ । ପିତାମାତାଙ୍କ ମନରୁ ଏହ ପୁତ୍ରମାନଙ୍କ କଥା ଟଲେହେଲେ ଦୂର ନ ହେବା କଛ ବଡ଼ କଥା ନୁହେ । କାରଣ, ରାଜ୍ୟର ସାଧାରଣ ଲୋକମାନେ ମଧ୍ଯ ସେମାନଙ୍କ ବଷୟ ଭୁଲ ପାରଲେ ନାହିଁ । ସେମାନେ ସର୍ବଦା ଏହ ବାଳକମାନଙ୍କ ବଷୟ କହବାକୁ ଲଗିଲେ ।

୮୯ । ବ୍ୟବସାୟରେ ଧନ ବନଯୋଗ କଲେ ଯେଉଁପର ତାହା ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହୁଏ, ଏହ ବାଳକମାନଙ୍କର ଗୁଣାବଳୀ ମଧ୍ଯ ସେହପର ନଜ ରାଜ୍ୟର ସୀମା ଅତକ୍ରମ କର କ୍ରମଶଃ ଦେଶବଦେଶରେ ପ୍ରସାର ଲଭ କଲା ।

୯୦ । ବଳୀବର୍ଦ୍ଦ—ବଳଦ ।

ଲୋକମାନେ ବଳଦ ପିଠିରେ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ବାଣିଜ୍ୟ ଦ୍ରବ୍ୟ ବୋହ ନେଇ ବକ୍ରୟ କଲାପର ଜନମୁଖରେ ଏହ ଶିଶୁମାନଙ୍କ ଗୁଣାବଳୀ ବଭିନ୍ନ ସ୍ଥାନକୁ ବୁହାହୋଇ ପ୍ରଚରତ ହେଲା । ଅର୍ଥାତ୍ ଲୋକମାନଙ୍କର ମୁଖ ଏଠାରେ ବଳଦର କାର୍ଯ୍ୟ କଲା ।

ବାତ୍ସଲ୍ୟ ରସ ବର୍ଣ୍ଣନେ ରାମଭଦ୍ରର
ବଚନ ମନ ପବିତ୍ର ହୋଇଲା ମୋର । ୯୧ ।
ବୀରବର ଉପଇନ୍ଦ୍ରଭଞ୍ଜ ମୋ ନାମ
ବିପ୍ରାଣୋଇ ପଦେ କଲି ଏଗ୍ରନ୍ଥ ରମ୍ୟ । ୯୨ ।



---

୯୧ । କବି କହୁଛନ୍ତି—ରାମଚନ୍ଦ୍ରଙ୍କର ବାତ୍ସଲ୍ୟ ରସ ବର୍ଣ୍ଣନା କରି ମୋର ବଚନ ଓ ମନ ପବିତ୍ର ହେଲା ।

୯୨ । କବି ପୁନର୍ବାର କହୁଛନ୍ତି—ମୋର ନାମ ବୀରବର ଉପେନ୍ଦ୍ରଭଞ୍ଜ । ମୁଁ ବିପ୍ରାନଙ୍କ ପଦରେ ଏହି ମନୋରମ ଗ୍ରନ୍ଥ ରଚନା କଲି ।

# ସହାୟକ ଗ୍ରନ୍ଥସୂଚୀ


**ଓଡ଼ିଆ ଗ୍ରନ୍ଥ :**

୧ । ଅଧ୍ୟାତ୍ମ ରାମାୟଣ — ସୂର୍ଯ୍ୟମଣି ଚମ୍ପାଉ ପଟ୍ଟନାୟକ
୨ । ଅବନା ରସତରଙ୍ଗ — ଉପେନ୍ଦ୍ରଭଞ୍ଜ
୩ । ଅଳଙ୍କାର ତରଙ୍ଗିଣୀ — ରୁକ୍ମିଣୀ ଦାସ
୪ । ଅଳଙ୍କାର ପ୍ରସଙ୍ଗ — ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
୫ । ଅଳଙ୍କାର ସାହିତ୍ୟର କ୍ରମବିକାଶ — ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା
୬ । ଆମ ଉପେନ୍ଦ୍ରଭଞ୍ଜ ଆମସାହିତ୍ୟ — ସଂ : ପରମାନନ୍ଦ ଅଧିକାରୀ
୭ । ଉପେନ୍ଦ୍ରଭଞ୍ଜ ଗ୍ରନ୍ଥାବଳୀ
ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ — ଧର୍ମଗ୍ରନ୍ଥ ଷ୍ଟୋର୍, କଟକ
୮ । ଉପେନ୍ଦ୍ର ସାହିତ୍ୟ ସମାଲୋଚନା — ବିଷ୍ଣୁମୋହନ ମହାନ୍ତି
୯ । ଉତ୍କଳ ଇତିହାସ — ସ୍ୱର୍ଗତଃ କୃପାସିନ୍ଧୁ ମିଶ୍ର
୧୦ । ଉପେନ୍ଦ୍ର ଭଞ୍ଜ ଜୀବନୀ — ଦାମୋଦର ଦାସ
୧୧ । ଓଡ଼ିଆ ସାହିତ୍ୟର ଇତିହାସ
ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥଭାଗ — ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୧୨ । ଓଡ଼ିଆ ସାହିତ୍ୟର ଇତିହାସ — ପଣ୍ଡିତ ବିନାୟକ ମିଶ୍ର
୧୩ । ଓଡ଼ିଆ ସାହିତ୍ୟର ଇତିହାସ — ଡକ୍ଟର ମାୟାଧର ମାନସିଂହ
୧୪ । ଓଡ଼ିଆ ସାହିତ୍ୟର ଇତିହାସ
ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ — ଡଃ ବଂଶୀଧର ମହାନ୍ତି
୧୫ । ଓଡ଼ିଆ ସାହିତ୍ୟର ମଧ୍ୟଯୁଗ — ସୁରେନ୍ଦ୍ର ମହାନ୍ତି
୧୬ । ଓଡ଼ିଆ କାବ୍ୟ କୌଶଳ — ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ
୧୭ । ଓଡ଼ିଆ ରୀତିକାବ୍ୟର ଭିତ୍ତି ଓ ଭୂମି
— ଅଧ୍ୟାପକ ସୁରେନ୍ଦ୍ର କୁମାର ନାୟକ
୧୮ । ଓଡ଼ିଆ ରାମସାହିତ୍ୟ — ଶ୍ରୀ ନୀଳମଣି ମିଶ୍ର
୧୯ । ଓଡ଼ିଆ ଭାଷା ଓ ସାହିତ୍ୟ — ପଣ୍ଡିତ ନୀଳକଣ୍ଠ ଦାସ
୨୦ । ଓଡ଼ିଆ ସାହିତ୍ୟର କ୍ରମ ପରିଣାମ — ପଣ୍ଡିତ ନୀଳକଣ୍ଠ ଦାସ
୨୧ । ଓଡ଼ିଆ ସାହିତ୍ୟର ସ୍ଥିତି ଓ ପ୍ରବୃତ୍ତି
— ଅଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି
୨୨ । କବି କଳ୍ପଦ୍ରୁମ — ଧନୁମଣି ରାଜଗୁରୁ

୨୩ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ— ଏକ ସମୀକ୍ଷା    ଅଧ୍ୟାପକ କୃଷ୍ଣଚନ୍ଦ୍ର ମିଶ୍ର
୨୪ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ    ଅନନ୍ତ ପଦ୍ମନାଭ ପଟ୍ଟନାୟକ
୨୫ । କାବ୍ୟଶିଳ୍ପ ଓ ଉପେନ୍ଦ୍ର ଭଞ୍ଜ    ଅଧ୍ୟାପକ କୁଳମଣି ମହାପାତ୍ର
୨୬ । ଘୁମୁସର ଓ ଭଞ୍ଜ ବଂଶାବଳୀ    ସୂର୍ଯ୍ୟମଣି ଚମ୍ପତି ପଟ୍ଟନାୟକ
୨୭ । ଚିନ୍ତା ଓ ଚେତନା    ଅଧ୍ୟାପକ ଗୌରକୁମାର ବ୍ରହ୍ମା
୨୮ । ଦାଣ୍ଡି ରାମାୟଣ    ବଳରାମ ଦାସ ( ଧର୍ମଗ୍ରନ୍ଥ ସଂସ୍କରଣ )
୨୯ । ଜାନକୀବଲ୍ଲଭ ବିଳାସ    ଗୋକୁଳାନନ୍ଦ ପଟ୍ଟନାୟକ
୩୦ । ନୀଳାଦ୍ରୀଶ ଚଉତିଶା    ଉପେନ୍ଦ୍ର ଭଞ୍ଜ
୩୧ । ପରିମଳା    ନରସିଂହ ସେଣ
୩୨ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ    ଗୋପାଳ ଚନ୍ଦ୍ର ପ୍ରହରାଜ
୩୩ । ପ୍ରମୋଦ ଅଭିଧାନ    ପ୍ରମୋଦ ଚନ୍ଦ୍ର ଦେବ
୩୪ । ପ୍ରବନ୍ଧାବଳୀ    ଶ୍ୟାମସୁନ୍ଦର ରାଜଗୁରୁ
୩୫ । ପ୍ରାଚୀନ ଉତ୍କଳ    ଜଗବନ୍ଧୁ ସିଂହ
୩୬ । ବାଲ୍ମୀକି ରାମାୟଣ    ରତ୍ନାକର ଗର୍ଗବଟୁ
୩୭ । ବାଲ୍ମୀକି ରାମାୟଣ    କୃଷ୍ଣଚରଣ ପଟ୍ଟନାୟକ
୩୮ । ବିଚାର ଓ ବିବେଚନା    ଅଧ୍ୟାପକ ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
୩୯ । ବିଚିତ୍ର ରାମାୟଣ    ବିଶ୍ୱନାଥ ଖୁଣ୍ଟିଆ
୪୦ । ବିଦଗ୍ଧ ଚିନ୍ତାମଣି    ଅଭିମନ୍ୟୁ ସାମନ୍ତସିଂହାର (ପ୍ରାଚୀ ସଂସ୍କରଣ)
୪୧ । ବୈଦେହୀ ବିଳାସ    ନାରାୟଣ ତ୍ରିପାଠୀ
୪୨ । ବୈଦେହୀଶ ବିଳାସ    ଉପେନ୍ଦ୍ର ଭଞ୍ଜ
(ସଂ:ଅଧ୍ୟାପକ ଗୌରି କୁମାର ବ୍ରହ୍ମା—ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗ)
୪୩ । ବୈଦେହୀଶ ବିଳାସ    ଉପେନ୍ଦ୍ର ଭଞ୍ଜ
(ରାଧାରମଣ ପୁସ୍ତକାଳୟ ପ୍ରକାଶିତ)
୪୪ । ବୈଦେହୀଶ ବିଳାସ    ଉପେନ୍ଦ୍ର ଭଞ୍ଜ
(ଅରୁଣୋଦୟ ପ୍ରେସ ପ୍ରକାଶିତ)
୪୫ । ଭଞ୍ଜବଂଶ ଓ ଘୁମୁସର ବିବରଣ    ଗଙ୍ଗାପାଣି ମହାପାତ୍ର
୪୬ । ଭଞ୍ଜଙ୍କ ନବୀନ ଉଦ୍ଧାର    ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା
୪୭ । ଭଞ୍ଜପ୍ରଭା    ସଂ: ବିଚ୍ଛନ୍ଦ ଚରଣ ପଟ୍ଟନାୟକ

୪୮ । ଭଞ୍ଜ ଭୂମିକା — ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା
୪୯ । ଭଞ୍ଜୀୟ କାବ୍ୟ ଭାବନା — ଡକ୍ଟର ବେଣୀମାଧବ ପାଢ଼ୀ
୫୦ । ରଘୁନାଥ ବିଳାସ — ଧନଞ୍ଜୟ ଭଞ୍ଜ
୫୧ । ରସକଲ୍ଲୋଳର ଭୂମି ଓ ଭୂମିକା — ଡକ୍ଟର ଦେବେନ୍ଦ୍ର ମହାନ୍ତି
୫୨ । ରସକଲ୍ଲୋଳ ସମୀକ୍ଷା — ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା
୫୩ । ରାମବିଭା — ଅର୍ଜୁନ ଦାସ
୫୪ । ରାମଲୀଳାମୃତ — ଉପେନ୍ଦ୍ରଭଞ୍ଜ
(ଦାଶରଥି ପୁସ୍ତକାଳୟ ପ୍ରକାଶିତ)
୫୫ । ରାଘବ ବିଳାସ — ଯଦୁମଣି ମହାପାତ୍ର
୫୬ । ରୀତି ଯୁଗର ଓ ଭଞ୍ଜୀୟ କାବ୍ୟକଳା — ଅଧ୍ୟାପକ ନିଶାମଣି ମିଶ୍ର
୫୭ । ସମସ୍ୟା ଓ ସମାଧାନ — ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା
୫୮ । ସାହିତ୍ୟ ଓ ସାହିତ୍ୟିକ — ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ
୫୯ । ସୀତାପ୍ରେମ ତରଙ୍ଗିଣୀ — ନୀଳକଣ୍ଠ ରଥ
୬୦ । ସୀତା ବିବାହ — କାମପାଳ ମିଶ୍ର

**ସଂସ୍କୃତ ଗ୍ରନ୍ଥ :**

୧ । ଅମର କୋଷଃ — ଅମରସିଂହ
୨ । ଅଧ୍ୟାତ୍ମ ରାମାୟଣମ୍ — ବ୍ୟାସଦେବ
(ଗୀତା ପ୍ରେସ ସଂସ୍କରଣ)
୩ । କାଦମ୍ବରୀ — ବାଣଭଟ୍ଟ
୪ । କାବ୍ୟ ପ୍ରକାଶ — ମମ୍ମଟ ଭଟ୍ଟ
୫ । କିରାତାର୍ଜୁନୀୟମ୍ — ଭାରବି
୬ । କୁମାର ସମ୍ଭବମ୍ — କାଳିଦାସ
୭ । କୂଟପଦ ବ୍ୟାଖ୍ୟା — ଭେଙ୍କଟେଶ୍ୱର ଷ୍ଟିମ୍‌ପ୍ରେସ୍, ବମ୍ବେ
୮ । ଗୀତ ଗୋବିନ୍ଦମ୍ — ଜୟଦେବ
୯ । ଚମ୍ପୂ ରାମାୟଣମ୍ — ଭୋଜଦେବ
୧୦ । ଧ୍ୱନ୍ୟାଲୋକଃ — ଆନନ୍ଦ ବର୍ଦ୍ଧନ
୧୧ । ନୈଷଧ ମହାକାବ୍ୟମ୍ — ଶ୍ରୀହର୍ଷ
୧୨ । ପ୍ରତାପରୁଦ୍ରୀୟ — ବିଦ୍ୟାନାଥ
୧୩ । ବକ୍ରୋକ୍ତି ଜୀବିତମ୍ — କୁନ୍ତକ

୧୪ । ବାଲ୍ମୀକି ରାମାୟଣମ୍ ଗୀତାପ୍ରେସ, ଗୋରକ୍ଷପୁର ପ୍ରକାଶିତ
୧୫ । ଭାଗବତ ମହାପୁରାଣମ୍ ଗୀତାପ୍ରେସ୍, ଗୋରଖପୁର ପ୍ରକାଶିତ
୧୬ । ମହାନାଟକମ୍ ହନୁମାନ
୧୭ । ମେଘଦୂତମ୍ ବୃହତ୍ପ୍ରକାଶିନୀ ଟୀକା, ନରହରି ପଣ୍ଡା
(ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ)
୧୮ । ମେଘଦୂତମ୍ (ଚୌଖମ୍ବା ସଂସ୍କରଣ) କାଳିଦାସ
୧୯ । ରଘୁବଂଶମ୍ (ଚୌଖମ୍ବା ସଂସ୍କରଣ) କାଳିଦାସ
୨୦ । ରାଘବପାଣ୍ଡବୀୟ କବିରାଜ ପଣ୍ଡିତ
୨୧ । ଶବ୍ଦସ୍ତୋମମହାନିଧିଃ ତାରାନାଥ ତର୍କ ବାଚସ୍ପତି
୨୨ । ଶିଶୁପାଳ ବଧମ୍ ମାଘ
୨୩ । ସରସ୍ୱତୀ କଣ୍ଠାଭରଣମ୍ ଭୋଜ
୨୪ । ସାହିତ୍ୟ ଦର୍ପଣମ୍ ବିଶ୍ୱନାଥ କବିରାଜ

**ହିନ୍ଦୀ ଗ୍ରନ୍ଥ :**

୧ । ବୈଦେହୀଶ ବିଳାସ ହିନ୍ଦୀ ଅନୁବାଦ ଅଧ୍ୟାପକ ସୁରେଶ ଚନ୍ଦ୍ର ନନ୍ଦ
୨ । ରୀତି କାବ୍ୟକୀ ଭୂମିକା ଡକ୍ଟର ନଗେନ୍ଦ୍ର
୩ । ଶ୍ରୀରାମଚରିତ ମାନସ ତୁଳସୀ ଦାସ
୪ । ସଂସ୍କୃତ ସାହିତ୍ୟକା ଇତିହାସ ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ

**ଇଂରାଜୀ ଗ୍ରନ୍ଥ :**

1. History of Orissa Vol. I Dr. H. K. Mahatab
2. Sidelights on History and Culture of Orissa Edtd. by Dr. M. N. Das
3. A Descriptive catelogue of Sanskrit Manuscripts of Orissa Vol. II Kedarnath Mohapatra.
4. Sanskrit Poetics S. K. De
5. Kabisamrat Upendrabhaja Bichhanda Charan Pattnaik.